# ଯମପୁରୀରେ ଜମାନବନ୍ଦି



ନନ୍ଦ କିଶୋର ସିଂହ

# ଯମପୁରୀରେ ଜମାନବନ୍ଦି

(ରମ୍ୟଧାରା ସ୍ମୃତିଚାରଣ)

ପରିକଳ୍ପନା ନନ୍ଦକିଶୋର ସିଂହ

ପ୍ରସ୍ତୁତି ନନ୍ଦକିଶୋର ସିଂହ ପଲ୍ଲୀବିକାଶ ସାଂସ୍କୃତିକ ଫାଉଣ୍ଡେସନ

ଓ

କୋରେଇ ମଣ୍ଡଳ ସାହିତ୍ୟ ସଂସଦ

କୋରେଇ, ଯାଜପୁର

# ଯମପୁରୀରେ ଜମାନବନ୍ଦି

ସଂକଳନ ଓ ପରିବେଷଣ :
ନନ୍ଦକିଶୋର ସିଂହ ପଲ୍ଲୀବିକାଶ ସାଂସ୍କୃତିକ ଫାଉଣ୍ଡେସନ୍
ଓ
କୋରେଇ ମଣ୍ଡଳ ସାହିତ୍ୟ ସଂସଦ
କୋରେଇ, ଯାଜପୁର

ପ୍ରକାଶିକା :
ସୁରବାଳା ସିଂହ
କୋରେଇ, ଯାଜପୁର

ଡି.ଟି.ପି. / ଡିଜାଇନ୍ / ମୁଦ୍ରଣ
ମାରୁତି ପ୍ରିଣ୍ଟର୍ସ, ଯାଜପୁର ରୋଡ୍
ଦୂରଭାଷ- ୯୮୬୧୨୩୪୨୨୪

ପ୍ରକାଶକାଳ
କୁମାର ପୂର୍ଣ୍ଣିମା- ୨୦୦୯

ମୂଲ୍ୟ : ୬୫.୦୦ (ପଞ୍ଚଷଠିଶ ଟଙ୍କା ମାତ୍ର)

Yama Pureere Jamanbandi

–Compilers & Distributer–

Korei Mandal Sahitya Sansad
&
Nanda Kishore Singh Rural
Development Cultural Foundation
Korei, Jajpur

–Publisher–

Surabala Singh
Korei, Jajpur

D.T.P. / Design / Painting
Maruti Printers
Jajpur Road, Jajpur
Hello- 9861234224

Year of Publication
Kumar Purnima- 2009

Price : 65 /-

# ଯମପୁରୀର ଜମାନବନ୍ଦି -୧

ମହାଭାଗ ଧର୍ମରାଜ ଆପଣଙ୍କ ଯମପୁରୀରେ ଏପରି ଅବ୍ୟବସ୍ଥା ଦେଖି ମୋତେ ବଡ଼ ବିରକ୍ତ ଲାଗୁଛି । ଆପଣ ତୁରନ୍ତ ମୋତେ ମୋ ଗାଆଁକୁ ଫେରିଯିବାକୁ ଅନୁମତି ଦିଅନ୍ତୁ ।

ଯମରାଜ କହିଲେ, ଚିତ୍ରଗୁପ୍ତ ଏଇ ବ୍ୟକ୍ତିଜଜଣକ ଏପରି ପାଗଳପରି ପ୍ରଳାପ କରୁଛି କାହିଁକି ? ବ୍ୟକ୍ତି ଜଣକ କହିଲେ– ''ପାଗଳ ମୁଁ ନୁହେଁ ଯମରାଜ ! ପାଗଳ ଆପଣଙ୍କ ଏଇ ମନ୍ତ୍ରୀ ଚିତ୍ରଗୁପ୍ତ ।'' ''ଚିତ୍ରଗୁପ୍ତ କହିଲେ– 'ଚୁପ୍ କର ଦୁଷ୍ଟ ଭାରି ବଢ଼ି ବଢ଼ି କଥା କହୁଛ ?' ମଣିମା ! ଏଇ ଲୋକଟା ତା'ର ଜନ୍ମଜାତକରେ ତ୍ରୁଟି ରହିଛି ବୋଲି ମୋତେ ବାରମ୍ବାର ଚ୍ୟାଲେଞ୍ଜ୍ କରୁଛି । ଆମ ନଥିପତ୍ର ଅନୁସାରେ ତାର ଜନ୍ମତିଥି ହେଲା ୧୩୪୭ ସାଲ ମେଷ ମାସ ୨୭ ଦିନ ବୈଶାଖ ଶୁକ୍ଳ ଦ୍ୱିତୀୟ ବୃହସ୍ପତିବାର ।

ଅଥଚ ସେ ବାରମ୍ବାର କହୁଛି ଏଇଟା ମୋ ଜନ୍ମତାରିଖ ନୁହେଁ । ମୋ ଜନ୍ମତାରିଖ ୧୫ ମଇ ୧୯୪୨ ମସିହା । ଏହାର ପ୍ରମାଣ କରିବାକୁ ଯାଇ ସେ ପୁଣି କହୁଛି ୨୦୦୦ ମସିହା ମଇ ମାସରେ ତାକୁ ୫୮ ବର୍ଷ ପୂରିବାରୁ ସେ ଚାକିରୀରୁ ଅବସର ଗ୍ରହଣ କରିଛି ।

ଯମରାଜ କହିଲେ ଏହାର ସତ୍ୟାସତ୍ୟ ଅନୁସନ୍ଧାନ କରି ସାରିଛ ତ ଚିତ୍ରଗୁପ୍ତ ! ଚିତ୍ରଗୁପ୍ତ କହିଲେ ହଁ ଆଜ୍ଞା ସେ ଯାହା କହୁଛି ତାହା ସତ୍ୟ । ତେବେ ଜାତକର ତିଥି ଅନୁସାରେ ତା'ର ମୃତ୍ୟୁ ଦିବସ ଗଣନାନୁସାରେ ଠିକ୍ ଅଛି । କିନ୍ତୁ ସରକାରୀ କାଗଜପତ୍ର ଅନୁସାରେ ତା'ର ଆୟୁଷ ଆହୁରି ୩/୪ ବର୍ଷ ଅଛି । ଏଇ ସୁଯୋଗରେ ସେ କହୁଛି ଆମେ ଭୁଲ୍‌ରେ ତାକୁ ଧରି ଆଣିଛୁଁ ।

ବ୍ୟକ୍ତି ଜଣକ କହିଲେ – ମୁଁ ମୋରକଥା କହୁଛି ଛାମୁଁ । ଚାରିବର୍ଷ ଆଗରୁ ମୋତେ ମୋ ସରକାରଙ୍କ ଠାରୁ ଛଡ଼ାଇ ଅଣାଗଲା କାହିଁକି ? ବୋଧହୁଏ ଭୂଲରେ ଅନ୍ୟ କେହି ଜଣକ ସ୍ଥାନରେ ମୋତେ ଧରି ଅଣାଯାଇଛି ।

ଯମରାଜ କହିଲେ ବେଶ୍ ବେଶ୍ ଅଧୈର୍ଯ୍ୟ ହୁଅନାହିଁ । ମୁଁ ତୁମର ଗୋଟି ଗୋଟି କଥା ଶୁଣିବି ତୁମେ କ'ଣ ତୁମର ଜନ୍ମବୃତ୍ତାନ୍ତ ସବୁ ମନେ ରଖିଛ । ବ୍ୟକ୍ତି ଜଣକ କହିଲେ ହଁ ଆଜ୍ଞା ମୋର ସ୍ମରଣଶକ୍ତି ଖୁବ୍ ପ୍ରଖର । ମୁଁ ଜନ୍ମଠାରୁ ଏ ଯାବତ୍

ସବୁ ଗୋଟି ଗୋଟି କରି କହି ପାରିବି । ଏଇ ଯେମିତି ମୁଁ କହୁଛି ମୋ ଘର ଯାଜପୁର ଜିଲ୍ଲାର କୋରେଇ ଥାନା ଅନ୍ତର୍ଗତ ଶଙ୍ଖପାରୀ ଗ୍ରାମରେ ।

ଚିତ୍ରଗୁପ୍ତ କହିଲେ ଆଜ୍ଞା ଏ ଲୋକଟା ବଡ଼ ଚତୁର । ଏହାର ଜନ୍ମ ବେଳକୁ ଜିଲ୍ଲା ଥିଲା କଟକ । ପରେ କଟକ ଜିଲ୍ଲାରୁ ଯାଜପୁର, ଜଗତସିଂହପୁର ଓ କେ‌ନ୍ଦ୍ରା ଜିଲ୍ଲା ସୃଷ୍ଟି ହୋଇଛି । ଅଥଚ ଜାଣିସିଆଣା ଭାବେ ସେ ଯୁକ୍ତି କରି ଚାଲିଛି ତା' ଘର କଟକ ଜିଲ୍ଲା ନୁହଁ ଯାଜପୁର ଜିଲ୍ଲା । ମୁଁ ଯେତେ ବୁଝାଉଛି ଯେ ବ୍ୟକ୍ତି ତୁମେ ଅବିଭକ୍ତ କଟକ ଜିଲ୍ଲାରେ ଜନ୍ମ ନେଇଛ । ସେ କହୁଛି ଏବେ ମୋର ସମସ୍ତ ନଥିପତ୍ରରେ ଜିଲ୍ଲା ଯାଜପୁର ଲେଖା ହେଉଥିବା ବେଳେ ଆପଣଙ୍କ ଯମପୁରୀରେ ଏହା କଟକ ଜିଲ୍ଲା ହେବ କାହିଁକି ? ସେହିପରି ତାର ପ୍ରକୃତଘର କୋରେଇ ଥାନାର ସାଧକପୁର । ସାଧକପୁର ହେଉଛି ରେଭିନ୍ୟୁ ଭିଲେଜ । ଅଥଚ ଲୋକଟା କହି ଚାଲିଛି ତାର ଘର ସାଧକପୁର ନୁହଁ ଶଙ୍ଖପାରି ଗ୍ରାମରେ ।

ବ୍ୟକ୍ତି ଜଣକ କହିଲେ - ଖାଲି ସେତିକି ନୁହଁ ମହାଭାଗ ! ମୋର ପିତାଙ୍କ ନାମ ରାଜକିଶୋର ସିଂହ ଏହା ସତ୍ୟ । କିନ୍ତୁ ମୋର ପୌଷ୍ୟ ପିତାଙ୍କ ନାମ ନବକିଶୋର ସିଂହ । ଏହା ଆପଣଙ୍କ ନଥିପତ୍ରରେ ନାହିଁ । ଏଣୁ ମୁଁ ଭାବୁଛି ରାଜକିଶୋର ସିଂହଙ୍କ ପୁତ୍ର ନନ୍ଦକିଶୋର ସିଂହ ଆଉ କିଏ ଥାଇ ପାରନ୍ତି । ତାହା ଅନୁସନ୍ଧାନ କରି ତାକୁ ଯମପୁରକୁ ଅଣାଯାଉ ଏବଂ ମୋତେ ମୋ ସୁନ୍ଦର ପୃଥିବୀର ସୁଖର ସଂସାରକୁ ଫେରାଇ ଦିଆଯାଉ ।

ଯମରାଜ କହିଲେ ତୁମର ପୃଥିବୀ ଖୁବ୍ ସୁନ୍ଦର ଆଉ ସଂସାର ଖୁବ୍ ସୁଖମୟ ବୋଲି ଜୋର୍‌ଦେଇ କହି ପାରୁଛ ନନ୍ଦକିଶୋର । ନନ୍ଦ କିଶୋର କହିଲେ - ମୁଁ ଆଜ୍ଞା ଖୁବ୍ ଆନନ୍ଦିତ ଆପଣଙ୍କ ମୁହଁରୁ ମୋର ନାମ ଧରି ସମ୍ବୋଧନ କରିବାରୁ । ଆଜ୍ଞା ମୋର ନାମ କାଗଜପତ୍ରରେ ନନ୍ଦ କିଶୋର । ହେଲେ ମୋ ବାପା ନନ୍ଦ ଏହି ନାମଟା ଡାକିବା ଛଡ଼ା ଆଉ କେହି ଏଇ ନାଁଟା ଧରୁ ନଥିଲେ । ମୋ ମାଆ ରୂପାଦେଇ କହୁଥିଲେ ମୋ ନାଆଁ ବାଇଆ । ଏହାଛଡ଼ା ମୋତେ ମୋ ପୋଷ୍ୟ ପିତା ନବ କିଶୋର ମୋତେ ଡାକନ୍ତି ବାଇନ । ଏହାଛଡ଼ା କିଏ ଡାକେ ପୋକ ତ କିଏ ଡାକେ ନେଣ୍ଡ । ଏହପରି ନାନାବିଧ ଡାକରେ ମୁଁ ସଂବୋଧିତ ହେଉଥିବା ବେଳେ ଏଠାରେ ସେ ସବୁର କିଛି ସୂଚନା ନାହିଁ ।

ଚିତ୍ରଗୁପ୍ତ କହିଲେ - ଶୁଣ ନନ୍ଦ କିଶୋର ! ତୁମର ଅନେକ ନାମ ଥାଇପାରେ ତେବେ ତୁମ ଜାତକ ଅନୁସାରେ ଯେଉଁ ନାମକରଣ ହୋଇଥିଲା - ସେଇ ତଥ୍ୟ ଆମ ପାଖରେ ଅଛି ।

ଯମରାମ କହିଲେ  ରୁହ ମନ୍ତ୍ରୀ ! ବାଧା ଦିଅନା । ଏଇ ବ୍ୟକ୍ତି ଜଣକ ମୁହଁରୁ ଆମେ ସୁନ୍ଦର ପୃଥିବୀ ଆଉ ସୁଖର ସଂସାରର ସୂଚନା ପାଇବା । ତାକୁ ତାର ବକ୍ତବ୍ୟ କହିବାକୁ ଦିଅ । ନନ୍ଦକିଶୋର କହିଲେ - ହଁ ଧର୍ମରାଜ ମୁଁ ସୁଯୋଗ ପାଇଲେ ଗୋଟି ଗୋଟି କରି ସବୁ କହିବି । ପ୍ରଥମେ ମୋର ବାଲ୍ୟକାଳରୁ ଏ ପୃଥିବୀକୁ ବିଶେଷତଃ ମୋ ଗାଆଁକୁ ଯେପରି ଭାବରେ ଦେଖି ଆସିଛି ତାକୁ ବର୍ଣ୍ଣନା କରିବି ।

ଯମରାଜ କହିଲେ ବେଶ୍ ! ଆଜି ତୁମେ ଯାଅ, ବିଶ୍ରାମ ନିଅ । ମନ୍ତ୍ରୀ ଚିତ୍ରଗୁପ୍ତ ଏହାଙ୍କ ରହଣି ଆଉ ଖିଆପିଆର ସୁବନ୍ଦୋବସ୍ତ କର । ଚିତ୍ରଗୁପ୍ତ କହିଲେ

ଯଥାଆଜ୍ଞା ମହାରାଜ ଆସ ନନ୍ଦ କିଶୋର ! ମୋ ସାଙ୍ଗରେ ଆସ ।



# ଯମପୁରୀର ଜମାନବନ୍ଦି -୨

ଯମରାଜ ଚିତ୍ରଗୁପ୍ତଙ୍କୁ ଡକାଇ ପଠାଇଲେ ଖୁବ୍ ସକାଳୁ ସକାଳୁ । ଚିତ୍ରଗୁପ୍ତ ତତ୍କ୍ଷଣାତ୍ ଉପସ୍ଥିତ ହେବା ପରେ ଯମରାଜ କହିଲେ ମନ୍ତ୍ରୀ ଚିତ୍ରଗୁପ୍ତ ସେଇ ଆଗନ୍ତୁକ ବ୍ୟକ୍ତିଙ୍କର କିଛି ଅସୁବିଧା ହୋଇନାହିଁତ । ଚିତ୍ରଗୁପ୍ତ ହସି ହସି କହିଲେ ମଣିମା ! ମୁଁ ଦେଖୁଛି ଆପଣ ସେ ଲୋକର ବାକ୍ ଚାତୁରୀରେ ପୁରା ମଜ୍ଜିଗଲେଣି । ଯମରାଜ– ‘‘ହଁ ସତକଥା ଚିତ୍ରଗୁପ୍ତ ! ମୁଁ ସେଇ ଲୋକଠାରୁ ସୁନ୍ଦର ପୃଥିବୀର ସୁଖର କାହାଣୀଟିକେ ଶୁଣିବା ପାଇଁ ଚାହେଁ । ତୁମେ ସଙ୍ଗେ ସଙ୍ଗେ ତାଙ୍କୁ ଡକାଇ ପଠାଅ । ମୁଁ ଡକାଇବା ପୂର୍ବରୁ ସେ ହେଇ ସ୍ୱୟଂ ଆସି ପହଞ୍ଚି ଗଲାଣି ଛାମୁ ।’’

ଆଗନ୍ତୁକ ନମସ୍କାର ଜଣାଇଲେ । ଯମରାଜ ପଚାରିଲେ ହଁ ନନ୍ଦକିଶୋର ବାବୁ ଆପଣଙ୍କର ଗତକାଲି ରାତିରେ କିଛି ଅସୁବିଧା ହୋଇ ନାହିଁ ତ । ନନ୍ଦ କିଶୋର କହିଲେ, ନାଇଁ ଛାମୁଁ ଆପଣଙ୍କ ଅତିଥିଶାଳାରେ ମୋର କୌଣସି ଅସୁବିଧା ହୋଇନାହିଁ । ତେବେ ଆପଣଙ୍କ ଗେଷ୍ଟ ରୁମ୍‌ଟିକୁ ଏୟାର କଣ୍ଡିସନଡ଼୍ କରିଦେଲେ ଭଲ ହୁଅନ୍ତା ।

ପଚାରିଲେ ଯମରାଜ ସେଇଟା ପୁଣି କ’ଣ ? ଆଜ୍ଞା ଏୟାର କଣ୍ଡିସନ୍‌ଡ଼ ମେସିନ୍ ବସିଲେ ’ଖରାଦିନେ ଗରମ ହେବନାହିଁ କି ଶୀତଦିନରେ ବିଶେଷ ଥଣ୍ଡା ହେବନାହିଁ । ହଁ ସେସବୁ କଥା ଛାଡ଼ି ମୁଁ ଏବେ ମୋ ଗାଆଁ କଥା କହୁଛି । ପରେ ଆପଣଙ୍କୁ କହିବି ପ୍ରଯୁକ୍ତି ବିଦ୍ୟାରେ ପୃଥିବୀ କେତେ ଆଗେଇଛି । ହଁ କୁହ ନନ୍ଦ କିଶୋର ! ନିର୍ଭୟରେ କୁହ । ତୁମ ଗାଆଁ କଥା ଶୁଣିବାକୁ ମୁଁ ଖୁବ୍ ଆଗ୍ରହୀ । ମୋର ଗାଆଁ ନାଆଁତ ଶଙ୍ଖପାରୀ କହିଛି । ଏହା ସାଧକ ପୁରର ଅଂଶବିଶେଷ । ତେବେ ସାଧକପୁର ଆଉ ଫାଜଲପୁର ମିଶାମିଶି ହୋଇ କୋରେଇ ନାମରେ ଓଡ଼ିଶାରେ ଘରେ ଘରେ ପରିଚିତ । ଯଦିଓ ରାଜସ୍ୱ ବିଭାଗ ମାନଚିତ୍ରରେ କୋରେଇ ନାଆ ନାହିଁ । ତେବେ କୋରେଇରେ ଥାନା, ବ୍ଲକ୍, ଡାକ୍ତରଖାନା, ପଶୁ ଡାକ୍ତରଖାନା, ରେଲୱେ ଷ୍ଟେସନ ସବୁ କୋରେଇ ନାମରେ ପରିଚିତ । ଅବଶ୍ୟ ସାଦକପୁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ରହିଥିବା ବେଳେ କୋରେଇ ନାମରେ ମାଇନର ସ୍କୁଲ ଆଉ ହାଇସ୍କୁଲ ଅଛି ।

ଏଇ ଗାଆଁକୁ କୋରେଇ କହିବା ପଛରେ ହୁଏତ ଦୁଇଟି କାରଣ ଥାଇପାରେ । ଗୋଟିଏ ହେଲା ଏଇ ଗାଆଁର ମୁଖ୍ୟ ଦେବୀ ହେଲେ କୋରେଇବୁଢ଼ୀ । ତାହାଙ୍କୁ

ପ୍ରଖ୍ୟାତ ଗ୍ରାମ୍ୟଦେବତୀ ଭାବରେ ପୂଜା କରାଯାଏ । ଏତଦ୍‌ବ୍ୟତୀତ ଏଇ ଗାଆଁର ଚାରିପଟେ ସିଦ୍ଧବାସୁଳି, ଅନନ୍ତ ବାସୁଳି, ବେଲେଶ୍ୱରୀ, ବୁଢ଼ୀ ବାସୁଳି ବିଜେ କରିଛନ୍ତି । ଏଣୁ କୋରେଇ ବୁଢ଼ି ବାସୁଳେଇଙ୍କ ନାମ ଅନୁସାରେ ଗାଆଁର ନାମ କୋରେଇ । ଏହାକୁ କେହି କେହି କହିଥାଆନ୍ତି, ଏଇ ଗାଆଁର ଅନେକ ଗୁଡ଼ିଏ କୁରେଇ ଗଛ ଥିଲା ସେଥିପାଇଁ ଏହାର ନାମ କୋରେଇ ।

ଯମରାଜ କହିଲେ - ହଉ ଗାଆଁର ନାମ କଥା ଜଣାଗଲା । ଏବେ ତୁମ ଗାଆଁର ବର୍ଣ୍ଣନା ଟିକେ କର । ଛାମୁ- ମୋ ଗାଆଁ କେଉଁ ନଈ କୂଳରେ କି ସମୁଦ୍ର କୂଳରେ ନୁହେଁ । ଆଖପାଖରେ ସେମିତି ଗହଳିଆ ଡୋଟାମାଳ ନାହିଁ । ତେବେ ଏଠାରେ ବହୁତ ବାଉଁଶ ଗଛ, ନିମ୍ବ ଗଛ, କରଞ୍ଜ ଗଛ ଭରପୁର । ମୋ ଜନ୍ମ ସମୟରେ ଏବଂ ପିଲାବେଳେ ଏଠାରେ ଯଥେଷ୍ଟ କିଆ ବଣ ଥିଲା । ଗହିରୀ ବିଲ ହିଡ଼ରେ ବହୁତ କୋଇଲିଖିଆ କଣ୍ଟା ଆଉ ବେଣା କାଇଁଶ ବୁଦା ଥିଲା । ଜାମୁଗଛରେ ଚଢ଼ି ଆମେ ଜାମୁ କୋଳି ଖାଉଥିଲୁ । ଗୋହିରୀ କଡ଼ ପଡ଼ିଆରେ କଣ୍ଟିକୋଳି ତୋଳିଆଣି ଖାଉଥିଲୁ । ଏବେ ସେସବୁ ଆଉ ପ୍ରାୟ ନାହିଁ । କିଆ ବୁଦା ପଦା ହୋଇଗଲାଣି । କାଁ ଭାଁ କେଉଁଠି କେମିତି ଅମରି ବଣ ରହିଛି । ଆଉ ଖଜୁରୀ କୋଳି ବେଶୀ ଫଳୁଛି । କାରଣ ଖଜୁରୀ ଗଛ ଟିକେ ବଡ଼ ହେଲେ ଲୋକେ ତା'ରସକୁ ତାଡ଼ିକରି ପିଉଅଛନ୍ତି ।

ଯମରାଜ ପଚାରିଲେ ଏଇ ତାଡ଼ି କ'ଣ ? ଆଜ୍ଞା ଏଇ ତାଡ଼ି ଏକ ନିଶାପାନୀୟ ଠିକ୍ ଆପଣ ମାନେ ପାନ କରୁଥିବା ସୋମରସ ପରି । ତେବେ ସେ ଆଉ ନାହିଁ । ଏବେ ଖଜୁରୀ କୋଳି ନଥିବାରୁ ଗୁଣ୍ଡୁଚି ମୂଷା ଚଢ଼ାଉତୁରା ହେବା ଦୃଶ୍ୟ ଆଉ ନାହିଁ । କୁଆ ବଣି ଗୁ-କାଳି ଚଢ଼େଇବି କମିଗଲେଣି । ବରଫଳ ଖାଇବାକୁ ଏବେ ଆସୁ ନାହାଁନ୍ତି । ତେବେ ଏଇ ଗାଆଁରେ ଏବେ ରାସ୍ତାଘାଟ ଖୁବ୍ ପ୍ରଶସ୍ତ ଆଉ ପକ୍କା । ରାସ୍ତାକଡ଼ରେ ବିଜୁଳୀବତି ଜଳୁଛି । ଗାଆଁରେ ପ୍ରାଇମେରି ସ୍କୁଲଠୁ କଲେଜଯାଏ ଶିକ୍ଷା ବ୍ୟବସ୍ଥା ଅଛି । ଡେଲି ମାର୍କେଟ ତିନିଚାରିଟି ସ୍ଥାନରେ ଅଛି । ଏ ଗୁଡ଼ିକ ନାମ ମଧ୍ୟ ମୀନାବଜାର, ଷ୍ଟେସନ ବଜାର, କାରଗିଲ୍ ବଜାର, ବଡ଼ବଜାର ଏମିତି ଭିନ୍ନ ଭିନ୍ନ ସ୍ଥାନଙ୍କୁ ନେଇ ଏହା ଭିନ୍ନ ଭିନ୍ନ ନାମ ଧାରଣ କରିଛି । ଏବେ ବଜାର ଗୁଡ଼ିକରୁ ସମସ୍ତ ଦରକାରୀ ଜିନିଷ, ପନିପରିବା ସାଙ୍ଗକୁ ଲୁଗାପଟା, ଔଷଧ, ପ୍ରସାଧାନ ସାମଗ୍ରୀ ମଧ୍ୟ ମିଳିଥାଏ ।

ସବୁଠାରୁ ଆନନ୍ଦର କଥା । ଏଇ ଗାଆଁର ମଝିରେ ଗୋଟିଏ ବଡ଼ ରାସ୍ତା । ରାସ୍ତାର ଦକ୍ଷିଣପଟ ସାଦକପୁର ଏବଂ ଉତ୍ତରପଟ ଫାଜଲପୁର ନାମରେ ନାମିତ ।

ସାଦକପୁର ପଟେ କୁମାରେଶ୍ୱର ମନ୍ଦିର ଆଉ ମନସୁର ପୀର ବାବାଙ୍କ ସମାଧି ଥିଲାବେଳେ ଫାଜଲପୁର ପଟେ ଅନନ୍ତପୁରସ୍ତମ, ହନୁମାନ ଓ ମା' ତାରିଣୀଙ୍କ ମନ୍ଦିର ସାଙ୍ଗକୁ ମସଜିଦ୍ ରହିଛି । ଏଣୁ ଏହାକୁ ହିନ୍ଦୁ ମୁସଲିମ୍ ସଂସ୍କୃତିର ଏକ ମିଳନ ପୀଠ ବୋଲି କୁହାଯାଏ । ଏଠାରେ ମେଲଣ ଆଉ ମହରମ ଉଭୟେ ହିନ୍ଦୁ ମୁସଲମାନ ମନସୁଖରେ ପାଳନ କରନ୍ତି । ମୁଁ ମୋର ସାଙ୍ଗ ଉଧ, କୃଷ୍ଣ, ବେଙ୍ଗ, ବକ, ଅସ୍କରି, ଗେଡ଼ା କହ୍ନେଇ ସାଙ୍ଗରେ ଏକାଠି ମେଲଣ ଦେଖୁ ତାଜିଆ ପଛରେ ଧାଉଁ । ମହରମ୍‌ରେ ବାଡ଼ିଖେଳ, ବନୋଟି ଘୁରା ଖେଳ ଦେଖୁ । ମେଲଣରେ ହୋରି ଖେଳୁଁ ।

ଏଇ ଗାଆଁରେ ଉଭୟେ ମୁସଲିମ୍ ଆଉ ହିନ୍ଦୁ ହଜାରୀ ଉପାଧି ଧାରୀ ଅଛନ୍ତି । ଏମାନେ ମୋଗଲ ଶାସନଧାରୀ ରହିଛି । ଏମାନେ ମୋଗଲ ଶାସନ ଅଥବା ମରହଟ୍ଟା ଅମଳରେ ମନସୁବେଦାରୀ ପ୍ରଥାର ହଜାରୀ ବୋଲି ଅନୁମାନ କରାଯାଏ । ଏଇ ଗାଆଁର ସତାର ହଜାରୀ ନାମକ ଜଣେ ଶତାୟୁ ବ୍ୟକ୍ତି ଅଛନ୍ତି । ଯିଏକି ସୁବାସ ବୋଷ ଆମ ଗାଆଁକୁ ଆସିଥିବା କଥା କହନ୍ତି । ଏହାଛଡ଼ା ବାଜି ରାଉତଙ୍କୁ ଯେଉଁ ଗୋରା ସାହେବ ଗୁଳି ଚଳାଇଥିଲେ ସେ ଏଇ କୋରେଇବାଟେ ଢେଙ୍କାନାଳ ଯିବାକଥା ମଧ କହନ୍ତି । ଏହିବ୍ୟକ୍ତି ସତାର ହଜାରୀ ଏତେ ସାହସୀ ଯେ, ବାଘ ସାଙ୍ଗରେ ଲଢ଼େଇ କରି ଚିତାବାଘଟିକୁ ମାରି ଦେଇଥିଲେ । ମୋ ବୁଢ଼ାବା କାଳିନ୍ଦୀ ସିଂହ ମଧ ଖୁବ୍ ସାହସୀ ଥିଲେ । ସେମାନଙ୍କ କଥା ମୁଁ ଆର ଥରକୁ ମାନେ କାଲି କହିବି ଛାମୁଁ । ଏବେ ମଧ୍ୟାହ୍ନ ଭୋଜନ ସମୟ ହେଲାଣି । ଭୋକ ଲାଗିଲାଣି । ହଉ ତୁମେ ଯାଅ ପୁଣି ପରେ ଶୁଣିବା ।



# ଯମପୁରୀର ଜମାନବନ୍ଦି -୩

ବଡ଼ିଭୋରୁ ଉଠିପଡ଼ି ଚଟାପଟ୍ ନିତ୍ୟକର୍ମ ସାରିଦେଲି । ସ୍ନାନ କରିବା ପାଇଁ ଟିକେ ଦୂରକୁ ଯିବାକୁ ପଡୁଥାଏ । ନଈଟିରେ ଅଳ୍ପ ପାଣି ଥାଏ । ବୋଧହୁଏ ବୈତରଣୀରେ । କାରଣ ମାର୍କଣ୍ଡ ପୁରାଣରୁ ଜାଣିଛି ଯମପୁରକୁ ଆସିବା ବେଳେ ବାଟରେ ବୈତରଣୀ ନଦୀ ପାରହେବାକୁ ପଡ଼ିଥାଏ । ସଅଳ ସଅଳ ନିତ୍ୟକର୍ମ ସାରିବା ପରେ ଚିତ୍ରଗୁପ୍ତଙ୍କ ଘରୁ ଆସିଥିବା ଚକୁଳିପିଠା ଆଉ ସନ୍ତୁଳା ଖାଇଦେଲି । ତେବେ ଏତିକି ବେଳେ ମୋ ଘରେ ସକାଳୁଆ ମୋ ପୋଷ୍ୟ ବାପା ନବକିଶୋର ସିଂହଙ୍କ ଉଷୁନା ଚାଉଳର ଚକୁଳି ଆଉ ଆଳୁ ଚଟଣୀ କଥା ମନେ ପଡ଼ିଗଲା । ମୁଁ ବି ସକାଳୁ ଉଠି ନିତ୍ୟକର୍ମ ସାରି ସେହି ଚକୁଳିପିଠା ଆଉ ଗୁଡ଼ କିମ୍ବା ଆଳୁଚଟଣି ଖାଇଥାଏ । ପୂର୍ବଦିନ ରାତିରୁ ମାଆ କି ସାବତ ମାଆ ଆଣବାଟି ରଖିଥାଆନ୍ତି । ଦିନେ ଦିନେ ବଡ଼ି ସକାଳୁ ଉଠି ଘରର ବାସି ପାଇଟି ସାରି ବଡୁରା ଉଷୁନା ଚାଉଳକୁ ଶିଳରେ ବାଟି ନଗଦାନଗଦି ଚକୁଳି କରନ୍ତି । ଖାଇବା ବେଳ ଟିକେ ଗଡ଼ିଗଲେ ଏଇ ପୋଷ୍ୟବାପା ଭାରି ରାଗନ୍ତି । ଏଣୁ ଘରେ ସମସ୍ତେ ଥରହର ହୁଅନ୍ତି ।

ଦିନେ ଦିନେ ପିଠା ରାଗରେ ଫୋପାଡ଼ି ଦେବାକଥା ମୋ ମନେ ପଡୁଛି । ଛାଡ଼ ସେ କଥା । ମୁଁ ଆଉ ମୋର ସାନ ଭଉଣୀ ଶୈଳ ଦିଦି ଦିନେ ଦିନେ ଏକାଠି ପଖାଳ ଖାଉ । ପୂର୍ବଦିନ ରାତିର ତରକାରୀ ହେଉ କି ଭଜାହେଉ କି ଡାଲି ହେଉ ରଖାଯାଇଥାଏ । ଆମେ ତାକୁ ଲଗାଇ ପଖାଳ ଖାଇଥାଉ । ଥରେ ଥରେ କାହା ଡାଲି ଆଗ ସରିବ ଦେଖିବା ଏଇ ପ୍ରତିଯୋଗିତା ଚାଲେ । ମୁଁ ମୋ ଡାଲିରେ ମଝିରେ ମଝିରେ ତୋରାଣି ମିଶାଇ ଡାଲିକୁ ପାଣିଆ କରି ସାଇତି ରଖେ । ସେହି ତୋରାଣିମିଶା ପାଣିଆ ଡାଲି ମଧ୍ୟ ଆନନ୍ଦରେ ଖାଏ । ହେଲେ ମୋ ଡାଲି ସରିନାହିଁ ବୋଲି ବୋଉ ପାଖରୁ ମୁଁ ବାହାଦୂରି ନିଏ ଥରେ ଥରେ ବାସୀ ତରକାରୀ ନଥିଲେ କଞ୍ଚା ପିଆଜ ଆଉ ବାଡ଼ି କଞ୍ଚା ଲଙ୍କାମରିଚ ଲୁଣରେ ବି ପଖାଳଖିଆ ଚ଼ଳିଯାଏ । କଞ୍ଚାଲଙ୍କା ମରିଚକୁ ଘରର ମାଟି ଚଟାଣରେ ତୋରାଣି ପକାଇ ଚକଟି ଦେଲେ ଭାରି ବାସିଉଠେ । ଆଉ ସେହି ବାସନାର ଗୋଟେ ଆକର୍ଷଣରେ ପଖାଳଖିଆ ହୋଇଯାଏ ।

ହଉ ଛାଡ଼ ସେସବୁ କଥା । ମୁଁ ସଅଳ ଯାଇ ଦରବାରରେ ପହଞ୍ଚି ଗଲି । ଯମରାଜ ମଧ୍ୟ ଆସି ପହଞ୍ଚି ଯାଇ ଥାଆନ୍ତି । ମୋତେ ଦେଖି ହସହସ ହୋଇ କହିଲେ

ଆଚ୍ଛା ନନ୍ଦକିଶୋର ବାବୁ ଆପଣ ଆମର ରାଜ୍ୟର ଦଣ୍ଡ ପାଇଥିବା ପାପୀ ମାନଙ୍କୁ ଦେଖିଲେଣି । ମୁଁ କହିଲି ଛାମୁ ମୁଁ ଆଉ ଗଲି କେତେ ବେଳେ । ଏଇ ଦରବାରରୁ ଗେଷ୍ଟରୁମ୍ ଆଉ ଗେଷ୍ଟରୁମ୍‌ର ଦରବାର ଏହାରି ଭିତରେ ମୋର ଗତାଗତ । ଯମରାଜ ହସିଦେଇ କହିଲେ ଗୁଡ଼ ଭେରି ଗୁଡ଼୍ । ତୁମେ ସେ ସ୍ଥାନକୁ ଯିବା ଠିକ୍ ନୁହେଁ । ସେ ସବୁ ଦୃଶ୍ୟ ଦେଖିଲେ ତୁମର ମାଇଣ୍ଡ ପଜଲ୍ ହୋଇଯିବ । ହଁ ତୁମେ ତୁମର ବକ୍ତବ୍ୟ ଆରମ୍ଭ କର ।

ହଁ ଛାମୁ ମୁଁ ମୋର ଠାକୁର ବାପା (ଆମେ ଆଙ୍ଗା ବଙ୍ଗାଳି ତ ଏଣୁ ଓଡ଼ିଆରେ ଗୋସେଇଁ ବାବାଙ୍କୁ ଆମେ ଠାକୁର ବାପା ବା ସଂକ୍ଷେପରେ 'ଠାକୁବା' ବୋଲି ଡାକିଥାଉ । ମୋର ଠାକୁବା କାଳନ୍ଦୀ ସିଂହ ଭାରୀ ସାହସୀ ଥିଲେ । ଖୁବ୍ ଡେଙ୍ଗା ଆଉ ସୁସ୍ଥସବଳ ଥିଲେ ବୋଲି ମୋ ମାଆ ରୂପାଦେଇ କହନ୍ତି । ଥରେ ପାଣିର ଭାରି ଅଭାବ ଥାଏ । ଆମ ଗାଆଁରେ ଗୋଟିଏ ବୋଲି ବାଙ୍ଗୀ (ବଡ଼ କୂଅ) ଥାଏ । ସେଇଥିରୁ ସମସ୍ତେ ପାଣି ନିଅନ୍ତି । ବାଙ୍ଗୀ ପାଖରେ ଝଗଡ଼ା ଝଗଡ଼ି ଲାଗେ ପାଣି ପାଇଁ । ଠାକୁବା ଭାର କାନ୍ଧେଇ ବେଳେବେଳେ ଅଧ ରାତିରେ ତୋଟା ପୋଖରୀ ଯାଇ ପାଣି ଆଣନ୍ତି । ଥରେ ରାତିଅଧକୁ ପାଣିନେଇ ଫେରିଲା ବେଳକୁ ବାଟରେ ଗୋଟିଏ ବାଘ ହାବୁଡ଼ିଲେ । ସେତେବେଳେ ଆମ ଗାଆଁଠାରୁ ଅଳ୍ପ ଦୂରରେ ପଛିକୋଟ ଅଞ୍ଚଳରେ ଘୋର ଜଙ୍ଗଲ ଥାଏ । ଏପରି ଆଙ୍ଗା ଏବର ଚୋରଦା, ବ୍ୟାସନଗର ମ୍ୟୁନିସିପାଲଟି ଅଞ୍ଚଳ ବି ଜଙ୍ଗଲରେ ଭରପୁର ଥିଲା ସେତେବେଳେ ସେଇ ଜଙ୍ଗଲରୁ ବାଘଟାଏ ବୋଧେ ଚାଲିଆସି ରାସ୍ତା ମଝିରେ ବସିଥାଏ । ମୋ ଠାକୁବା ଅନେକ ସମୟ ସାମ୍ନାସାମ୍ନି ହେବାପରେ କାଳେ କହିଲେ ଆଚ୍ଛା 'ମୁଁ ନର ତୁଗୁଣ୍ଡରେ' ଦେଖାଯାଉ କାହାର କେତେ ବଳ ଏହା କହି ସେ କାନ୍ଧରେ ଥିବା ପାଣିଗରାକୁ ରଖି ବାହୁଙ୍ଗିଟି ଧରି ଆଗକୁ ମାଡ଼ିଚାଲିଲେ । ଏହାଦେଖି ବାଘଟା ଗର୍ଜି କରି ଅନ୍ୟଆଡ଼େ ଚାଲିଗଲା ।

ସେହିପରି ମୋ ପୋଷ୍ୟ ବାପ ନବ ସିଂହ ଭାରି ସାହସୀ । ଆମର ସୁକିନ୍ଦା ଅଞ୍ଚଳରେ ସୋବରା ମୌଜାରେ ଚାଷ ଜମିଥାଏ । ସେତେବେଳେ ଆଜିର ଚୋରଦା ଛକଠାରୁ ଝାଡ଼ ଜଙ୍ଗଲ ଆରମ୍ଭ ହୋଇଯାଏ । ଅନେକ ଥର ବାପା ସେଇ ଜଙ୍ଗଲ ରାସ୍ତାରେ ଯିବାବେଳେ ଧବଳଗିରି କୁଦ (ଏବେର ବ୍ୟାସନଗର କଲେଜ ଛକ) ଉପରେ ବାଘକୁ ଭେଟିବା କଥା କହନ୍ତି । ହେଲେ ନିଜର ସାହସ ଯୋଗୁଁ ବାଘର ସାମ୍ନା କରିଥାଆନ୍ତି । ମୁଁ ଥରେ ଦି'ଥର ବାପାଙ୍କ ସାଇକେଲ ପଛରେ ବସି· ଚାଷଜମି ଆଡ଼େ ଯାଇଛି । ବାଟରେ ଭାରି ଜଙ୍ଗଲ ପଡ଼େ । ମୋତେ ଖୁବ୍ ଡରମାଡ଼େ । ମୋ ଠାକୁବାପା କାଳେ ସେଇ ସୋବରା ମୌଜାରେ ଘର କରିଥିଲେ । ହେଲେ ମୋ

ଠାକୁମା ସେଠାକୁ ପିଲାଛୁଆ ନେଇ ଯିବାକୁ ଡରିଲେ । କାରଣ ଦିନ ଦ୍ୱିପହରରେ ମଧ୍ୟ ସେଠାରେ ବାଘ ମାଡେ । ଥରେ କାଳେ ଗୋଟେ ବଡ଼ ସାପ ସେ ଘରେ ପଶିଥିଲା । ୮/୧୦ ହାତ ଲମ୍ବ ହେବ । ଏସବୁ କଥା ଶୁଣି ମୋ ଠାକୁମା (ଗୋସେଇଁ ମା, ବୁଢ଼ୀମା ଯାହାକୁ ଓଡ଼ିଆରେ କହନ୍ତି) ଆଉ କେବେବି ସେ ଦୋହରା ଘରକୁ ଗଲେ ନାହିଁ । ଏବେ ବି ଆମର ସେ ସମୟର କୂଅଟା ସ୍ମୃତିସ୍ୱରୂପ ସେଠାରେ ଅଛି । ସେ ଜମିଟାକୁ ଜଣେ ବ୍ୟକ୍ତି (ଚାନ୍ଦମାର ବୀର ସାହୁ) ଜାଲିଆତି କରି ତହସିଲ୍‌ରୁ ପଟ୍ଟାନେଇ ନିଜ କମି କରିନେଇଛି । ଜମି ଉପରେ ରେଭିନ୍ୟୁ ବୋର୍ଡ଼ କେଶ୍‌ରେ ମୁଁ ହାରିଯାଇଛି । ହେଲେ ସିଭିଲ୍ କୋର୍ଟରେ କେସ୍ କରିବାକୁ ମୁଁ ମାନସିକ ଦିଗରୁ ପ୍ରସ୍ତୁତ ନୁହେଁ ।

ଆମର ଚାଷଜମିରୁ ମଧ୍ୟ ଧାନ, ହରଡ଼ ଆସେ । ସେସବୁ ପରେ କହିବି । ଆଜି କେବଳ ବାଘର କଥା କୁହାଯାଉ । ଆଉ ଦିନକର କଥା । ରାତି ସେତେବେଳକୁ ନ'ଟା କି ଦଶଟା ହେବ । ଆମ ସେଇ ଶଙ୍ଖପାରୀ ଗାଆଁରେ ଥିବା ଘରବାଡ଼ି ହେଉଛି ୨୨ ଗୁଣ୍ଠରୁ ଅଧିକ । ପ୍ରାୟ ଗୋଟେ ଏକର ପାଖାପାଖି । ବାଉଁଶବଣ ଆଉ ନିମ୍ବ, କରଞ୍ଜ, ତେନ୍ତୁଳିଗଛରେ ଖୁବ୍ ଗହଳିଆ । ଘରବାଡ଼ି ଦକ୍ଷିଣପଟ ସୀମାରେ ଗୋଟେ ନାଳ ଅଛି । ନାଳରେ ବୋଧେ ଅଳ୍ପପାଣି ଥାଏ । ଖରାଦିନେ ଭାରି ଗରମ । ସେତେବେଳେ ଗାଆଁକୁ ବିଜୁଳିବତୀ ଆସିନଥାଏ । ଏଣୁ ଗରମରେ ଛଟପଟ ହୋଇଯାଉ । ଏତିକି ବେଳେ ମୋ ସାନବାପା (ନବକିଶୋର ସିଂହ) ବାଘ ବାଘ ବୋଲି ହୁରି ପକାଇଲେ । ଆମେ ଗଲା ବେଳକୁ ସାନବାପା ବାଆଁ ହାତରେ ଲଣ୍ଠନଟେ ଧରିଛନ୍ତି । ଲଣ୍ଠନ କାଚରେ କଳା ପଡ଼ିଯିବାରୁ ଆଲୁଅ ଖୁବ୍ ମଳିଛିଆ । ଡାହାଣ ହାତରେ ଗୋଟେ ଧରଡ଼ା ବାଡ଼ିକୁ ନେଉଆ ଗଛରେ ବାଡ଼େଇ ଧଡ଼ଧଡ଼ ଖଡ଼ଖଡ଼ କରୁଥା'ନ୍ତି । ବାଡ଼ ଏକରରେ ସାନବାପା ଆଉ ସେକଡ଼ରେ ବାଘଟା ଘାଉଁ ଘାଉଁ ଗର୍ଜନ କରି ଲାଞ୍ଜ ପିଟୁଥାଏ । ମୁଁ ଗୋଟାପଣେ ଥରୁଥାଏ । ମୋ ମାଆ (ବୋଉ) ବଡ଼ମା ମଧ୍ୟ ଭୟରେ ଥରୁ ଥାଆନ୍ତି । ହେଲେ ସାନବାପା ସେମିତି ବାଡ଼ିଟାକୁ ପିଟି ଚାଲିଥାଆନ୍ତି । ଲଣ୍ଠନକୁ ଖୁବ୍ ଜୋର୍‌ରେ ହଲାଉ ଥାଆନ୍ତି । ସମ୍ଭବତଃ ନିଆଁହୁଳାର ଭ୍ରମରେ ବାଘଟା ପଳେଇ ଗଲା । ମୁଁ ସେଇଦିନ ସତକୁସତ ପହିଲିକରି ବାଘର ଗର୍ଜନ ଶୁଣିଲି । ଆଉ ସାନ ବାପାଙ୍କର ସାହସ ପ୍ରମାଣ ପାଇଲି । ଶୁଣିଲେ ତ ଛାମୁ ମୋ ଠାକୁବା ଆଉ ସାନ ବାପାଙ୍କର ସାହସର କଥା । ତେବେ ମୋ ଜନ୍ମିତ ବାପା ରାଜ କିଶୋର ସିଂହ ଥିଲେ ଖୁବ୍ ସରଳ ଓ ଭୟାଳୁ । ତାଙ୍କ ବିଷୟରେ ମୁଁ ବେଶୀ କିଛି ଜାଣିନାହିଁ । ଯାହା ମାଆ ମୁହଁରୁ ଶୁଣିଛି । ମୋର ଆଠବର୍ଷ ବୟସରେ ତାଙ୍କ ମୃତ୍ୟୁ । ହଉ ଆଜି ଏତିକି ଥାଉ - କାଲି ପୁଣି ଶୁଣିବା - କହିଲେ ଯମରାଜ ।



# ଯମପୁରୀର ଜମାନବନ୍ଦି -୪

ଯମରାଜ କହିଲେ ଯାହା ହେଉ ଠିକ୍ ସମୟରେ ସମୟରେ ତୁମେ ଆସିଗଲ ଆଗନ୍ତୁକ । ହଁ ଚିତ୍ରଗୁପ୍ତ ତୁମେ କେବଳ ଶୁଣିଲେ ହେବ ନାହିଁ । ତୁମେ ଆମର ପାଞ୍ଜି ମଧ୍ୟ ଦେଖୁଥାଅ । ଯେଉଁଠି ଆଗନ୍ତୁକ କିଛି ଭୁଲ କହୁଛନ୍ତି ବୋଲି ସନ୍ଦେହ ହୁଏ ତୁରନ୍ତ ମୋର ଦୃଷ୍ଟି ଆକର୍ଷଣ କରିବ । ଚିତ୍ରଗୁପ୍ତ କିହଲେ ଯଥା ଆଜ୍ଞା ମହାରଜ ! ଏହାପରେ ଆଗନ୍ତୁକଙ୍କୁ ତାଙ୍କର ବକ୍ତବ୍ୟ ଆରମ୍ଭ କରିବା ପାଇଁ ନିର୍ଦ୍ଦେଶ ଦେଲେ ଯମରାଜ । ଆଗନ୍ତୁକ ନନ୍ଦକିଶୋର କହି ଚାଲିଲେ-

ହଁ ଛାମୁଁ ଗତଥର ମୁଁ ଆପଣଙ୍କୁ ମୋର ବାପାଙ୍କ ମୃତ୍ୟୁ ଖବର କହିଥିଲି । ଏଇ ଘଟଣା ପଛରେ ମୋର ଏକ ସ୍ମୃତି ଜଡ଼ିତ ରହିଛି । ମୁଁ ସେତେବେଳେ ମାତ୍ର ୭/୮ ବର୍ଷର ପିଲା । ଗାଆଁରେ ବୁଲୁବୁଲୁ ଆମ ମୁଖ୍ୟ ରାସ୍ତାରୁ ଗୋଟିଏ ପେଚା ଛୁଆ ପାଇଲି । ସେ ଛୁଆଟି ମୃତ କି ଜୀବିତ ତାହା ଜାଣିବାର ବୟସ ମୋର ହୋଇ ନଥିଲା । ହୁଏତ ତା'ସହ ଖେଳିବା ପାଇଁ ମୁଁ ତାକୁ ନେଇଆସିଲି । ମାତ୍ର ତାକୁ ଘରକୁ ଆଣିବା ଦେଖି ମୋ ମାଆ କହିଲେ, "ହଇରେ ଏ କାଳପେଚାଟାକୁ ଘରକୁ କାହିଁକି ଆଣିଲୁ ? ତୋତେ ଦୁର୍ବୁଦ୍ଧି ଦେଲା କିଏ ? ଭଗବାନଙ୍କ ବୋଧେ ଆମ ଉପରେ ଖରାପ ଦୃଷ୍ଟି ପଡ଼ିଛି । ସତକୁ ସତ କେଇଟା ଦିନ ପରେ ମୋ ବାପାଙ୍କ ମୃତ୍ୟୁ ହୋଇଗଲା । ବାପା ତାଙ୍କର ଜୀବିତ ସର୍ବ କନିଷ୍ଠ କନ୍ୟା ଅର୍ଥାତ୍ ମୋ ଭଉଣୀ (ବସନ୍ତମଂଜରୀ)ର ବିବାହ ପାଇଁ ଦିନ ଠିକ୍ କରିଥିଲେ । ମଙ୍ଗଳପାକ ଦୁଇଦିନ ବାକି ରହିଥିବା ବେଳେ ତାଙ୍କର ଦେହାନ୍ତ ହୋଇଗଲା । ସେ ଦିନର ସେ କରୁଣ ଦୃଶ୍ୟ ଏବେ ବି ଝାପ୍ସା ଝାପ୍ସା ମୋ ଆଖି ଆଗରେ ଭାସି ଉଠୁଛି । ଆଜିଯାଏ ଛାମୁଁ ସେହି ଅବଶୋଷ ମୋର ରହିଯାଇଛି । ଏବେ ବି ଭାବେ ସେଇ କାଳ ପେଚା ଛୁଆଟା କ'ଣ ମୋ ବାପାଙ୍କ ମୃତ୍ୟୁର କାରଣ ।

ଏକଥା ଶୁଣି ଯମରାଜ ଟିକେ ମୁରୁକି ହସି ଚିତ୍ରଗୁପ୍ତଙ୍କୁ ଚାହିଁଲେ । ଚିତ୍ରଗୁପ୍ତ ମଧ୍ୟ ମୁଁ ସବୁ ଠିକ୍ କହୁଛି ବୋଲି ଇସାରା ଦେଲେ । ତେବେ ଚିତ୍ରଗୁପ୍ତ କହିଲେ ଏଇ କାଳପେଚା ଯୋଗୁଁ ବାପାଙ୍କ ମୃତ୍ୟୁକଥା ଭାବିବା ଠିକ୍ ନୁହେଁ । ଏଇଟା ଗୋଟିଏ ଅନ୍ଧବିଶ୍ୱାସ ମାତ୍ର । ହେ ଯାହାହେଉ ପିଲା ଦିନର ମୋର ଆଉ କେତୋଟି ସ୍ମୃତି ମୋ ମନକୁ ଆସୁଛି । କହିବାପାଇଁ ଅନୁମତି ଲୋଡ଼ିଲି ଯମରାଜଙ୍କର । ସେ ସଦୟ ସ୍ୱୀକୃତି ଦେଲେ । ମୁଁ କହି ଚାଲିଲି ।

ସାଧାରଣତଃ କିଶୋର ଅବସ୍ଥାରେ ନଈକୂଳ, ତୋଟାମାଳ, ପାହାଡ଼ଖୋଲ ଆଡ଼େ ବୁଲିବାକୁ ମନଥାଏ । ମୁଁ ତ ଆଗରୁ କହିଛି ଆମ ଗାଆଁରେ ନଈ ନାହିଁ କି ପାହାଡ଼ ପର୍ବତ ନାହିଁ । ତେବେ କାଁ ଭାଁ ଆମ୍ବଗଛ ଥାଏ । ଖରାଦିନେ ଦ୍ୱିପ୍ରହରେ ସେଇ ଆମ୍ବ ଗଛରୁ ପାଚିଲା ଆମ୍ବ ଝଡ଼ିପଡ଼େ । ସେଇ ଲୋଭରେ ମୋ ପୋଷ୍ୟ ବାପା ନବକିଶୋର ମୋତେ ଜୋର ଜବରଦସ୍ତ ପାଖରେ ଶୁଆଇ ପକାଇଲେ ବି ମୁଁ ଶୋଇବାର ଛଳନା କରେ । ଆଉ ସେ ଶୋଇଲେ କି ନ ଶୋଇଲେ ମଝିରେ ମଝିରେ ମୋ ଆଖି ଖୋଲି ଦେଖୁଥାଏ । ସେ ଅଳ୍ପ ସମୟ ପରେ ଘୁଙ୍ଗୁଡ଼ି ମାରିଲେ ମୁଁ ଖୁବ୍ ହୁସିଆରରେ ବିଛଣାରୁ ଉଠି ଆମ୍ବଗଛ ମୂଳକୁ ଧାଏଁ । ଆମ୍ବଗଛ ମୂଳରେ ପ୍ରାୟତଃ ଦ୍ୱିପ୍ରହରଟା କଟେ । ଏଇଠି ମୋ ସାଙ୍ଗ ଉଧ, ବେଙ୍ଗ, କୃଷ୍ଣ, ଗେଡ଼ା ମଧ ପହଞ୍ଚି ଯାଆନ୍ତି । ସେଠାରେ ପୁଆ ଡାବଳ (ଗିଲିଦଣ୍ଡା) ଖେଳ ବି ହୁଏ । ଆମ ପିଲାଦିନ ସମୟରେ ଆଜି କାଲିକା ପରି ଗାଆଁ ଗାଆଁରେ କ୍ରିକେଟ୍ ଖେଳ ନଥିଲା । କ୍ରିକେଟର ନାଆଁ ବି ଆମେ ଶୁଣି ନଥିଲୁ । ଏଇ ପୁଆ ଡାବଳ, ଗିଲିଦଣ୍ଡା ସାଙ୍ଗକୁ କଉଡ଼ି ଖେଳ, ବାଗୁଡ଼ି ବହୁଚୋରି ଖେଳ ବେଶ୍ ଜମେ । ବାଗୁଡ଼ି ଖେଳ ଦିନରେ ହେବାବେଳେ ବହୁଚୋରି ଆଉ ବାଘଛେଳି ଖେଳ ରାତିରେ ହୁଏ । ସଞ୍ଜହେବା ମାତ୍ରେ ଆମେ ସମସ୍ତେ ଗାଆଁ ଦାଣ୍ଡରେ ଏକାଠି ହୋଇ ବାଘଛେଳି, ବୋହୂଚୋରି ଖେଳ ଖେଳୁ । ଲୁଚକାଳି ଖେଳରେ ବି ଖୁବ୍ ମଜା ହୁଏ ।

ହଁ ଦିନକର କଥା । ସେଇ ଆମ୍ବଗଛ ମୂଳେ ବଡ଼େଇ ସାହିରେ ମୁଁ, ଉଧ, ବେଙ୍ଗ, କୃଷ୍ଣ ଆମ୍ବ ସାଉଁଟିବା ସଙ୍ଗେ ସଙ୍ଗେ ଖେଳିବାକୁ ଏକାଠି ହୋଇଥାଉ । ଏତିକିବେଳେ ଖୁବ୍ ଜୋର ଝଡ଼ତୋଫାନ ଆସିଲା । ଏତେ ଜୋର୍‌ରେ ପବନ ହେଲା ଯେ, ଆମ ଭିତରୁ ଜଣକୁ ପବନ ଠେଲିନେଇ କିଆବୁଦା ମୂଳରେ ପକେଇ ଦେଲା । ମୋତେ ପବନ ଠେଲିଠେଲି ନେଇ ଗୋଟେ ପୋଖରୀ ଭିତରେ ପୂରାଇ ଦେଲା । ସୌଭାଗ୍ୟକୁ ପୋଖରୀରେ ଅଳ୍ପ ପାଣି ଥିଲା । ଏଣୁ ବୁଡ଼ିବାର ସମ୍ଭାବନା ନଥିଲା ।

ସେଇ ଝଡ଼ବର୍ଷା ଭିତରେ ମୋ ସାନବାପା (ପୋଷ୍ୟବାପା) ମୋତେ ଖୋଜି ଖୋଜି ଯାଇ ଆମ୍ବ ଗଛମୂଳେ ପହଞ୍ଚିଗଲେ । ହାତରେ ଥାଏ ବେଗୁନିଆ ଛଡ଼ି । ମୁଁ ଆଉ ମୋର ସାଙ୍ଗ ପ୍ରାଣ ଭୟରେ ଧାଇଁ ଧାଇଁ ନିଜ ଘରକୁ ଚାଲିଆସିଲୁ ।

ଏଇ ପିଲାଦିନର ଆଉ ଏକ ମଧୁର ସ୍ମୃତି ଏବେ ବି ମନେପଡ଼େ । ଅଗି ପୁନେଇଁରେ ସମସ୍ତେ ଆମେ ନିଆଁ ବରିଆ ବୁଲେଇ ନେଲୁ । ଆଜି ଅଗି ପୁନେଇଁ ଆସିଛି, ଅଗି ଜଳୁଛି । ହେଲେ ପିଲାମାନଙ୍କ ମନରେ ସେ ଆନନ୍ଦ ନାହିଁ । ହସ ଖୁସି ନାହିଁ । ଆମ ଗାଆଁରେ ଏବେ ମନୋମାଳିନ୍ୟ ଯୋଗୁଁ ଦୁଇ ଦଳ ହୋଇ ଦୁଇ ତିନିଟା

ଅଗି ଜଳୁଛି । ଅଥଚ ଆମ ସମୟରେ ଆମେ ପିଲାଏ ସବୁ ଏକ ହୋଇ ଖେଳୁଥିଲୁ । ଗୋଟିଏ ଅଗି ଜଳୁଥିଲା ।

ଏଇ ଅଗି ପୁନେଇ ଦିନ ଦୁଦିଭାଇ ଘର ଆମ୍ବଗଛ ମୂଳେ ଥିବା ଗୁଡ଼େ କିଆକୁ ପୋଡ଼ିବା ଆମର ଲକ୍ଷ୍ୟ ଥାଏ । କାରଣ ଆମେ ଶୁଣିଥିଲୁ ଏଇ କିଆ ବୁଦାରେ କାଳେ ସାପ ଥାଏ । ଶିଆଳ ବି ଗାତ କରିଥାଏ । ଏଣୁ କିଆକୁ ପୋଡ଼ିଦେଲେ ଆମ୍ବ ସାଉଁଟିବା ସୁବିଧା ହେବ । ଦୁଦିଭାଇ ବି, କିମିତି ଆମ ଯୋଜନାର ସୁରାକ୍ ପାଇ ଯାଇଥାଏ । ସେ କିଆ ବୁଦାକୁ ଗୋଟେ ଠେଙ୍ଗା ଧରି ଜଗି ବସିଥାଏ । ହେଲେ ଆମେ ବି ଗୋଟେ ଉପାୟ କଲୁ । ଆମ ଭିତରୁ କେତେଜଣ ରାସ୍ତାରେ ଦୁଦିଭାଇକୁ ଶୁଣେଇବା ଭଳି କଥାହେଲୁ । ଦୁଦିଭାଇ ଆମ କଥାକୁ କାନେଇ ଥିବା ବେଳେ ଆମ ଭିତରୁ ମୁଁ ଆଉ ମୋ ସାଙ୍ଗ ଛପି ଛପି ଅନ୍ୟ ବାଟରେ ଆସି କିଆ ବୁଦାକୁ ପୋଡ଼ିଦେଲୁ । ଦୁଦିଭାଇ ବାଡ଼ିରେ କିଆବୁଦାକୁ ପିଟି ଚାଲିଥାଏ । ମୁଁ ଲୁଚିକରି ଆସୁ ଆସୁ ଗୋଟେ ହିଡ଼ ଝୁଣ୍ଟି ଗୋଡ଼ ଜଖମକରି ପନ୍ଦର ଦିନ ସ୍କୁଲ ଯିବା ବନ୍ଦକଲି । ସେତେବେଳେ ଜଖମ କମିବା ପାଇଁ ଗାଁ ଗହଳିରେ ଏକମାତ୍ର ଔଷଧ ହେଉଛି ରନ୍ଧା ଜଡ଼ା ତେଲ ମାଲିସ କରିବା ଆଉ ପାଣି କନା ଗୁଡ଼େଇବା । ମୋ ଡାହାଣ ଗୋଡ଼ ବୁଢ଼ାଆଙ୍ଗୁଳିଟା ଫୁଲି ଯାଇଥାଏ ଖୁବ୍ । ଜଡ଼ା ତେଲ ପାଣି କନା ଗୁଡ଼େଇଥିଲେ ବି ଭଲ ହେଉ ହେଉ ଅନେକ ଦିନ ଲାଗିଲା । ସ୍କୁଲ ଯିବା ପାଠପଢ଼ା ବି ବନ୍ଦ ହେଲା । ତେବେ ଏଇ ସମୟରେ ମୋ ମାଆ ମୋର ସବୁ ଯତ୍ନ କରୁଥାଏ । ଆଉ ସାନବାପାକୁ ଦେଖିଲେ ଗାଳି ଖାଇବା ଭୟରେ ମୁଁ ଶୋଇପଡ଼ିବାର ଛଳନା କରୁଥାଏ । ହଁ- ଛାମୁ ଏଇ ସ୍କୁଲ ଯାଇ ଆମେ ସବୁ କ'ଣ କରୁଥିଲୁ- ସେକଥା କାଲି କହିବି । ଏବେ ଏତିକିରୁ ମୋତେ ଆଜି ପାଇଁ ବିଦାୟ ଦିଅନ୍ତୁ ।



# ଯମପୁରୀର ଜମାନବନ୍ଦି -୫

ଯମରାଜ କହିଲେ ହଁ ଆଗନ୍ତୁକ ଆଜି ତୁମର କେଉଁ କଥା କହିବାର ଥିଲା ମନେ ଅଛି ତ ? ଆଗନ୍ତୁକ କହିଲେ ଆଜ୍ଞା ମୋର ସ୍କୁଲ ଯିବା ଦିନର କଥା କହିବି ବୋଲି କହିଥିଲି । ଶୁଣନ୍ତୁ ଯମରାଜ ! ଯବରାଜ ଚିତ୍ରଗୁପ୍ତଙ୍କୁ କହିଲେ ଚିତ୍ରଗୁପ୍ତ ତୁମେ ପଞ୍ଜିକା ବାହାର କରି ସବୁ ଠିକ୍ ଠିକ୍ କୁହାଯାଉଛି କି ନାହିଁ ପରୀକ୍ଷା କରୁଥାଅ । ଚିତ୍ରଗୁପ୍ତ କହିଲେ ଯଥା ଆଜ୍ଞା ମହାରାଜ ! ହଁ ଆଗନ୍ତୁକ ଏଥର ଆରମ୍ଭ କର ତୁମର ପିଲାଦିନର ସ୍କୁଲ ଯିବା ବିଷୟ ।

କହୁଛି ଆଜ୍ଞା ! ଆପଣ ମନ ଧ୍ୟାନ ଦେଇ ଶୁଣନ୍ତୁ । ମୁଁ ଘରେ ମୋର ସାନବାପା (ନବକିଶୋର)ଙ୍କ ପାଖରେ ପ୍ରଥମେ ପଢ଼ାପଢ଼ି କରୁଥିଲି । ମାଟିଖଡ଼ି ଧରି ପଣିକିଆ ଶେଷକରି ବହିପତ୍ର ପଢ଼ାପଢ଼ି ଶେଷ କରୁଥିଲି । ଏପିରିକି କିଛି କିଛି ଇଂରାଜୀ ପାଠ ମଧ୍ୟ ପଢ଼ିସାରିବା ପରେ ଆମ ଗାଆଁ ସାଦକପୁର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ପାଠ ପଢ଼ିଲି । ମୋର ମନେପଡୁଛି ୧୯୪୭ ମସିହାରେ ମୁଁ ପ୍ରଥମ ଶ୍ରେଣୀରେ ନାମ ଲେଖାଇଲି । ମୋ ସାନବାପା ମୋତେ ଶିଶୁ ଶ୍ରେଣୀରୁ ପୁଣି ପଢ଼ାଇବାକୁ ଚାହିଁଥିଲେ । ଶିକ୍ଷକ କହିଲେ ଇଯେତ ତୃତୀୟ ଶ୍ରେଣୀ ପାଠ ଶେଷକରି ସାରିଛି । ଏଣୁ ତାକୁ ବରଂ ଦ୍ୱିତୀୟ ଶ୍ରେଣୀରେ ନାମ ଲେଖାଇବା ଦରକାର । ଶେଷକୁ ପ୍ରଥମ ଶ୍ରେଣୀରେ ନାମ ଲେଖାଗଲା । ଏବେ ନିମ୍ନପ୍ରାଥମିକ ବିଦ୍ୟାଳୟମାନଙ୍କରେ ଶିଶୁ ଶ୍ରେଣୀ ଆଉ ନାହିଁ । କିନ୍ତୁ ଆମ ସମୟରେ ଏହା ଥିଲା । ଆମ ସମୟରେ ପଣିକିଆ ବଡ଼ କଷ୍ଟ ଥିଲା । ଟଙ୍କା ଅଣା ପଇସା, ଅଧଲା, ପାହୁଲାର ଚଳ ପ୍ରଚଳନ ଥିଲା । ସେତେବେଳର ପାହୁଲାଟି ତମ୍ବାର ଥିଲା । ତାହା ପ୍ରାୟତଃ ଏବେର ନୂଆ ଏକପଇସି ପରି । ତେବେ ସେ ଯାହାହେଉ ମୁଁ ପଣିକିଆ ଭଲ ଭାବରେ ଡାକି ପାରୁଥିଲି । ଭଲ ପାଠ ବି ପଢୁଥିଲି । ମୋର ଶିକ୍ଷକ ନୀଳମଣି ସାହୁ ଆଉ ପ୍ରଧାନଶିକ୍ଷକ କାଳିନ୍ଦୀ ପ୍ରସାଦ ତେଓ୍ୱାରି ମଧ୍ୟ ଖୁବ୍ ଯତ୍ନନେଇ ପାଠ ପଢ଼ାଉଥିଲେ । ଏହାଛଡ଼ା ଆମ ଗାଆଁର ମୁସଲମାନ ପିଲାମାନେ ଥିବାରୁ ଜଣେ ଉର୍ଦ୍ଦୁ ଶିକ୍ଷକ (ମୌଲବୀ) ମଧ୍ୟ ଥିଲେ । ସେତେବେଳେ ପ୍ରଧାନଶିକ୍ଷକ ପଦ ପ୍ରାଥମିକ ବିଦ୍ୟାଳୟରେ ନଥିଲା । ସେମାନଙ୍କୁ ହେଡ଼ପଣ୍ଡିତ କୁହାଯାଉଥିଲା ।

ନୀଳମଣି ସାର୍ ଖୁବ୍ ଭଲ ପାଠ ପଢ଼ାନ୍ତି । ପିଲାମାନଙ୍କ ମଧ୍ୟରେ ଉତ୍ସାହ ବଢ଼ାଇବା ପାଇଁ ସେ ନିଜେ ଗୀତ ମାଧ୍ୟମରେ ଶିକ୍ଷା ପ୍ରଦାନ କରନ୍ତି । ଶ୍ରେଣୀରେ

ମାନସାଙ୍କ, ରଚନା ଆଦିର ପ୍ରତିଯୋଗିତା କରାଇ ସେ ବିଭିନ୍ନ ବହିରୁ ସୁନ୍ଦର ସୁନ୍ଦର ରଙ୍ଗୀନ୍ ଛବି କାଟିଆଣି ପୁରସ୍କାର ଆକାରରେ ଦିଅନ୍ତି । ମୁଁ ଅନେକ ସମୟରେ ଏହି ପୁରସ୍କାର ପାଇଥାଏ । ସେ ଦିନର ସେଇ ରଙ୍ଗୀନ୍ ଛବିଟି ପୁରସ୍କାର ପାଇ ଯେଉଁ ଆନନ୍ଦ ପାଇଥିଲି ଆଜି ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ ବି ସେ ଆନନ୍ଦ ମୋତେ ମିଳିବ କି ନାହିଁ ସନ୍ଦେହ ।

ହେଡ଼ ପଣ୍ଡିତ କାଳିଆ ମାଷ୍ଟ୍ରେ (କାଳିନ୍ଦୀ ପ୍ରସାଦ ତେଓ୍ୟାରୀ)ଙ୍କ ପାଠପଢ଼ା ଢଙ୍ଗ ଭିନ୍ନ । ସେ ଆମମାନଙ୍କ ପ୍ରତି ଖୁବ୍ ରୁକ୍ଷ । ଆମେ ତାଙ୍କୁ ଖୁବ୍ ଭୟକରୁ । ମାଡ଼ ଭୟରେ ଆମେ ସଦାବେଳେ ଥରୁଥାଉ । ବାହାରକୁ ସେ ଖୁବ୍ ରୁକ୍ଷଥିଲେ ବି ଭିତରେ ମୋ ପ୍ରତି ତାଙ୍କର ସ୍ନେହ ଥାଏ ।

ଦିନକର କଥା ମୋ ବାପା ସ୍କୁଲରେ ଯାଇ ପହଞ୍ଚିଲେ । ବାପା କାହିଁକି ସ୍କୁଲକୁ ଆସିଛନ୍ତି ଏକଥା ଭାବି ମୁଁ ମନେ ମନେ ଖୁବ୍ ଡ଼ରିଯାଇଥାଏ । କିଛି ସମୟ ପରେ ବାପା ଚାଲିଗଲେ । ସେ ଚାଲିଗଲା ପରେ କାଳିଆ ମାଷ୍ଟ୍ରେ ମୋତେ ଏବଂ ମୋ ସାଙ୍ଗ ଉଧ, କୃଷ୍ଣ, ବେଙ୍ଗ (ବଳରାମ)ଙ୍କୁ ଡାକି କାନଧରି ଠିଆହେବାକୁ କହିଲେ । ଆମ ବିରୁଦ୍ଧରେ ବାପାଙ୍କର ଅଭିଯୋଗ ଥାଏ ଆମେ ସାଇକେଲର ରିମ୍‌କୁ ଗାଡ଼ିକରି ଗଡ଼େଇ ଗଡ଼େଇ ସକାଳୁ ସଞ୍ଜ ଖେଳୁଛୁ । ପାଠ ପଢୁନାହୁଁ । ପିଲାବେଳ ଆମର । ସାଙ୍ଗସାଥୀ ହୋଇ ନ ଖେଳିଲେ ଭଲ ଲାଗେନା । ଏଣୁ ରାସ୍ତାକଡ଼ରେ ଗୋଟେ ଗୋଟେ ବାଡ଼ିପୋତି ସେଥିରେ ଛିଣ୍ଡା ଟୋପି କିମ୍ୱା ଖବରକାଗଜ ବାନ୍ଧି ତାକୁ ଗୋଟେ ଗୋଟେ ଷ୍ଟେସନ କରୁ । ସାଇକେଲ ରିମ୍‌ଟି ଆମପାଇଁ ରେଳଗାଡ଼ି ପାଲଟେ । ଗାଡ଼ି ଚାଲି ଷ୍ଟେସନ ମାନଙ୍କରେ ଠିଆହୁଏ । ଏଇ ଖେଳ ଖେଳି ଆମେ ସମୟ କାଟୁ ।

ଆଜି ସେଇ ଖେଳ ବିରୁଦ୍ଧରେ ବାପାଙ୍କର ଅଭିଯୋଗ ଯୋଗୁଁ କାଳିଆ ମାଷ୍ଟ୍ରେ ସ୍କୁଲକୁ ଲାଗି ରହିଥିବା କାଞ୍ଜିଆ ବୁଦାରୁ ଜକାଙ୍ଗ ଗଛର ଛଡ଼ି ଅଣାଇ ଆମକୁ ନିର୍ଦ୍ଦୟ ଭାବରେ ପିଟିବାରେ ଲାଗିଲେ । ଦେହ ହାତରେ ନୋଳାସବୁ ବସିଯାଇଥାଏ । ମୁଁ ଏବଂ ମୋର ସାଙ୍ଗ ଉଧ, କଷ୍ଣ ଓ ବେଙ୍ଗ ମାଡ଼ଖାଇ ଖୁବ୍ ଚିତ୍କାର କରି କାନ୍ଦୁଥାଉ । ମନ ଭିତରେ ସେତେବେଳେ ବାପାଙ୍କ ପ୍ରତି ଘୃଣାଭାବ ଆଉ କାଳିଆ ମାଷ୍ଟ୍ରେଙ୍କ ପ୍ରତି ଭୟ ଓ ବିଦ୍ରୋହଭାବ ଏବେବି ମନେପଡୁଛି ।

ମାଡ଼ଦିଆ ପର୍ବ ସରିଲା । ତା'ପରେ ଆମ ଉପରେ ପାଠର ବୋଝ ଲଦି ଦିଆଗଲା । ଓଡ଼ିଶାର ମନ୍ତ୍ରିମଣ୍ଡଳର ନାମ ଆଉ ପ୍ରତି ମନ୍ତ୍ରୀଙ୍କର ବିଭାଗ ସହ ମୁଖସ୍ଥ କରି ଆଣିବା ପାଇଁ କାଳିଆ ମାଷ୍ଟ୍ରେ ନିର୍ଦ୍ଦେଶ ଦେଲେ । ଆମେ ସମସ୍ତେ ଘରକୁ

ଆସିଲୁ । ଅନ୍ୟ ସାଙ୍ଗମାନେ କ'ଣ କଲେ ମୁଁ ଜାଣେନା । ମୁଁ କିନ୍ତୁ ଓଡ଼ିଶାର ମନ୍ତ୍ରିମଣ୍ଡଳକୁ ବାରମ୍ବାର ପଢ଼ି ମୁଖସ୍ଥ କରିବା ପାଇଁ ଲାଗିପଡ଼ିଲି ।

ତହିଁଆରଦିନ ମୋ ତିନି ସାଙ୍ଗ କେହି ଭୟରେ ସ୍କୁଲ ଗଲେ ନାହିଁ । ବୋଧହୁଏ ସେମାନେ ପାଠ ମୁଖସ୍ଥ କରି ନଥିଲେ । ମୁଁ କିନ୍ତୁ ଭୟରେ ସ୍କୁଲଗଲି । କାରଣ ଘରେ ରହିଲେ ସାନବାପା ମାଡ଼ ଦେବେ । ଯା'ହେଉ କାଳିଆ ମାଷ୍ଟ୍ରେ ମୋତେ ଗୋଟି ଗୋଟି ମନ୍ତ୍ରୀମାନଙ୍କ ନାମ ଆଉ କିଏ କେଉଁ ବିଭାଗର ମନ୍ତ୍ରୀ ଥାଆନ୍ତି ପଚାରିଲେ । ମୁଁ ତ ତାକୁ ଘୋଷି ଦେଇଥିଲି ତେଣୁ ସବୁ ଗୋଟି ଗୋଟି କରି ଠିକ୍ ଠିକ୍ ଉତ୍ତର ଦେଇଦେଲି । ଏଥିରେ ମୋ ବଡ଼ ସାର୍ କାଳିଆ ମାଷ୍ଟ୍ରେ ଖୁବ୍ ଖୁସି ହୋଇଗଲେ ।

ସେ ଯାହାହେଉ ଏଇଭଳି ଧାରାରେ ପାଠ ପଢ଼ି ମଧ ମୁଁ ପ୍ରାୟ ପ୍ରତି ଶ୍ରେଣୀରେ ପ୍ରଥମ ହେଉଥିଲି । ଏଣୁ ଶିକ୍ଷକମାନଙ୍କର ମୋ ପ୍ରତି ଶ୍ରଦ୍ଧା ମଧ ଥିଲା । ବିଶେଷତଃ ନୀଳାଭାଇ ମୋତେ ଖୁବ୍ ଭଲ ପାଉଥିଲେ । ନୀଳମଣି ସାହୁମୋର ହିସାବରେ ଭାଇ ହୁଅନ୍ତି । ଏଣୁ ମୁଁ ବଡ଼ ହେବା ପରେ ଏଇ ନୀଳମଣି ମାଷ୍ଟ୍ରଙ୍କୁ ନୀଳା ଭାଇ ରୂପେ ଡାକି ଆସିଛି । ନୀଳା ଭାଇ କେବଳ ମୋ ମାଷ୍ଟର ନଥିଲେ, ପରବର୍ତ୍ତୀ ଅବସ୍ଥାରେ ସେ ମୋ ପୁଅକୁ ମଧ ପାଠ ପଢ଼ାଇ ଥିଲେ । ଟିଉସନ୍ ମଧ କରୁଥିଲେ ମୋ ପୁଅକୁ । ସେ କଥା ମୁଁ ପରେ କହିବି ।

ତେବେ ବେଳେବେଳେ ମୁଁ ମଧ କାଳିଆ ମାଷ୍ଟ୍ରଙ୍କ ପାଖକୁ ଟିଉସନ୍ ହେବାକୁ ଯିବାକଥା ମୋର ମନେପଡୁଛି । ସମ୍ଭବତଃ ସେ ଅଙ୍କରେ ଖୁବ୍ ଭଲ ବୋଲି ମୋତେ ବାପା ଅଙ୍କ ପଢ଼ିବା ପାଇଁ ତାଙ୍କ ପାଖକୁ ପଠାଉଥିଲେ । କାରଣ ମୁଁ ଶ୍ରେଣୀରେ ପ୍ରଥମ ହେଉଥିଲି ଏବଂ ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିଲି । ଏଇ ନିମ୍ନ ପ୍ରାଥମିକ ବୃତ୍ତିପରୀକ୍ଷା ଦେଲିକି ନଦେଲି ସେକଥା କାଲି କହିବି ଛାମୁ ! ଆଜି ମୋତେ ଏତିକିରୁ ବିଦାୟ ଦିଅନ୍ତୁ । ମୋ କଥାଶୁଣି ଯମରାଜ ଖୁସି ହେଉଥିଲେ । କହିଲେ ନନ୍ଦକିଶୋର ତୁମେ ଯାହାହେଲେ ବି ଖୁବ୍ ଭଲ ଛାତ୍ର ଥିଲ । ବେଶ୍ କାଲି ଆସ ତୁମର ଜୀବନର କଥା କହିଚାଲ ।

ତା'ପରେ ଚିତ୍ରଗୁପ୍ତ ମଧ ଯମରାଜଙ୍କ କଥାରେ ସମ୍ମତି ଜଣାଇ କହିଲେ ହଁ ମଣିମା ! ଇଏ ଯାହା କହୁଛନ୍ତି ସବୁ ଠିକ୍ ଠିକ୍ କହୁଛନ୍ତି । ତା'ପରେ ମୁଁ ଯମପୁରୀର ଅତିଥିଶାଳାକୁ ଚାଲିଲି ।



# ଯମପୁରୀର ଜମାନବନ୍ଦି -୬

କ'ଣ ଆଜି ଖୁବ୍ ସଅଳ ସଅଳ ଆସି ରାଜ ଦରବାରରେ ପହଞ୍ଚି ଗଲ ! କହିଲେ ଯମରାଜ ! ସେ ଆଜ୍ଞା ଖୁବ୍ ସମୟାନୁବର୍ତ୍ତୀ । ହସି ହସି କହିଲେ ଚିତ୍ରଗୁପ୍ତ ।

ମୁଁ ନିଜକୁ କୃତ କୃତ୍ୟ ମନେ କଲି । ତା'ପରେ ଆରମ୍ଭ କଲି ମୋର ଅଙ୍ଗେନିଭା କଥା  ଗତଥର କହିଛି ମୁଁ ନମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷାରେ ଜଣେ ପ୍ରାର୍ଥୀ ଥିଲି । ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ମଧ ହେଉଥିଲି । ମୋତେ ସନ୍ଧ୍ୟା ସମୟରେ ଭୀମ ସାର୍ ଆସି ପଢ଼ାଉଥିଲେ । ମାତ୍ର ତାଙ୍କ ପାଠପଢ଼ା ମୋତେ ଭଲ ଲାଗୁ ନଥିଲା । ଏଣୁ ସେ କିଛି ସମୟ ଟିଉସନ୍ କରିବା ପରେ ମୁଁ ନିଦ ଆସିବାର ବାହାନା କରେ । ହାଇ ପରେ ହାଇ ଆସିବାର ଛଳନା କରେ । ତା'ପରେ ମୋ ସାନବାପା କେଉଁଦିନ ବିରକ୍ତ ହୁଅନ୍ତି ତ କେଉଁଦିନ ଚାପଡ଼ାଏ ମାରି ଘରକୁ ବିଦା କରିଦିଅନ୍ତି ।

ଯାହା ହେଉ ବହୁ କଷ୍ଟରେ ବାପା ମୋତେ ବୃତ୍ତି ପରୀକ୍ଷାକୁ ପଠାଇବାକୁ ରାଜିହେଲେ । ସେତେବେଳେ ଯାଜପୁର ହାଇସ୍କୁଲରେ ବୃତ୍ତି ପରୀକ୍ଷା ହେଉଥାଏ ମୁଁ ଯାଇ ଯାଜପୁରର ଏକ ଧର୍ମଶାଳାରେ ରହିଥିଲି । ସାନବାପା ସାଙ୍ଗରେ ଯାଇଥିଲେ । ନୀଳମଣି ସାର (ନୀଳ ସାର୍) ମଧ ଯାଇଥିଲେ । ପ୍ରଥମକରି ଘରୁ ବାହାରି ଏକ ନୂଆ ଜାଗାରେ ରହିବା ଏବଂ ନୂଆ ଅଜଣା ସାର୍‌ଙ୍କ ଉପସ୍ଥିତିରେ ପରୀକ୍ଷା ଦେବାକୁ ମୋଟେ ଭଲ ଲାଗୁ ନଥାଏ । ପରୀକ୍ଷାରେ ମଧ ଖୁବ୍ ଡ଼ର ଲାଗୁଥାଏ । ଅଙ୍କ ମୋର ଗୋଟେ କି ଦୁଇଟା ଭୁଲ ହୋଇଗଲା । ମୋର ଭୁଲ ହେବାର କାରଣ ହେଲା ଖୁବ୍ ଭୟ । ମନେଅଛି ନୀଳମଣି ସାର୍ କହିଲେ ନନ୍ଦ ତୋର କଳସୀ ଭାଙ୍ଗିଗଲା । ଅର୍ଥାତ୍ ସ୍କଲାରସିପ୍ ଆଉ ମିଳିବ ନାହିଁ । ପ୍ରକୃତରେ ତାହା ହିଁ ହେଲା । ମୁଁ ସ୍କଲାରସିପ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲି ।

ଏତିକିବେଳେ ଚିତ୍ରଗୁପ୍ତ ଯମରାଜଙ୍କୁ ଲକ୍ଷ୍ୟକରି କହିଲେ ଛାମୁ ଇଯେ ସିନା ବୃତ୍ତି ପାଇପାରିଲେ ନାହିଁ, କିନ୍ତୁ ଭଲ ଗୀତ ଗାଉଥିଲେ । ଏକଥା ଶୁଣି ମୁଁ ବାଧାଦେଇ କହିଲି- ଛାମୁ ! ମନ୍ତ୍ରୀ ମହାଶୟ ମୋତେ ପରିହାସ କରୁଛନ୍ତି । ତେବେ ମୁଁ ଗୀତ ଗାଇଥିବା କଥା ସତ । ଆମର ସର୍କଲସ୍ତରୀୟ ଏକ କ୍ରୀଡ଼ା ଆଉ ସାଂସ୍କୃତିକ ପ୍ରତିଯୋଗିତା ହେଉଥାଏ । ସ୍କୁଲ ସବ୍‌ଇନ୍‌ସ୍ପେକ୍ଟର ହରି ବାବୁ ଏହାକୁ ପରିଚାଳନା କରୁଥାଆନ୍ତି । ଖେଳକୁଦ ସାଙ୍ଗକୁ ଗୀତ ନାଚର ବ୍ୟବସ୍ଥା ଥାଏ । ମୁଁ ଗୋଟିଏ ଦେଶ ବନ୍ଦନା

ଗାଇଥିଲି "ଭାରତ ଜନନୀର ଯୋଗ୍ୟ କୁମର ବର ।'' ଏଇ ଗୀତଟି ଗାଇବା ବେଳେ ମଧ୍ୟ ମୁଁ ଭୟରେ ଥରୁଥିଲି ।

ସମ୍ଭବତଃ ସେହି ଥିଲା ମୋର ଜୀବନର ପ୍ରଥମ ଓ ଶେଷ ଗୀତ ଗାଇବା । ମୁଁ ସଙ୍ଗୀତ ଗାଇବା ଆଶା ଛାଡ଼ିଦେଲି । ତେବେ ପରବର୍ତ୍ତୀ ସମୟରେ ଏଇ ସଙ୍ଗୀତ ମୋତେ ଛାଡ଼ି ନଥିଲା । ମୁଁ ଗୀତ ସିନା ଗାଇ ପାରିଲି ନାହିଁ କିନ୍ତୁ ଲେଖିଚାଲିଛି । ଶେଷକୁ ୧୯୬୩ ମସିହାରୁ ଆକାଶବାଣୀର ଗୀତିକାର ହେଲି । ଏସବୁ କଥା ପରେ କହିବି । ହଁ ସେସବୁ ପରକଥା । ତେବେ ତୁମେ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦିଅ । ତୁମେ ଏଇ ଯମପୁରୀ କଥାଟା ବିଶ୍ୱାସ କର କି ? କହିଲେ ଯମରାଜ ।

ମୁଁ କହିଲି ଆଜ୍ଞା ଏଥିରେ ଅବିଶ୍ୱାସର ପ୍ରଶ୍ନ ଉଠୁଛି କାହିଁକି ? ମୁଁ ତ ନିଜେ ଆସି ଆପଣଙ୍କ ନଅରରେ ରହିଛି । ତେବେ ହଁ ପିଲାଦିନେ ମୋ ଠାକୁମା'ଙ୍କ ଜୀବନର ଗୋଟିଏ ଘଟଣା ମୋତେ ବଡ଼ ସନ୍ଦେହରେ ପକାଉଥିଲା । ଘଟଣାଟି ଏହିପରି.... ।

ଥରେ ଠାକୁ ମା' (ଜେଜେ ମା') ରୋଗରେ ପଡ଼ିଲେ । ବଡ଼ କଷ୍ଟ ପାଇଲେ । ସେ ମୂର୍ଚ୍ଛା ହୋଇଗଲେ । ଘରେ କାଳେ କାନ୍ଦବୋବାଳି ପଡ଼ିଗଲା । ସମସ୍ତେ ଭାବିଲେ ସେ ମରିଗଲେ । କାରଣ ମରିବାର ସମସ୍ତ ଲକ୍ଷଣ ଫୁଟିଉଠିଲା । ସମସ୍ତେ ମୁଣ୍ଡପିଟି କାନ୍ଦୁଥାଆନ୍ତି । ଏମିତି ୫/୭ ମିନିଟ୍ ପରେ ହଠାତ୍ ଠାକୁମା' ଟିକେ ମୁଣ୍ଡଟାକୁ ହଲାଇଲେ । ସମସ୍ତେ କାନ୍ଦ ବନ୍ଦକରି ଚୁପ୍ ହୋଇଗଲେ । ଠାକୁମା' ବଞ୍ଚିଥିବାର ଆଶା ପୁଣି ଜିଇ ଉଠିଲା । ସେ ମଧ୍ୟ କଥା କହିଲେ ଅବଶ୍ୟ ଖୁବ୍ କଷ୍ଟରେ ଏବଂ ଖନଖନେଇ କହିଲେ । ତାର ସାରାଂଶ ହେଲା ତାଙ୍କୁ ଦୁଇଜଣ ବିକଟାଳ ଚେହେରାର ଲୋକ ଆସି ଧରି ନେଇଗଲେ । ହେଲେ ସେ ଦୁଇ ଜଣ ତାଙ୍କୁ ତାଙ୍କ ରଜାଙ୍କ ପାଖରେ ପହଞ୍ଚାଇ ଦେବାରୁ ତାଙ୍କ ମନ୍ତ୍ରୀ ଏ ଦୁଇ ଜଣଙ୍କୁ ଖୁବ୍ ଗାଳିକଲେ । ଇଏ ଲୋକଟାକୁ ଏତେଶୀଘ୍ର ନେଇ ଆସିବାଟା ଭୁଲ୍ ହେଲାବୋଲି ଖୁବ୍ ପାଟିକଲେ । ତା'ପରେ ସେ ଦୁଇଜଣ କାଳେ ପୁଣି ମୋ ଠାକୁମା'ଙ୍କୁ ଆଣି ଗୋଟେ ନାଳ ପାଖରୁ ଗୋଇଠାମାରି ଫୋପାଡ଼ି ଦେଲେ । ଠାକୁମା' ଆସି ଆମ ଘରେ ଅର୍ଥାତ୍ ସେଇ ରୋଗ ଶଯ୍ୟାରେ ପଡ଼ିଥିବାର ଜାଗାରେ ପଡ଼ିଲେ । ଏଇ ନାଳଟି ଏବେ ଆମ ଘରପାଖରେ ବହିଯାଉଛି ।

ଏବେ ବି ଆମ ଘରର ଲୋକେମାନେ ଠାକୁମା'ଙ୍କୁ ପଚାରିବାରୁ ଠାକୁମା' ଟିକେ ସୁସ୍ଥହେବା ପରେ କହିଲେ ଠିକ୍ ମନେ ପଡୁନାହିଁ ସେ ମୋତେ ଆଉ ୧୧ଦିନ ବା ୧୧ବର୍ଷ ବଞ୍ଚିବା କଥା କହିଥିଲେ । ସତକୁ ସତ ଠାକୁମା' କାଳେ ଏଇ ଘଟଣା ପରେ ଅନେକଦିନ ଧରି ବଞ୍ଚି ରହିଥିଲେ । ଏହି ଘଟଣାକୁ ମୋର ବେଳେବେଳେ

ଏକ ଯମପୁରୀ ଥିବା କଥା ମନକୁ ଆସେ । ହେଲେ ଏବେ ଆଜ୍ଞା ବିଜ୍ଞାନ ଯୁଗରେ ଏସବୁ ପ୍ରହସନ ପରି ମନେହେବ ।

ମୋ ଜୀବନରେ ଘଟିଥିବା ଆଉ ଗୋଟିଏ ଘଟଣା ସମ୍ପର୍କରେ କହୁଛି, ଶୁଣନ୍ତୁ । ଆମ୍ବ ତୋଳିବା ସମୟ । ବଢ଼େଇସାହିରେ ଆମର ଗୋଟେ ବଡ଼ ଗଛ ଥାଏ । ସେଇଥିରୁ ଆମ୍ବ ତୋଳିଆଣି ବସ୍ତାରେ ରଖିଥାଆନ୍ତି । ମୁଁ ଖୁସିରେ ସେହି ଆମ୍ବ ପଟ ଉପରେ ବସି ପଡ଼ିଲି । ଦିନେ ଦୁଇଦିନ ଭିତରେ ମୋର ପିଚାସାରା ଆମ୍ବନସି ଲାଗି ଘା' ହୋଇଗଲା । ଏଇ ଘାଆ କ୍ରମେ ଦେହସାରା ଏବଂ ମୁହଁସାରା ଭର୍ତ୍ତି ହୋଇଗଲା । ସେତେବେଳେ ଡାକ୍ତରୀ ବିଦ୍ୟା ଏତେ ଉନ୍ନତ ହୋଇ ନଥିଲା । ଆଣ୍ଟିବାୟୋଟିକ୍ ଉଦ୍‌ଭାବିତ ହୋଇଥିଲା କି ନାହିଁ ସନ୍ଦେହ । ଡାକ୍ତରଖାନାରୁ ବୋରିକ୍ ପାଉଡ଼ର କର୍ପୂର ଚୂନା ମିଶାଇ ଡଷ୍ଟିଂ ପାଉଡ଼ର ଥିଲା ଘାଆ ପାଇଁ ଏକମାତ୍ର ଔଷଧ । ଛେଳିକ୍ଷୀର୍‌ରେ ଶିମିଳିଫୁଲକୁ ବାଟି ଲଗାଇଥିଲେ ମଧ୍ୟ ବିଶେଷ ଉପକାର ହେଲା ନାହିଁ । ମୁଁ ଯନ୍ତ୍ରଣାରେ ଛଟପଟ ହେଉଥାଏ । ମୋ ମାଆ କାନ୍ଦି କାନ୍ଦି ଅଧିର ହେଉଥାଆନ୍ତି ।

ଦିନେ ସଞ୍ଜବେଳେ ମାଆଙ୍କୁ ଛାଇନିଦ ମାଡ଼ି ଆସୁଛି ସେ ସ୍ୱପ୍ନ ଦେଖିଲେ ଜଣେ ଜଟାଜୁଟଧାରୀ ସନ୍ନ୍ୟାସୀ ଆସି ମୋତେ କୋଳକୁ ଉଠାଇନେଲେ । ପାଉଁଶ ଟିକେ ଆଣି ମୋ ଘାଆ ଉପରେ ଛିଞ୍ଚିଦେଲେ । ତା'ପରେ ମୋତେ ଶୁଆଇଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ଆଉ ଯିବା ପୂର୍ବରୁ ମାଆଙ୍କୁ କହିଲେ ବ୍ୟସ୍ତ ହୁଅନା, ତୋ ପୁଅ ଭଲ ହୋଇଯିବ ।

ମାଆ କହନ୍ତି ସତକୁ ସତ ତହିଁ ଆରଦିନଠାରୁ ମୋ ଘାଆ କ୍ରମଶଃ ଭଲ ହୋଇଆସିଲା । ସମ୍ଭବତଃ ମାଆଙ୍କ ଗଭୀର ଈଶ୍ୱର ବିଶ୍ୱାସ ଯୋଗୁଁ ସେ ଏଭଳି ଏକ ଘଟଣା ସ୍ୱପ୍ନରେ ଦେଖିଥିଲେ । ତେବେ ଏହି ଘଟଣାଟି ମୋ ମନରେ ଈଶ୍ୱର ବିଶ୍ୱାସ ଆଣିଦେଇଛି । ଏଣୁ ବିଜ୍ଞାନ ଯୁଗରେ ଆଜି ମଣିଷ ଗ୍ରହଗ୍ରହାନ୍ତରକୁ ଯାତ୍ରା କରିଥିଲେ ବି ମୋ ମନରେ ଗୋଟେ ବିଶ୍ୱାସ ଆସେ ଏସବୁ ପରମପିତାଙ୍କ ଆଦେଶରେ ଘଟୁଛି ।

ଯମରାଜ ଚିତ୍ରଗୁପ୍ତଙ୍କୁ ଚାହିଁ କହିଲେ- ମନ୍ତ୍ରୀ ଇୟେ ଘଟଣାସବୁ କପୋଳକଳ୍ପିତ ନୁହେଁ ତ ? ଚିତ୍ରଗୁପ୍ତ କହିଲେ– ନାଇ ମହାରାଜ ! ଇୟେ ଯାହା ଅଙ୍ଗେନିଭା କଥା କହୁଛନ୍ତି ସବୁ ସତ୍ୟ ଉପରେ ଆଧାରିତ । ଯମରାଜ ଏହାପରେ ଖୁସିରେ ମୋତେ ବିଦାୟ ଦେଲେ । ମୁଁ ତାଙ୍କ ଅତିଥିଶାଳାକୁ ଚାଲିଲି ।



# ଯମପୁରୀର ଜମାନବନ୍ଦି -୭

ମୋର ଟିକେ ଆଜି ଆସିବା ବିଳମ୍ବ ହୋଇଗଲା ଚିତ୍ରଗୁପ୍ତ । ତୁମେ ବୋଧେ ଠିକ୍ ସମୟରେ ଆସିଯାଇଛ । ଚିତ୍ରଗୁପ୍ତ ହସି ହସି ନିଜର ସମ୍ମତି ଜଣାଇଲେ । ତାପରେ କହିଲେ ମୁଁ ଆଜି ଅତିଥିଶାଳା ବାଟେ ଆସିଲି ଏଣୁ ଆଗନ୍ତୁକଙ୍କୁ ମଧ୍ୟ ସାଙ୍ଗରେ ନେଇ ଆସିଛି ।

"ହଁ ଆଜ୍ଞା ମୁଁ ମଧ୍ୟ ମୋର ନିତ୍ୟକର୍ମ ସାରି ଚିତ୍ରଗୁପ୍ତଙ୍କ ଅପେକ୍ଷାରେ ଥିଲି । ସାଙ୍ଗ ହୋଇ ଚାଲିଆସିଲୁ ।

ହଁ- ତୁମେ କାଲି କଥା ଯେଉଁଠୁ ଶେଷ କରିଥିଲ ମନେ ଅଛି ତ ।

ହଁ ଆଜ୍ଞା, ପିଲାବେଳର ସେହି ଆମ୍ଭନସି ଘା' ଭଲ ହେବା କଥାଠୁ ଶେଷ କରିଥିଲି । ଆଜି ମୋର ମାଇନର ସ୍କୁଲରେ ପଢ଼ିବା ସମୟର କଥା କହୁଛି । ସେତେବେଳେ ମାଇନର ସ୍କୁଲକୁ ସଂକ୍ଷେପରେ ମି.ଇ. ବା ମିଡିଲ ଇଂଲିଶ ଅଥବା ମଧ୍ୟ ଇଂରାଜୀ ବିଦ୍ୟାଳୟ କୁହାଯାଉଥିଲା । ଏବେ କିନ୍ତୁ ମି.ଇ. ସ୍କୁଲ ନାହିଁ । ଏହାକୁ ୟୁ.ପି. ସ୍କୁଲ କୁହାଯାଉଛି । ତେବେ ୟୁ.ଜି. ଏମ୍.ଇ. ସ୍କୁଲ ବୋଲି ଗୋଟାଏ ପ୍ରକାର ମାଇନର ସ୍କୁଲ ଅଛି । ୟୁ.ପି. ସ୍କୁଲରେ କେବଳ ଷଷ୍ଠ ସପ୍ତମ ଶ୍ରେଣୀ ଥିବାବେଳେ ୟୁ.ଜି., ଏମ.ଇ. ସ୍କୁଲ ପ୍ରଥମରୁ ୭ମ ଯାଏଁ ରହିଥାଏ ।

ତେବେ ମୁଁ ପଢୁଥିଲି କୋରେଇ ମାଇନର ସ୍କୁଲରେ । କୋରେଇ ମାଇନର ସ୍କୁଲରେ ଚାରିଗୋଟି ଶ୍ରେଣୀ । ୪ର୍ଥ ୫ମ ଷଷ୍ଠ ଓ ସପ୍ତମ ଶ୍ରେଣୀ । ପ୍ରଧାନଶିକ୍ଷକ ଥିଲେ ସ୍ୱର୍ଗତ ନାରାୟଣ ତ୍ରିପାଠୀ । ସେ ଜଣେ ବିଜ୍ଞ ବ୍ୟକ୍ତି । ତାଙ୍କ ରଚିତ ବୈଦେହୀ ବିଳାସ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବିରଚିତ ବୈଦହୀଶ ବିଳାସଠାରୁ କୌଣସି ଗୁଣରେ ନିକୃଷ୍ଟ ନୁହେଁ । ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ନାୟକ ରାମଚନ୍ଦ୍ରଙ୍କ ଉପରେ ଗୁରୁତ୍ୱ ଦେଇଥିବା ବେଳେ କବି ନାରାୟଣ ତ୍ରିପାଠୀ କାବ୍ୟରେ ନାୟିକା ସୀତାଙ୍କ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ନାରାୟଣ ତ୍ରିପାଠୀ ମଧ୍ୟ ଭଞ୍ଜଙ୍କ ପଦାଙ୍କ ଅନୁସରଣ କରି ପ୍ରତ୍ୟେକ ପଦର ଆଦ୍ୟ ଅକ୍ଷର 'ବ'ରୁ ଆରମ୍ଭ କରିଥିଲେ । ଏପରି ଗୋଟେ ଗୋଟେ ଛାନ୍ଦ ତାଙ୍କର ଆଦ୍ୟ ଅକ୍ଷର 'ବ'ରେ ଆରମ୍ଭ ହୋଇ ପ୍ରାନ୍ତ ଅକ୍ଷର 'ବ'ରେ ଶେଷ । ବୈଦେହୀ ବିଳାସ କାବ୍ୟଟି ଅତି ଚମତ୍କାର । କିନ୍ତୁ ଏହାର ପ୍ରଚାର ପ୍ରସାର ଉପଯୁକ୍ତ ଭାବେ ହୋଇ ନପାରିବାରୁ ଏହା ସମାଲୋଚକଙ୍କ ଦୃଷ୍ଟିକୁ ଆସିନାହିଁ ।

ବୈଦେହୀ ବିଳାସ ସାଙ୍ଗକୁ 'ସତୀ', 'ମଧୁଚକ୍ର' ଆଦି ସେ ଅନେକ ପୁସ୍ତକର ରଚୟିତା ।

ପ୍ରଧାନଶିକ୍ଷକ ନାରାୟଣ ତ୍ରିପାଠୀଙ୍କ ପରେ ସ୍ୱତଃ ମନକୁ ଆସେ ପଣ୍ଡିତ ମହେଶ୍ୱର ପାଣିଗ୍ରାହୀଙ୍କ କଥା । ସେ ପଣ୍ଡିତ ସାର ନାମରେ ବିଦିତ । ସେ ଅଙ୍କ, ଜ୍ୟାମିତି, ସାହିତ୍ୟ ପଢ଼ାଇବାରେ ଧୁରନ୍ଧର । ଶିକ୍ଷାଗତ ଯୋଗ୍ୟତା ତାଙ୍କର ଏମ୍.ଭି. । ଅର୍ଥାତ୍ ଭର୍ଣ୍ଣକୁଲାର ମାଇନର । ସେ ଯେଉଁ ପରିଭାବରେ ଶିକ୍ଷାଦାନ କରନ୍ତି ଆମକୁ ଖୁବ୍ ମନୋଯୋଗୀ କରାଏ । କିନ୍ତୁ ଛାତ୍ର ଭୁଲ କଲେ ସେ ରୁଦ୍ରରୂପ ଧାରଣ କରନ୍ତି । ସୌଭାଗ୍ୟକୁ ଆମ ଶ୍ରେଣୀରେ କୌଣସି ଛାତ୍ରୀ ନଥିଲେ । ଏଣୁ ଆମେ ଛାତ୍ରମାନେ ତାଙ୍କର ବେତ୍ରାଘାତରେ ଅଭ୍ୟସ୍ତ ହୋଇଗଲୁ ।

ମହେଶ୍ୱର ପାଣିଗ୍ରାହୀଙ୍କ ବିଷୟରେ ପରେ ମୁଁ ମୋ ଜୀବନର ଏକ ବିଶେଷ ଘଟଣା ଉଲ୍ଲେଖ କରିବି । ଏବେ ଅନ୍ୟ ଶିକ୍ଷକମାନଙ୍କ ବିଷୟରେ ଧାରଣା ଦେଉଛି । ମହେଶ୍ୱର ପାଣିଗ୍ରାହୀଙ୍କ ପରେ କୃଷ୍ଣ ଚନ୍ଦ୍ର ସାହୁଙ୍କ କଥା ମନକୁ ଆସୁଛି । ପରବର୍ତ୍ତୀ ସମୟରେ ସେ ପ୍ରଧାନଶିକ୍ଷକ ହେଲେ । ଏତଦବ୍ୟତୀତ ଶ୍ରୀ ହରିହର ମିଶ୍ର ନାମକ ଜଣେ ଶିକ୍ଷକ ଥିଲେ । ଛାତ୍ରସଂଖ୍ୟା ବୃଦ୍ଧି ହେବାରୁ ଅନ୍ୟଜଣେ ଶିକ୍ଷକ ଶ୍ରୀ ଭକ୍ତ ଚରଣ ମହାନ୍ତି ମଧ ଆମ ସମୟରେ କାର୍ଯ୍ୟରେ ଯୋଗ ଦେଇଥିଲେ ।

ଭକ୍ତ ଚରଣ ମହାନ୍ତି ନୂଆକରି ଶିକ୍ଷକ ଭାବେ ଯୋଗ ଦେଇଥିବାରୁ ତାଙ୍କୁ ଏକ ଆଦର୍ଶ ଶିକ୍ଷାଦାନ ପ୍ରଣାଳୀ ଶିଖାଇବା ଉଦ୍ଦେଶ୍ୟରେ ପ୍ରଧାନଶିକ୍ଷକ ଆଗ ୪ର୍ଥ ଶ୍ରେଣୀରେ ସାହିତ୍ୟ ବହି ପାଠପୁସ୍ତକର ରାମ ଓ କୁଳୁକୁଳା ପୋକ ଉପରେ ଶିକ୍ଷା ଦେଇଥିଲେ । ସେଇ ଗୋଟାଏ ବିଷୟ ଉପରେ ମୋ ଭାଗ୍ୟରେ ତାଙ୍କର ଶିକ୍ଷାଦାନ କରିବାର ପ୍ରଣାଳୀ ଦେଖିବାର ସୁଯୋଗ ଜୁଟିଥିଲା । କାରଣ ଆଉ ସେ ଆମ ଶ୍ରେଣୀରେ ଶିକ୍ଷାଦାନ କରିବାକୁ ଆସି ନଥିଲେ । ପରେ ପରେ ଅଳ୍ପଦିନ ଭିତରେ ସେ ଇହଧାମ ତ୍ୟାଗ କଲେ । ତାଙ୍କର ମୃତ୍ୟୁ ପାଇଁ ମୁଁ ନିଜକୁ ଦୋଷୀ ମନେକରେ । କାରଣ ମୁଁ ୪ର୍ଥ ଶ୍ରେଣୀରେ ପ୍ରଥମେ ନାମ ଲେଖାଇଥିଲି । ୧୯୪୯-୫୦ ସାଲରେ । ସ୍କୁଲରେ ସେ ବର୍ଷ ୧ମ ଛାତ୍ର ଭାବେ ମୁଁ ଯୋଗ ଦେଇଥିଲି ଅଥଚ ପ୍ରଧାନଶିକ୍ଷକ ମୃତ୍ୟୁ ହେଲା । ସବୁଠୁଁ ଆଶ୍ଚର୍ଯ୍ୟର କଥା ହେଲା ପ୍ରଧାନଶିକ୍ଷକଙ୍କ ଘର ପଟିଆ ଅଞ୍ଚଳରେ ହୋଇଥିବା ବେଳେ ମୃତ୍ୟୁ ପରେ ତାଙ୍କ ଇଚ୍ଛା ଅନୁସାରେ କୋରେଇ ମାଇନର ସ୍କୁଲ ହତା ଭିତରେ ତାଙ୍କର ଶବଦାହ କରାଗଲା । ମୋର ମନେପଡୁଛି ତାଙ୍କ ଶବକୁ ସଂକୀର୍ତ୍ତନ ମଣ୍ଡଳୀ କୀର୍ତ୍ତନ କରି ଏବଂ ରାମ ନାମ ସତ୍ୟ ହୈ ଉଚ୍ଚାରଣ କରି ସାରା କୋରେଇ ପରିକ୍ରମା କରାଯାଇଥିଲା । ଏଇଥିରୁ ଅନୁମାନ କରାଯାଇ ପାରେ ଯେ,

ସେ ଏ ଅଞ୍ଚଳରେ କେତେ ଲୋକପ୍ରିୟ ପ୍ରଧାନଶିକ୍ଷକ ଥିଲେ ।

ପରବର୍ତ୍ତୀ ସମୟରେ ଆମେ କୋରେଇ ମଣ୍ଡଳ ସାହିତ୍ୟ ସଂସଦ ପକ୍ଷରୁ ତାଙ୍କର ଏକ ଆବକ୍ଷ ପ୍ରତିମୂର୍ତ୍ତି ସ୍ଥାପନ କରିଛୁ । ଅବଶ୍ୟ ତାଙ୍କର ଏକ ସ୍ମାରକୀ ସ୍ତମ୍ଭ ମଧ୍ୟ ଶବଦାହ ସ୍ଥାନରେ ନିର୍ମିତ ହୋଇଛି । ଧନ୍ୟ ସେହି ପ୍ରଧାନଶିକ୍ଷକ । ଯିଏ ନିଜର ଜନ୍ମମାଟିକୁ ନଯାଇ କର୍ମସ୍ଥଳୀରେ ମୃତ୍ୟୁ ପରେ ମଧ୍ୟ ଆଶ୍ରୟ ନେବାକୁ ଶ୍ରେୟସ୍କର ମନେକଲେ ଆଜି ବି ତାଙ୍କ କଥା ମନେପଡ଼ିଲେ ମନଟି ହାଇ ପାଇଁ ହୁଏ ।

ନାରାୟଣ ତ୍ରିପାଠୀଙ୍କ ମୃତ୍ୟୁ ପରେ ବିଦ୍ୟାଳୟର ଦ୍ୱିତୀୟ ଶିକ୍ଷକ ଭାବେ କାମ କରୁଥିବା ଶ୍ରୀଯୁକ୍ତ କୃଷ୍ଣ ଚନ୍ଦ୍ର ସାହୁ ପ୍ରଧାନଶିକ୍ଷକ ଭାବେ ଦାୟିତ୍ୱ ଗ୍ରହଣ କଲେ । ଶ୍ରୀଯୁକ୍ତ ଶ୍ୟାମ ସୁନ୍ଦର ପାତ୍ର ମଧ୍ୟ ଅନ୍ୟ ଏକ ଶିକ୍ଷକ ଭାବେ ନୂଆକରି ସେ ବିଦ୍ୟାଳୟରେ ଯୋଗ ଦେଲେ । ଶ୍ୟାମସୁନ୍ଦର ପାତ୍ର ବାଲେଶ୍ୱର ଜିଲ୍ଲାର ଲୋକ ବୋଲି ଜାଣିଥିଲି । ସେ ଜଣେ ଏପରି ଶିକ୍ଷକ ଥିଲେ ଯିଏକି ପାଠ ଆଉ ଆଠୋ୍ୟତ୍ତର ଅନ୍ୟ କଥାରେ କରିକୁଲାର ଆକ୍ଟିଭିଟି ଉପରେ ଜୋର ଦେଇଥିଲେ । ତାଙ୍କ ସମୟରେ ଆମ ବିଦ୍ୟାଳୟରେ ପ୍ରତି ଶନିବାର ସଙ୍ଗୀତ ପ୍ରତିଯୋଗିତା, ତର୍କ ପ୍ରତିଯୋଗିତା, ଢଗ ଢମାଳି ପ୍ରତିଯୋଗିତା, ଚିତ୍ରାଙ୍କନ ଏକକ ଅଭିନୟ ପ୍ରତିଯୋଗିତା କରାଯାଉଥିଲା । ଆଜି ମୁଁ ଯାହା କିଛି ଲେଖାଲେଖି କରୁଛି ସେ ସବୁର ମୂଳଦୁଆ ପକାଇଛନ୍ତି ଏଇ ଶ୍ୟାମସୁନ୍ଦର ସାର୍ । ତେବେ ପ୍ରତ୍ୟେକ ମଣିଷ ପାଖରେ ସବୁ ଗୁଣ ତ ଭଲ ନଥାଏ । ଏଣୁ ବର୍ଷେ ଦି'ବର୍ଷ ପରେ ସେ ଏଇ ବିଦ୍ୟାଳୟରୁ ଯିବାକୁ ବାଧ ହୋଇଥିଲେ । କାରଣ ଛାତ୍ରମାନଙ୍କୁ ତାଙ୍କର କେତେକ କର୍ମ ଭଲ ଲାଗିଲାନି । ସେଇ ଛାତ୍ର ମଧ୍ୟରୁ ମୁଁ ଜଣେ । ମୁଁ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୁଏ । ଏଣୁ ମୋ କଥା ଉପରେ ବିଦ୍ୟାଳୟ ସଂପାଦକ ମଧ୍ୟ ଗୁରୁତ୍ୱ ଦିଅନ୍ତି ।

ଆଗାମୀ କାଲି ମୁଁ ଏଇ ବିଦ୍ୟାଳୟ ସମ୍ବନ୍ଧରେ ଆଉ କିଛି ଅଙ୍ଗେ ଲିଭା କଥା ଆପଣଙ୍କୁ କହିବି ଯମରାଜ ! ଆଜି ଏତିକି ଥାଉ ।

ହଁ– ତୁମେ ଯାଅ । ତୁମେ ଯେ ସବୁ ଠିକ୍ ଠିକ୍ କହିଚାଲିଛ ଏହା ମୋର ହୃଦ୍‌ବୋଧ ହେଉଛି ।

ଏହାପରେ ମୁଁ ଯମରାଜଙ୍କୁ ପ୍ରଣାମକରି ଖୁସିରେ ବିଦାୟ ନେଇ ଗେଷ୍ଟ ହାଇସ୍‌କୁ ଚାଲିଲି ।



# ଯମପୁରୀର ଜମାନବନ୍ଦି -୮

ମୋତେ ଚାହିଁ ହସିହସି ଚିତ୍ରଗୁପ୍ତ କହିଲେ କ'ଣ ଆଗନ୍ତୁକ ଆଜି ମୋ ଆଗରୁ ତୁମେ ଆସି ଦରବାରରେ ହାଜର !

ଆଜ୍ଞା ଆପଣ ଜଣେ ମନ୍ତ୍ରୀ ହୋଇ ମଧ ଏତେ ସଅଳ ରାଜ ଦରବାରରେ ପହଞ୍ଚି ପାରୁଛନ୍ତି । ଏକଥା ଦେଖି ଆମ ରାଜ୍ୟରେ ମନ୍ତ୍ରୀମାନଙ୍କ କଥା ଭାବୁଛି । ଯେଉଁଠି ସଭା ସମିତିକୁ ଆମ ମନ୍ତ୍ରୀମାନଙ୍କ ଯିବାର ଥାଏ ସେମାନେ ନିର୍ଦ୍ଧାରିତ ସମୟ ଠୁଁ ବହୁ ବିଳମ୍ବରେ ପହଞ୍ଚିଥାନ୍ତି । ଲୋକମାନେ ଅପେକ୍ଷା କରି କରି ବିରକ୍ତ ହୋଇଥାନ୍ତି । ଏପରିକି ଏମ୍.ଏଲ.ଏ.ମାନଙ୍କ ପ୍ରଶ୍ନର ଉତ୍ତର ଦେବା ପାଇଁ ଆସେମ୍ବ୍ଲିରେ ମନ୍ତ୍ରୀମାନେ ଉପସ୍ଥିତ ନଥାନ୍ତି । ଏଥିପାଇଁ ବାଚସ୍ପତିଙ୍କୁ ତାଗିଦ କରିବାକୁ ପଡ଼େ । ଆମ ମନ୍ତ୍ରୀମାନେ ସ୍ୱର୍ଗର ଇନ୍ଦ୍ରଠୁ ମଧ ବଡ଼ ବୋଲି ନିଜକୁ ଭାବନ୍ତି । କିନ୍ତୁ ଆପଣଙ୍କ ଏଠି ମୁଁ ବ୍ୟତିକ୍ରମ ଦେଖୁଛି । ସ୍ୱୟଂ ଯମରାଜ ଯେପରି ପଙ୍କଚୁଆଲ ଆପଣ ମଧ ଠିକ୍ ସେହିପରି ପଙ୍କଚୁଆଲ । ମୁଁ ଜଣେ ସାଧାରଣ ମର୍ତ୍ତ୍ୟବାସୀ ଆପଣଙ୍କଠୁଁ ଏତିକି ଶିକ୍ଷା କଲେ କ୍ଷତି କ'ଣ !

ମୋ କଥା ଶୁଣି ଚିତ୍ରଗୁପ୍ତ ହସି କହିଲେ– ନାଇଁ ନାଇଁ ଆଗନ୍ତୁକ ! ମୁଁ ଜାଣେ ତୁମେ ଖୁବ୍ ସମୟାନୁବର୍ତ୍ତି । ତୁମ ଚାକିରି ଜୀବନରେ ଏଇ ଅଭ୍ୟାସ ରଖି ଆସିଛ । ଏଥିପାଇଁ ତୁମେ ତୁମର ଉପରିସ୍ଥ କର୍ମଚାରୀ ତଥା ସହକର୍ମୀଙ୍କ ପାଖରେ ଆଦରଣୀୟ ।

ଇତିମଧ୍ୟରେ ଯମରାଜ ଉପସ୍ଥିତ ହୋଇ ସାରିଥିବାରୁ ମୋତେ ମୋର ବକ୍ତବ୍ୟ ଆରମ୍ଭ କରିବା ପାଇଁ ନିର୍ଦ୍ଦେଶ ଦେଲେ ମନ୍ତ୍ରୀ ଚିତ୍ରଗୁପ୍ତ ।

ମୁଁ ମୋର ବକ୍ତବ୍ୟ ଆରମ୍ଭ କଲି ।

"ହଁ ମହାଶୟ ଗତଥର ମୋର ମାଇନର ସ୍କୁଲର ଶିକ୍ଷକମାନଙ୍କ ସମ୍ବନ୍ଧରେ ସୂଚନା ଦେଇଥିଲି । ଆଜି ମୁଁ ଏଇ ସ୍କୁଲରେ ଥିବାବେଳେ କେତୋଟି ଅଙ୍ଗେଲିଭା ଘଟଣା ଉଲ୍ଲେଖ କରୁଛି ।

ମାଇନର ସ୍କୁଲରେ ପଢ଼ିବା ବେଳେ ମୁଁ ପ୍ରତି ଶ୍ରେଣୀରେ ପ୍ରଥମ ହୋଇଥିଲି । ଦ୍ୱିତୀୟ ସ୍ଥାନ ରଖୁଥିଲା ଗଜେନ୍ଦ୍ର ମିଶ୍ର । ସେ ଏବେ ଇଞ୍ଜିନିୟରିଂ ସେବାରୁ ନିବୃତ୍ତ ହୋଇ ଭୁବନେଶ୍ୱରରେ ଅବସ୍ଥାପିତ, ମୋର ଅନ୍ତରଙ୍ଗ ବନ୍ଧୁ ତଥା ସହପାଠୀ ହଜାରି

ଅବଦୁଲ୍ଲ ବାରି ମଧ୍ୟ ସୁପରିନଟେଣ୍ଡେଣ୍ଟ ଇଞ୍ଜିନିୟର ହୋଇ ଅବସର ନେଇ ଭୁବନେଶ୍ୱରରେ ଅଛି । ଏହିପରି କରିବାକୁ ବାବୁକୁ ମୁଁ କାଲା ବୋଲି ଡାକେ । ଆଜିଯାଏ ଆମେ ଦୁହେଁ ସେଇ ପିଲାବେଳର ସାଙ୍ଗ ହେବାର ମୁହୂର୍ତ୍ତକୁ ବାନ୍ଧି ରଖିଛୁ । ଆମ ଭିତରେ ଆପାତତଃ ସେହି ଭାବନା ଏବେବି ରହିଛି । ଦେଖନ୍ତୁତ ଏବେ ଅବସର ପରେ ମୁଁ ମଧ୍ୟ ମଝିରେ ମଝିରେ ଭୁବନେଶ୍ୱର ଯାଇ ମୋ ପୁଅ ବୋହୂଙ୍କ ଘରେ ରହି ଏବଂ କାଲା (ବାଲ୍ୟବନ୍ଧୁ) ସହ ଗପସପ କରେ ।

ଏଇ ବିଦ୍ୟାଳୟରେ ପଢୁଥିବା ବେଳେ ଅନ୍ୟଜଣେ ସହପାଠୀ ବ୍ରଜବିହାରୀ ରାଉତରାୟଙ୍କ କଥା ମନକୁ ଆସେ । ତାଙ୍କ ଦେହରେ ବହୁତ କାଛୁ କୁଣ୍ଡିଆ ହେଉଥାଏ । ସେ କିନ୍ତୁ ଶ୍ରେଣୀରେ ଭାରୀ ମନଯୋଗୀ । ହଷ୍ଟେଲରେ ରହନ୍ତି । ସେ ଶ୍ରେଣୀରେ ତୃତୀୟ ସ୍ଥାନ ରଖନ୍ତି । ପରବର୍ତ୍ତୀ କାଳରେ ସେ ତହସିଲଦାର ହୋଇ ସୁକିନ୍ଦା ତହସିଲକୁ ଆସିଥିଲେ । ମୋ ସହ ତାଙ୍କ ବ୍ୟବହାର ଠିକ୍ ସହପାଠୀ ପରିଥିଲା । ମୁଁ ଭଲ ପଢୁଥିଲି ବୋଲି ତାଙ୍କର ମୋ ପ୍ରତି ସମ୍ମାନବୋଧ ଥିଲା ।

ଏହି ବିଦ୍ୟାଳୟରେ ଆଉ ଦୁଇଜଣ ଛାତ୍ରଙ୍କ କଥା ମନକୁ ଆସେ । ଜଣେ ନିତ୍ୟାନନ୍ଦ ବଳ ଆଉ ଜଣେ ପୂର୍ଣ୍ଣଚନ୍ଦ୍ର ମହାପାତ୍ର । ଏ ଦୁହେଁ ଆମଠୁ ସିନିୟର୍ । ଏ ଦୁହେଁ ପ୍ରାୟ ନେତା ଶ୍ରେଣୀୟ । ଦୁହିଁଙ୍କ ଭିତରେ ସବୁବେଳେ ନେତୃତ୍ୱ ନେଇ କନ୍ଦଳ ଲାଗେ । ପୂର୍ଣ୍ଣ ଚନ୍ଦ୍ର ଖୁବ୍ ବଳୁଆ କିନ୍ତୁ ନିତ୍ୟାନନ୍ଦ ଖୁବ୍ ବୁଦ୍ଧିଆ । ପରବର୍ତ୍ତି କାଳରେ ନିତ୍ୟାନନ୍ଦ ଫେରୋକ୍ରୋମ କାରଖାନା ଶ୍ରମିକ ୟୁନିୟନ ନେତା ହେବାବେଳେ ପୂର୍ଣ୍ଣ ଚନ୍ଦ୍ର ରାଜନୀତିରେ ନିଜର କିଛିଟା ପ୍ରଭାବ ପକାଇ ସାରିଛନ୍ତି ।

ହଁ– ଦିନକର କଥା– ହଠାତ୍ ମୋ ପାଟିରୁ ଅଣ୍ଡାର ଇଂରାଜୀ ପ୍ରତିଶବ୍ଦ ଏଗ୍‌ର ବନାନ୍‌କୁ ମୁଁ ଭୁଲରେ Egg (ବଦଳରେ) (Eag) କହିଥିବାରୁ ଶ୍ୟାମସୁନ୍ଦର ସାର୍‌ଙ୍କ ଠୁ ଭୀଷଣ ମାଡ଼ ଖାଇଥିଲି । ବୋଧହୁଏ ଏହାପରେ ଆଉ ମୋର ଭୁଲ ହୋଇ ନଥିଲା କି ମାଡ଼ ଖାଇନଥିଲି ।

ଠିକ୍ ସେହିପରି ୭ମ ଶ୍ରେଣୀରେ ପଢୁଥିବାବେଳେ ଥରେ ମହେଶ୍ୱର ପଣ୍ଡିତ ସାର୍ ଜ୍ୟାମିତି ପଢ଼ାଉ ପଢ଼ାଉ ମୋତେ ପ୍ରଶ୍ନ ପଚାରି ଏକ ଭୁଲ ଉତ୍ତର ପାଇ ବେତରେ ମାରିଲେ । ମୁଁ ବେତଟାକୁ ଧରିନେଲି । ଏଥିରେ ସେ ରୁଦ୍ରରୂପ ଧରି ମୋତେ ପାହାର ପରେ ପାହାର ବସାଇବାକୁ ଲାଗିଲେ । ଏଇ ମାଡ଼ ଭିତରେ ତାଙ୍କର ଅନ୍ୟ ଜଟିଳ ପ୍ରଶ୍ନ ଗୁଡ଼ିକର ଉତ୍ତର ମୁଁ ସହଜରେ ଠିକ୍‌ଠିକ୍ ଦେଉଥିବା ଦେଖି ସେ ମାଡ଼ ଦେବାରୁ ନିବୃତ୍ତ ହେଲେ ଏବଂ କହିଲେ ଦେଖ ନନ୍ଦ, ଆଜିଠୁଁ ଆଉ ମୋ ବେତ ଯେପରି ତୋ ପିଠି ନଛୁଏଁ । ତାହାହିଁ ହେଲା– ମୁଁ ଆଉ ପ୍ରାୟ ଭୁଲ କରିନାହିଁ କି ପଣ୍ଡିତ ସାର୍‌ଙ୍କ ଠୁ ମାଡ଼ ଖାଇ ନାହିଁ ।

ଆଉ ଦିନକର କଥା ଥରେ ବିଦ୍ୟାଳୟକୁ ଡେପୁଟି ଇନିସପେକ୍ଟର ପରିଦର୍ଶନରେ ଆସିଥାନ୍ତି । ମୋର ସପ୍ତମ ଶ୍ରେଣୀ । ସେ ଇଂରାଜୀ ପିରିୟଡ଼ରେ ଆସି ଆମ ଶ୍ରେଣୀରେ ପହଞ୍ଚିଲେ । ପ୍ରଧାନଶିକ୍ଷକ କୃଷ୍ଣ ବାବୁ ଇଂରାଜୀ ପଢ଼ାଉଥାନ୍ତି । ଡେପୁଟି ଇନିସପେକ୍ଟର ଗୌତମ ବୁଦ୍ଧ ଆଉ ଜଣେ ସ୍ତ୍ରୀ ଲୋକ ତାର ସନ୍ତାନ ମରି ଯାଇଥିବାରୁ ବୁଦ୍ଧଙ୍କ ପାଖକୁ ଆସି ପୁଅର ଜୀବନ ଫେରିପାଇବା ଘଟଣାକୁ ନେଇ ପ୍ରଶ୍ନ ମୋତେ ଇଂରାଜୀରେ ପଚାରିଲେ । ମୁଁ ତାର ଉତ୍ତର ଏତେ ପ୍ରାଞ୍ଜଳ ଭାବରେ ଦେଲି, ଯେ ସେ ଖୁବ୍ ଖୁସି ହୋଇଗଲେ । ପରେ ପରେ ସେ ଅନେକ ଗୁଡ଼ିଏ ଇଂରେଜୀ ବିଷୟଗତ ପ୍ରଶ୍ନପଚାରି ମୋଠୁଁ ଖୁବ୍ ସନ୍ତୋଷଜନକ ଉତ୍ତର ପାଇ ମୋଠୁ ଶ୍ରଦ୍ଧାରେ ସ୍କୁଲ ସମ୍ବନ୍ଧରେ ଅନେକ ଭଲମନ୍ଦକଥା ବୁଝିଲେ । ଆଜି ବି ସେକଥା ମନେପଡ଼ିଲେ ମୋ ଛାତି ଆନନ୍ଦରେ ଆଉ ଗର୍ବରେ ଫୁଲିଉଠେ । ଭଲପଢୁ ଥିବାରୁ ଛାତ୍ର ମହଲରେ, ଶିକ୍ଷକ ମହଲରେ ଏପରିକି ପରିଦର୍ଶକମାନଙ୍କ ପାଖରେ ମୁଁ ଜଣେ ମେଧାବୀ ଛାତ୍ର ଭାବେ ଆଦରଣୀୟ ହୋଇଥାଏ ।

ଆଗରୁ କହିଛି ଶ୍ୟାମସୁନ୍ଦର ସାର୍ ପ୍ରତି ଶନିବାର ତର୍କ ପ୍ରତିଯୋଗିତା, ସଙ୍ଗୀତ ପ୍ରତିଯୋଗିତା, ଢଗ ଢମାଳି ପ୍ରତିଯୋଗିତା କରାଉଥିଲେ । ମୁଁ ଏଥିରେ ସକ୍ରିୟ ଅଂଶଗ୍ରହଣ କରୁଥିଲି । ଏହା ୧୯୫୨-୫୩ ମସିହା କଥା । ସେ ସମୟରେ ଢଗ ଢମାଳି ସଂଗ୍ରହ କରି ଯେଉଁ ଖାତାରେ ଟିପିଥିଲି ସେ ଖାତାଟି ଏଯାଏଁ ମୋ ପାଖରେ ଅଛି ।

ଯମରାଜ ଏକଥା ଶୁଣି କହିଲେ– ଦେଖ ପଚାଶ ବର୍ଷ ତଳେ ଯେଉଁ ଖାତା କରିଥିଲ ତାକୁ ଏପର୍ଯ୍ୟନ୍ତ ରଖିପାରିଛ । ଏହା କ'ଣ ସତ୍ୟ ! ମୁଁ କହିଲି ଛାମୁ ଯଦି ବିଶ୍ୱାସ ନହେଉଛି, ତେବେ ମୋତେ ଅନୁମତି ଦିଅନ୍ତି ମୁଁ ଯାଇ ମୋ ଘରୁ ସେ ଖାତା ନେଇ ଆସିବି ।

ଚିତ୍ରଗୁପ୍ତ ହସି ହସି କହିଲେ, ନାଇଁ ନାଇଁ ତୁମର ଯିବା ଦରକାର ନାହିଁ । ଛାମୁ କେବଳ ତୁମର କଥାର ସତ୍ୟତା ପରୀକ୍ଷା ପାଇଁ ଏଭଳି ପ୍ରଶ୍ନ ଉଠାଇଥିଲେ ।

ଏକଥା ଶୁଣି ମୁଁ ଆଶ୍ୱସ୍ତି ହେଲି । ତାପରେ ଏହି ସମୟରେ ଆମ ସ୍କୁଲରେ ଚକ୍ରୀ ନାଟକ ଅଭିନୟ ରହସ୍ୟ କଥା ମନେ ପଡ଼ିଗଲା । ଶ୍ୟାମସୁନ୍ଦର ସାର୍ କିନ୍ତୁ ବବ୍ରୁବାହନ ରୋଲ୍ କରିଥିଲେ । ଖୁବ୍ ଭଲ ଅଭିନୟ କରିଥିଲେ । କିନ୍ତୁ ରେଖା ଭୂମିକାରେ ଜଣେ ସୁନ୍ଦର ସ୍ୱାସ୍ଥ୍ୟବାନ ଛାତ୍ର ଅଭିନୟ କରୁଥିଲେ । ସେ ଦେଖିବାକୁ ନାରୀ ସୁଲଭ ଚେହେରା ଥିଲେ ବି ଅଭିନୟ ଭଲ କଲାନି । ତେବେ ଗଙ୍ଗା ଭୂମିକାରେ, ସାତ୍ୱକୀ ଭୂମିକାରେ ଅଭିନୟ ଖୁବ୍ ଭଲ ହୋଇଥିଲା ମୋର ମନେ ପଡୁଛି । ମୁଁ କିନ୍ତୁ ଅଭିନୟରେ ଭାଗ ନେଇ ନଥିଲି । ବୋଧହୁଏ ଭଲ ପଢୁଛି ବୋଲି

ମୋତେ ଅଭିନୟ କରିବାକୁ ବିଶେଷ ଉତ୍ସାହିତ କରି ନଥିଲେ ଶିକ୍ଷକମାନେ ।

ତେବେ ମୋର ସାଙ୍ଗମାନେ ନାଚ ଶିଖୁଥିଲେ । ନାଚର ଗୀତଟି ଥିଲା– "ଆଗୋ ମଲ୍ଲିକା ବଧୁ ଦିଅ ଅଧରେ ମଧୁ" । ମୋର ସାଙ୍ଗମାନେ ନାଚ ଶିଖୁଥିଲା ବେଳକୁ ମୋ ମନ ନାଚିବାକୁ ହାଇଁପାଇଁ ହେଉଥାଏ ହେଲେ...... ।

ହେଲେ କ'ଣ ହେଲା– ପଚାରିଲେ ଯମରାଜ । ମୁଁ କହିଲି ଆଜ୍ଞା ମୁଁ ଟିକେ ବର୍ହିଦେଶ ଯିବି ମାନେ 'ଦୁଇ' ଆଜି ଏତିକିଥାଉ । ଏତକ କହି ମୁଁ ତରତରରେ ଶୌଚାଳୟ ଆଡ଼େ ଧାଇଁଲି ।



# ଯମପୁରୀର ଜମାନବନ୍ଦି -୯

ଯମରାଜ ପଚାରିଲେ, ଆଗନ୍ତୁକଙ୍କ ଦେହ କିଛି ଖରାପ ହେଲାକି ଚିତ୍ରଗୁପ୍ତ ? କାହିଁ ଏଯାଏ ଦେଖାନାହିଁ । ଚିତ୍ରଗୁପ୍ତ କହିଲେ ହେଇ ଆସୁଛନ୍ତି ଛାମୁଁ, ଦ୍ରୁତ ବେଗରେ ଆସୁଛନ୍ତି । ଆଗନ୍ତୁକ କହିଲେ ଛାମୁଁ ମୁଁ ଟିକେ ଶୋଇ ପଡ଼ିଥିଲି ତା'ଛଡ଼ା କାଲି ରାତିରେ ଦୁଇ ତିନିଥର ମୋତେ ବର୍ହିଦେଶ ଯିବାକୁ ପଡ଼ିଲା । ଚିତ୍ରଗୁପ୍ତ କହିଲେ ଏବେ ଭଲ ଅଛନ୍ତି ତ ।

ଆଗନ୍ତୁକ କହିଲେ ହଁ ଆଜ୍ଞା ମର୍ତ୍ତ୍ୟପୁରରେ ଏଇ ରୋଗଟା ମୋର ଚିର ସହଚର । ପ୍ରାୟ ତୃତୀୟ ଶ୍ରେଣୀରେ ପାଠ ପଢ଼ିଲା ବେଳୁ ମୋର ଏଇ ଅମାଶୟ ରୋଗ । ତାହା ଆଜିଯାଏ ଛାଡ଼ିନାହିଁ । ଏହି କାରଣରୁ ମୁଁ କୌଣସି ଯାନବାହନରେ ଦୂରସ୍ଥାନକୁ ଯିବା ପାଇଁ ଡରେ । ବିଶେଷତଃ ଟ୍ରେନ୍ ଯାତ୍ରା ବ୍ୟତୀତ ଅନ୍ୟ ଯାନବାହନରେ ମୁଁ ଯିବାକୁ ଭୟ କରେ । ବିଭିନ୍ନ ସାରସ୍ୱତ ସଙ୍ଗଠନରେ ସଭ୍ୟ ଥିଲେ ବି ଏହି ମୁଁ ସବୁ ଅଧିବେଶନରେ ଯୋଗଦେଇ ପାରେନାହିଁ ଏହି ଅର୍ମାଶୟ (ଡିସେଣ୍ଟ୍ରି) ରୋଗ ଯୋଗୁଁ । ଯୋଗ ଦେଖନ୍ତୁତ– ମୁଁ ଅମାଶୟ ରୋଗୀ ଏଣେ ମୋ ଶ୍ରୀମତୀ ମଧ ଏବେ ଆଜ୍ମା ଓ ମଧୁମୂତ୍ର ରୋଗରେ ପୀଡ଼ିତା । ଏଣୁ ଆମେ ଦୁହେଁ ଇଛା ଥିଲେ ବି ଚାରିଧାମ ତୀର୍ଥ ଯାତ୍ରାରେ ବାହାରି ପାରୁନାହୁଁ । ବୋଧହୁଏ ଭଗବାନଙ୍କ ଇଛା ତାହା । ସବୁ ସୁବିଧା ଥାଇ ମଧ ଆମେ ବିଭିନ୍ନ ସ୍ଥାନକୁ ପରିଭ୍ରମଣରେ ଯାଇପାରୁନୁ । କଥାରେ ଅଛି ପରା କାନ ଥିଲେ ସୁନା ନାହିଁ ସୁନା ଥିଲେ କାନ ନାହିଁ । ଯମରାଜ କହିଲେ ହଁ ଆଗନ୍ତୁକ ତାହା ସତ ! ଏଇ ଦେଖୁନା .ମୋର କଥା । ମୁଁ ମଧ ମଝିରେ ମଝିରେ ସ୍ୱର୍ଗ କିମ୍ବା ପାତାଳ ରାଜ୍ୟ ବୁଲି ଯାଆନ୍ତି ନାହିଁ । କିନ୍ତୁ କ'ଣ କରିବି ? ମୁଁ ଏ ରାଜ କାର୍ଯ୍ୟରେ ଏତେ ବ୍ୟସ୍ତ ଯେ, ଆଦୌ କେଉଁଆଡ଼େ ବୁଲିବାକୁ ଯାଇପାରୁ ନାହିଁ । ହଁ ଏବେ ତୁମେ ତୁମର ଗତକାଲିର ଛାଡ଼ିଥିବା କଥା ଆରମ୍ଭ କର । ମନେ ଅଛିତ ସେଇ ନାଚ କଥା ।

ଆଗନ୍ତୁକ କହିଲେ ହଁ ଛାମୁଁ ମାଇନର ସ୍କୁଲରେ ସେଇ ନାଚ ଶିଖିବା କଥା କହୁଛି । "ଆଗୋ ମଲ୍ଲିକା ବଧୂ ଦିଅ ଅଧରେ ମଧୁ ।'' ଏଇ ମୁଖଡ଼ାର ଗୀତଟି । ତା'ପର ପଦ ମୋର ଆଉ ମନେ ନାହିଁ । ତେବେ ନାଚର ମୁଦ୍ରାଗୁଡ଼ିକ ମୋ ଆଖିଆଗରେ ନାଚିଯାଉଛି । କାରଣ କ'ଣ ଜାଣନ୍ତି ଛାମୁଁ ! ମଦନପୁର ଯାତ୍ରାପାର୍ଟିର

ଓସ୍ତାଦ୍ ପିତାମ୍ବର ବାବୁ ଆଉ ସେହି ଯାତ୍ରା ପାର୍ଟିର ନୃତ୍ୟଶିଳ୍ପୀ ଚକ୍ରଧର ବାବୁ ଆମ ରାଣୀପଡ଼ାର କୁଳମଣିବାବୁ ଏଇ ନୃତ୍ୟ ଶିକ୍ଷା ଦେଉଥିଲେ । ତେବେ ଓସ୍ତାଦ୍ ପିତାମ୍ବର ବାବୁ ଗୀତଟିର ଅର୍ଥକୁ ପ୍ରାଞ୍ଜଳ ଭାବରେ ବୁଝାଇ ସେଇ ଅନୁସାରେ ଅଙ୍ଗଭଙ୍ଗି ଦେଖାଇବାକୁ ଏପରି ସୁବିଧାଜନକ ଆଉ ସହଜ ଭାବରେ ଶିକ୍ଷା ଦେଇଥିଲେ ଯେ ଯେଉଁ ନାଚକୁ ମୋ ସାଙ୍ଗମାନେ ୮/୧୦ଦିନ ଧରି ଶିଖିପାରୁ ନଥିଲେ ତାକୁ ମାତ୍ର କେଇ ଘଣ୍ଟାରେ ଆୟତ କରିନେଲେ । ଏଇଥିରୁ ଜାଣିଲି ପ୍ରକୃତରେ ଯାତ୍ରାପାର୍ଟିର ଓସ୍ତାଦ୍ ଆଉ ତାଙ୍କ ଛାତ୍ରଙ୍କ ଭିତରେ ପାର୍ଥକ୍ୟ କେତେ ।

ଯମରାଜ କହିଲେ ତୁମେ ତାହାହେଲେ ଭଲ ନାଚିଜାଣ । ଆଗନ୍ତୁକ କହିଲେ ରାମ୍-ରାମ୍ ଆଜ୍ଞା ନାଚ ମୋ ଦ୍ୱାରା ହେଲାନି । ହେଲେ ମୋ ସାଙ୍ଗମାନଙ୍କ ନାଚ ଦେଖି ମୁଁ ଭାରି ହାଇଁପାଇଁ ହୋଇରହିଲି । ତେବେ ନାଚି ନ ପାରିଲେ ବି ନାଚ ଦେଖିବାରେ ମୋର ଖୁବ୍ ଆଗ୍ରହ । ବେଳେ ବେଳେ ଏଇ ନାଚ ପ୍ରୋଗ୍ରାମ୍ ଥିଲେ ମୁଁ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ, କଳାବିକାଶ କେନ୍ଦ୍ର କଟକ କିମ୍ବା କୋଣାର୍କର ମୁକ୍ତାକାଶ ରଙ୍ଗମଞ୍ଚ (ନାଟ୍ୟମଣ୍ଡପ)ରେ ନୃତ୍ୟ ଦେଖିବାକୁ ଯାଇଥାଏ । ଆଜ୍ଞା ଏଯାଏଁ ଯେତେ ଓଡ଼ିଶୀ ନୃତ୍ୟ ମୁଁ ଦେଖି ଆସିଛି ମୋତେ ସବୁଠାରୁ ଭଲ ଲାଗିଛି ଗୁରୁ ଗଙ୍ଗାଧର ପ୍ରଧାନଙ୍କ ଓଡ଼ିଶୀ ଡ୍ରାନ୍ସ ଏକାଡେମୀ ଦ୍ୱାରା ପ୍ରସ୍ତୁତ ନୃତ୍ୟ ନାଟିକା । ଏହା ଅରୁଣା ମହାନ୍ତିଙ୍କ ଦ୍ୱାରା ନିର୍ଦ୍ଦେଶିତ । କୋଣାର୍କ ମୁକ୍ତ ନାଟ୍ୟ ମଣ୍ଡପରେ ଏଇ ଦୁଇ/ତିନିବର୍ଷ ତଳେ ମୁଁ ଦେଖିବାର ସୁଯୋଗ ପାଇଥିଲି । ପଶ୍ଚିମବଙ୍ଗର ରାଜ୍ୟପାଳ ମଧ୍ୟ ଏଇ ନୃତ୍ୟ ଉପଭୋଗ କରି ଭୂରିଭୂରି ପ୍ରଶଂସା କରିଥିଲେ । ତେବେ ମୁଁ ପ୍ରଥମେ ଯେଉଁ ନୃତ୍ୟନାଟିକା ଦେଖି ଆନନ୍ଦିତ ହୋଇଥିଲି ତାହା ମୋର ଭଦ୍ରକ କଲେଜରେ ଆଇ.ଏସ୍.ସି. ପଢୁଥିବା ସମୟର କଥା । ସେତେବେଳେ ଭଦ୍ରକ ହାଇସ୍କୁଲ ପ୍ରାଙ୍ଗଣରେ ଏକ ସାଂସ୍କୃତିକ ଉତ୍ସବ ହେଉଥାଏ । ମୁଁ ସେହି ହାଇସ୍କୁଲ ପାଖାପାଖି ବୃନ୍ଦାବନ ପଣ୍ଡା ମୁକ୍ତାରଙ୍କ ଗାଉଁଲି ମେସ୍‌ରେ ରହୁଥାଏ । ମୋ ସାଙ୍ଗ କାଳା ଓ ମୁଁ ଏଇ ମେସ୍‌ରେ ଥାଉ । ଏଇ ମେସ୍‌ରେ ମୋର ଅନେକ ସ୍ମୃତି ବିଜଡ଼ିତ । ସେସବୁ ପରେ କହିବି । ତେବେ ସେତେବେଳେ ଭଦ୍ରକର ଜଗବନ୍ଧୁବାବୁଙ୍କ କଳାକେନ୍ଦ୍ର ଏକ ନାମକରା ସଙ୍ଗୀତ ଅନୁଷ୍ଠାନ ଥିଲା । ବୋଧହୁଏ ସେଇ କଳାକେନ୍ଦ୍ର ଆନୁକୂଲ୍ୟରେ ଏଇ ଉତ୍ସବ ହେଉଥାଏ । ଏହା ୧୯୫୯ ମସିହା କଥା । ଠିକ୍‌କରି ମନେ ପଡୁନି । ତେବେ ସେତେବେଳେ ନୂଆ ନୂଆ ନାଆଁ କରୁଥାଆନ୍ତି ଗୀତଗାଇ ରାଧାକୃଷ୍ଣ ଭଞ୍ଜ, ସିକନ୍ଦର ଆଲାମ୍ ଆଉ ଅକ୍ଷୟ ମହାନ୍ତି । ଏମାନେ ସବୁ ଗୀତ ଗାଇବାକୁ ଯାଇଥିଲେ । ଗୀତସବୁ ଶୁଣିଥିଲି । ରାଧାକୃଷ୍ଣ ଭଞ୍ଜଙ୍କ ବଗ ଆଉ ବଗୁଲି– ଉଡ଼ିଗଲେ ଡାଳଗଲା ଦୋହଲି'' ଗୀତଟି ଟିକେ ଟିକେ ମନେ

ପଡୁଛି । ତେବେ ମାନଭଞ୍ଜନ ନୃତ୍ୟ ନାଟିକାରେ ସେତେବେଳେ ରାଧା ଭୂମିକାରେ କୁଙ୍କୁମ୍ ମହାନ୍ତି ଆଉ କୃଷ୍ଣ ଭୂମିକାରେ କୃଷ୍ଣପ୍ରିୟା ନନ୍ଦଙ୍କ ଅଭିନୟ ଏବେ ବି ମୋ ଆଖି ଆଗରେ ନାଚୁଛି ।

ଆଜି ବି କୁଙ୍କୁମ୍ ମହାନ୍ତିଙ୍କ ନୃତ୍ୟ ବେଳେବେଳେ ଦେଖିବାକୁ ମିଳେ । କିନ୍ତୁ କୃଷ୍ଣପ୍ରିୟା ନନ୍ଦଙ୍କ କଥା ମୁଁ ଆଉ ଜାଣିପାରିନାହିଁ ।

ଚିତ୍ରଗୁପ୍ତ ପଚାରିଲେ ଆଜିତ ଖାଲି ସଙ୍ଗୀତ ଆଉ ନୃତ୍ୟ କଥା କହିଚାଲିଛ ? ଯମରାଜ କହିଲେ– ଆଃ ମନ୍ତ୍ରୀ ତାଙ୍କୁ ତାଙ୍କ ବକ୍ତବ୍ୟ କହିବାକୁ ଦିଅ । ଏଇ ନୃତ୍ୟଗୀତ ପ୍ରତି ମୋର ମଧ୍ୟ ବଡ଼ ଆଗ୍ରହ । କୁହ ଆଗନ୍ତୁକ, କୁହ ।

ଆଗନ୍ତୁକ କହିଲେ– ଆପଣଙ୍କ ଉଦାରତା ପାଇଁ ଧନ୍ୟବାଦ ଯମରାଜ ! ଏଇ ଛାର ଲୋକଟାର ମୁହଁରୁ ଆପଣ ନୃତ୍ୟଗୀତ ସମ୍ବନ୍ଧରେ ଜାଣିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ହଁ ଆଜ୍ଞା ଏବେ ସେଇ ପିତାମ୍ବର ମାଷ୍ଟର ଆଉ ଚକ୍ରଧରଙ୍କ କଥା କହୁଛି । ମଦନପୁର ଯାତ୍ରାପାର୍ଟିର ଓସ୍ତାଦ ପୀତାମ୍ବର ବାବୁ ମଧ୍ୟ ନାଚିବାରେ ଓସ୍ତାଦ୍ । ଚକ୍ରଧର ଆଉ କୁଳମଣି (ନୃସିଂହ) ମଧ୍ୟ ନାଚିବାରେ ଧୁରନ୍ଧର । ଆମ କୋରେଇ ମାଇନର ସ୍କୁଲରେ ଏଇ ସାଂସ୍କୃତିକ ଉତ୍ସବରେ ଉଭୟେ ପିତାମ୍ବର ବାବୁ ଓ ଚକ୍ରଧର ବାବୁ ଶବର ଶବରୁଣୀ ନୃତ୍ୟକରି ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲେ ।

ସୁଖର କଥା ଏଇ ନୃତ୍ୟ ମାଷ୍ଟରଙ୍କଠାରୁ ଏବଂ ତାଉ ବାବୁଙ୍କଠାରୁ ଆମ ଗାଆଁର ଅସଦ୍ ଭାଇ ଆଉ ଦୂରଭାଇ ମଧ୍ୟ ନାଚ ଶିଖି ବଡ଼ିଆ ଦ୍ୱୈତ ନାଚ (ଡୁଏଟ୍) କରିବାର ମୁଁ ଦେଖିଛି ଆଉ ଆନନ୍ଦ ପାଇଛି । ଅସଦ୍ ଭାଇ ମଧ୍ୟ ଜଣେ ଭଲ କଳାକାର । ଭଲ ଅଭିନୟ କରନ୍ତି । ଆମ କୋରେଇରେ ଅନେକ ବାର ଆଗେ ଥିଏଟର ହେଉଥିଲା । ବିଶେଷତଃ ଥାନା ହତାରେ ଆଉ ବ୍ଲକ୍‌ପଡ଼ିଆ ପାଖରେ ଏଇ ଥିଏଟର କରାଯାଏ । ଏଥିରେ ଆମ ଗାଆଁର ବହୁ କଳାକାର ଅଭିନୟ କରୁଥିଲେ ବି ସେମାନଙ୍କ ଭିତରୁ ଅସଦ୍ ଭାଇ (ଅସଦୁର ରହେମାନ୍ ହଜାରୀ) ଆଉ ଦୂର ଭାଇ (ଦୁର୍ଗାଚରଣ ସାହୁ)ଙ୍କ ଅଭିନୟ ଖୁବ୍ ଭଲ । କିନ୍ତୁ ଦୁଃଖର କଥା ଏମାନେ କେହି କଳାକାର ବୃତ୍ତିପାଇ ନାହାଁନ୍ତି । ଏଥିପାଇଁ ସେମାନଙ୍କ ଉଦ୍ୟମର ଅଭାବ । ପରବର୍ତ୍ତୀ ଅବସ୍ଥାରେ ମୋ ରଚିତ ନାଟକ 'ଲହୁ-ଲୁହ' ମଞ୍ଚରେ ଅଭିନୀତ ହେଉଥିବା ବେଳେ ଅସଦ୍ ଭାଇଙ୍କ ଆଉ ନାରାୟଣ ମହାନ୍ତିଙ୍କ ଅବଦାନ ବହୁତ ବେଶୀ । ସେସବୁ ପରେ କହିବି । ତେବେ ଏଇ କୋରେଇ ସ୍କୁଲରେ ଚକ୍ରୀ ନାଟକ ବିଷୟରେ ଚୁମ୍ବକରେ କହୁଛି । ଥରେ ଆମ ସ୍କୁଲ ସାର୍ ଶ୍ୟାମବାବୁ ବବ୍ରୁବାହନ ହୋଇଥିବା ବେଳେ ଜଣେ ଛାତ୍ର ପଦ୍ମନାଭ ମହାପାତ୍ର (ପଦୁ) ରେଖା ଭୂମିକାରେ ଅଭିନୟ କରିଥିଲେ । ଏକଥା

ଆଗରୁ ମଧ୍ୟ ଟିକେ ଉଲ୍ଲେଖ କରିଥିଲି । ତେବେ ଏଥିରେ ନାଟକର ଦୃଶ୍ୟଗୁଡ଼ିକ ମୋର ଏତେ ମନେପଡୁନି । କେବଳ ମାନପୁର ଚକ୍ରଧର ବାବୁ ଚିତ୍ରାଙ୍ଗଦା ଭୂମିକାରେ ଅଭିନୟ କରିଥିଲେ ସେକଥା ମନେପଡୁଛି । ଆମ ପ୍ରଧାନ ଶିକ୍ଷକ କୃଷ୍ଣବାବୁ ମଧ୍ୟ ଜଣେ ନାଟ୍ୟ ପ୍ରେମୀ । ସେ ମଧ୍ୟ ଚନ୍ଦ୍ରଗୁପ୍ତ ନାମକ ଐତିହାସିକ ନାଟକ ଲେଖିଥିଲେ ।

ଯମରାଜ– ହଉ ଏବେ ବିଳମ୍ବ ହେଲାଣି । ଅନ୍ୟ ରାଜକାର୍ଯ୍ୟ ଦେଖିବାର ଅଛି । ତୁମେ ଯାଅ ବିଶ୍ରାମ ନିଅ ।

ଆଗନ୍ତୁକ– ଯଥା ଆଜ୍ଞା ଯମରାଜ ! ପ୍ରଣାମ !



# ଯମପୁରୀର ଜମାନବନ୍ଦି -୧୦

ଚିତ୍ରଗୁପ୍ତ କହିଲେ ହଁ ନନ୍ଦ କିଶୋର ଗତକାଲି ତୁମ ଥିଏଟର କଥା ଶୁଣି ଶୁଣି ମୁଁ ମଧ୍ୟ ରାତିରେ ଥିଏଟର କରିବାର ସ୍ୱପ୍ନ ଦେଖିଲି । ଆଗନ୍ତୁକ କହିଲେ ଇଯେତ ବଡ଼ ଆନନ୍ଦର କଥା । ତେବେ ଆପଣଙ୍କ ଯମପୁରୀରେ କ'ଣ ଥିଏଟର ହୁଏ । ଚିତ୍ରଗୁପ୍ତ କହିଲେ ବୁଝିଲ ନନ୍ଦକିଶୋର ଏଠାରେ ଥିଏଟର କରିବା ପାଇଁ ପରିବେଶ କାହିଁ ?

ଆଗନ୍ତୁକ କହିଲେ– ହେଲେ ଆମ ମର୍ତ୍ତ୍ୟପୁରୀରେ ଏବେ ବିଚାରଧୀନ କଏଦୀ ହୁଅନ୍ତୁ କି ନିରୋଳା କାଏଦୀ ହୁଅନ୍ତୁ ସେମାନେ ଥିଏଟର କରୁଛନ୍ତି । ପାଲା, ଦାଶକାଠିଆ ମଧ୍ୟ କରୁଛନ୍ତି । ଏବେ ତ ମୁକ୍ତ ଜେଲଖାନାର ବ୍ୟବସ୍ଥା ଆମ ମର୍ତ୍ତ୍ୟ ଭୂମିରେ ଅଛି । ଚୋରି ଡକାୟତି ପରିସ୍ଥିତିରେ ପଡ଼ି କରିଛନ୍ତି ବୋଲି ସେମାନେ କ'ଣ ପୁଣି ଭଲ ମଣିଷ ହେବେନାହିଁ ଏହିଭଳି ଚିନ୍ତା କରିବା ଠିକ୍ ନୁହେଁ । ସେମାନଙ୍କର ହୃଦୟ ପରିବର୍ତ୍ତନ କରାଇ ସମାଜର ମୁଖ୍ୟ ସ୍ରୋତରେ ପୁନର୍ବାର ମିଶାଇବାର ପ୍ରଚେଷ୍ଟା ଖୁବ୍ ପ୍ରଶଂସନୀୟ ।

ଚିତ୍ରଗୁପ୍ତ କହିଲେ ହଁ ଏଇ ଚୋରି କଥା କହିବାରୁ ମୋର ଗୋଟେ କଥା ମନେ ପଡ଼ିଯାଇଛି । ଆଗନ୍ତୁକ କହିଲେ ମୋର ମଧ୍ୟ ସେ କଥା ମନେ ପଡ଼ିଗଲାଣି ଚିତ୍ରଗୁପ୍ତ ମହାଶୟ ! ମୁଁ ମାଇନର ସ୍କୁଲରେ ପାଠପଢୁଥିବା ବେଳର କଥା ତ ! ଚିତ୍ରଗୁପ୍ତ କହିଲେ ହଁ ତୁମେ ତ ବେଶ୍ ଚତୁର ଜଣାଯାଉଛ । ତେବେ ଜାଣିଶୁଣି ସେ କଥାଟି କହୁନଥିଲ ନା ତୁମର ମନେ ନଥିଲା । ଆଗନ୍ତୁକ କହିଲେ ନାଇଁ ଆଜ୍ଞା ଭୁଲି ଯାଇଥିଲି । ହେଉ ଛାମୁ ମଧ୍ୟ ଆସି ଗଲେଣି । ପ୍ରଣାମ ଛାମୁଁ !

ଯମରାଜ କହିଲେ– ପ୍ରଣାମ ! ମୋର ଆଜି ଆସିବା ଟିକେ ବିଳମ୍ବ ହୋଇଗଲା । ହଁ ତୁମର କଥା ଚାଲୁ । ଆଗନ୍ତୁକ କହିଲେ ଆପଣ ଆସିବାର ଏଇ ଟିକେ ଆଗରୁ ଆମ ମର୍ତ୍ତ୍ୟଭୂମିର ଚୋର ଡକାୟତମାନଙ୍କୁ ବନ୍ଦୀ ଜୀବନ କଥା ଆଲୋଚନା କରୁଥିଲି । ସେମାନେ ଯେପରି ମର୍ତ୍ତ୍ୟ ଭୂମିରେ ଜେଲଖାନାରେ ହସଖୁସିରେ ଦିନ କାଟୁଛନ୍ତି ଏଠାରେ ମୁଁ ଦେଖୁନାହିଁ । ଏଠାରେ ବନ୍ଦୀମାନଙ୍କ ଭିତରେ ସେପରି ଅଭିନୟ, ସଙ୍ଗୀତ, ନୃତ୍ୟ ବାଦ୍ୟର ବ୍ୟବସ୍ଥା କଲେ ଭଲ ହୁଅନ୍ତା । ଯମରାଜ କହିଲେ ହଁ ଏହା ଏକ ଉତ୍ତମ ପ୍ରସ୍ତାବ । ବିଚାର କରି ଦେଖିବା ।

ଚିତ୍ରଗୁପ୍ତ କହିଲେ– ତେବେ ତୁମ ଚୋରି କଥା କୁହ । ଯମରାଜ କହିଲେ ପରିହାସ କରୁନାହଁ ତ ଚିତ୍ରଗୁପ୍ତ ! ଏଇ ଭଦ୍ରବ୍ୟକ୍ତି ଯେ ଚୋରି କରିଥିବେ ସେ ବିଶ୍ୱାସ ମୋର ହେଉ ନାହିଁ । ଚିତ୍ରଗୁପ୍ତ କହିଲେ– ଆଜ୍ଞା ତାଙ୍କ ନିଜ ମୁହଁରୁ ସେକଥା ଶୁଣନ୍ତୁ । ଆଗନ୍ତୁକ କହିଲେ– ଆଜ୍ଞା କହୁଛି ! ମୁଁ ମାଇନର ସ୍କୁଲରେ ଭଲ ପାଠ ପଢୁଥାଏ । ଶ୍ରେଣୀରେ ମନିଟର ଥାଏ । ମୋତେ ଥରେ ଶ୍ରେଣୀରେ ପଢ଼ାଉଥିବା ଶିକ୍ଷକ ଅଫିସ୍‌ର ଚକ୍‌ଖଡ଼ି (ଫୁଲଖଡ଼ି) ଆଣିବା ପାଇଁ କହିଲେ । ମୁଁ ଅଫିସ୍‌କୁ ଗଲି । ଅଫିସ୍ ଟେବୁଲ ଉପରେ ଚକ୍‌ଖଡ଼ି ବାକ୍ସ ଥାଏ । ମୁଁ ଖଣ୍ଡେ ଦି'ଖଣ୍ଡ ଚକ୍‌ଖଡ଼ି ହାତରେ ଧରିଲି । ତା'ର ସୁନ୍ଦର ଚେହେରା ଦେଖି ମୋର ଲୋଭ ହେଲା । ଆଗରୁ କେତେବେଳେ କେମିତି ଚକ୍‌ରେ ଲେଖିଥିଲି ହେଲେ ଭଙ୍ଗା ଖଡ଼ିରେ । ଏଇ ଏକଦମ୍ ନୂଆ ଆଉ ଲମ୍ବା ଖଡ଼ି ଖୁବ୍ ଲୋଭନୀୟ ଚେହେରା । ଏଣୁ ଦୁଇ ତିନିଖଣ୍ଡ ଚକ୍‌ଖଡ଼ି ଚକ୍ ବାକ୍ସରୁ ଆଣି ମୋ ପକେଟରେ ରଖିଦେଲି । ଖଣ୍ଡେ ଚକ୍‌ଖଡ଼ି ଆଣି ସାର୍‌ଙ୍କୁ ଦେଲି । ତେବେ ଆପଣ ଏହାକୁ ସିନା ଚୋରି ବୋଲି ଭାବୁଛନ୍ତି ହେଲେ ମୁଁ ସେତେବେଳେ ଏହାକୁ ଚୋରି ବୋଲି ଜାଣିନଥିଲି । ତେବେ ଏକଥା ସତ ଯେ, ମୁଁ ସେଇ ଦୁଇ ତିନିଖଣ୍ଡ ଚକ୍‌ଖଡ଼ି ଆଣି ଶ୍ରେଣୀରେ ବସିଥିବା ବେଳେ ଖୁବ୍ ଭୟ ପାଇଯାଇଥିଲି । କାଳେ ମୋ ପକେଟ୍‌ରେ ଥିବା ଚକ୍‌ଖଡ଼ି କଥା କିଏ ଜାଣିପାରିବ ଆଉ ସାର୍‌ଙ୍କୁ କହିଦେଲେ ମୁଁ ଦଣ୍ଡ ପାଇବି ଏଇଟା ଥିଲା ଭୟ ।

ହଁ ଏଇ ଚକ୍‌ଖଡ଼ି କଥାରୁ ଆଉ ଗୋଟେ କଥା ମନେପଡୁଛି । ଆମ ଘର ପାଖରେ ଅଲ୍ଲି ମହମ୍ମଦ ନାମକ ଜଣେ ଲୋକ ଆସି ଘରକରି ନୂଆ ନୂଆ ରହିଥାଏ । ତାର ସାମ୍ନା ବଖରାରେ ମନୋହରି ଦୋକାନଟିଏ ଖୋଲିଥାଏ । ମୁଁ ଥରେ ସେହି ଦୋକାନରୁ ଲୁଚାଇକରି କେଇଟା କାଚଗୋଟାଳି ଆଉ ଟିଣ ନଟୁ ନେଇ ଆସିଥିଲି । ସେତେବେଳେ ଚୋରି କରିବାର ମନୋବୃତ୍ତି ଥିଲା କି ନାହିଁ ମୁଁ ଜାଣେନାହିଁ । ତେବେ ଏଇ ଗୋଟାଳି ଆଉ ନଟୁକୁ ଲୁଚାଇ ଆଣିବା ପଛରେ ଗୋଟାଏ ଉଦ୍ଦେଶ୍ୟ ଥିଲା । ଏଗୁଡ଼ିକୁ ନେଇ ସାଙ୍ଗମାନଙ୍କ ଭିତରେ ବାଣ୍ଟିବା, ଖେଳିବା ଆଉ ବାହାଦୂରୀ ନେବା ।

ମୁଁ ତ ଘରେ ଏକୁଟିଆ ଛୋଟ ପିଲା ଥାଏ । ଏଣୁ ଖେଳ ସାଥି ଖୋଜିବା ପାଇଁ ବେଳେବେଳେ ମୋତେ ପଇସା ଦେଇ ସାଙ୍ଗସାଥି ଯୋଗାଡ଼ କରିବାକୁ ପଡ଼େ । ଥରେ ଏଇଥିପାଇଁ ବାପାଙ୍କ ଦୋକାନରୁ ପଇସା ଚୋରିକରି ଆଣି ସେହି ପଇସା ମୋର ସାଙ୍ଗ କାହ୍ନୁଆକୁ ଖେଳିବା ପାଇଁ ଦେଇଥିଲି । ଏକଥା ପୁଣି କାହ୍ନୁଆ ମାଆକୁ କହିଲି । କାରଣ କାହ୍ନୁଆ ପଇସାନେଇ ମଧ୍ୟ ଖେଳିବା ପାଇଁ ଆସିଲା ନାହିଁ । ଫଳରେ ମୋ ମାଆ ବି ଏକଥା ଜାଣିଥିଲେ ଆଉ ମୁଁ ମାଡ଼ ବି ଖାଇଥିଲି ।

ତେବେ ଗୋଟେ କଥା ନିରାଟ ସତ ଯେ, ମୋର ଏଇ ଛୋଟ ଛୋଟ ଚୋରି ଘଟଣାକୁ ମୁଁ ଚୋରି ବୋଲି ଜାଣି ନଥିଲି । ଲୋଭରେ ପଡ଼ି କିଛି ଭୁଲ କରୁଛି ବୋଲି ଭାବିବି ନଥିଲି, ଏବେ ଜାଣୁଛି ସେ ଗୁଡ଼ିକ ଭୁଲ୍ କାମ ଥିଲା । କିନ୍ତୁ ପିଲାବେଳେ ସେଇ ଘଟଣା ଗୁଡ଼ିକୁ ଭାବିଲେ ମୋତେ ଏବେ ବି ଲାଜ ଲାଗୁଛି ଆଉ ଦୁଃଖ ବି ଲାଗୁଛି ।

ଯମରାଜ କହିଲେ-- ବିଳମ୍ବରେ ହେଲେ ବି ତୁମେ ଏବେ ତୁମର ଦୋଷ ସ୍ୱୀକାର କରୁଛ ଜାଣି ଖୁସି ଲାଗୁଛି । ସବୁଠାରୁ ଖୁସିଲାଗୁଛି ଯେ, ତୁମେ କିଛି ନ ଲୁଚାଇ ସବୁ ସତକଥା କହିଚାଲିଛ । ନା କ'ଣ ଚିତ୍ରଗୁପ୍ତ ! ମୋର ହୃଦ୍‌ବୋଧ ହେଉଛି ଇଏ ଯାହାସବୁ କହୁଛନ୍ତି ସତ ହିଁ କହୁଛନ୍ତି ।

ସତକଥା କହିବା ପାଇଁ ତ ଆପଣ ମୋତେ ସୁଯୋଗ ଦେଇଛନ୍ତି ଧର୍ମାବତାର । ହେଲେ ମୋର ଏବେ ବି ମର୍ତ୍ତ୍ୟଭୂମିର ଗୋଟେ କଥା ପାଇଁ ମନ ବଡ଼ ଦୁଃଖ । ଆମର କୋର୍ଟ କଚେରୀରେ ସମସ୍ତେ ଗୀତା ଛୁଇଁ ଶପଥ କରନ୍ତି ସତ କହିବା ପାଇଁ ଅଥଚ ଯାହାସବୁ କହନ୍ତି ସେଥିରେ ସତର ଭାଗ ବହୁତ କମ୍ ଥାଏ । ଆଉ ସେଇଥିପାଇଁ ବେଳେବେଳେ କୋର୍ଟ ଆଖିରେ ସତଟା ମିଛ ହୋଇଯାଏ ଓ ପ୍ରକୃତ ଦୋଷୀ ଦଣ୍ଡ ନପାଇ ଖସିଯାଏ ବେଳେବେଳେ ଏଇ ମିଛ ସାକ୍ଷୀଙ୍କ ଯୋଗୁଁ ନିରୀହ ନିର୍ଦ୍ଦୋଷ ଲୋକ ବି ଦଣ୍ଡ ପାଏ । ମୋର ବିଶ୍ୱାସ ଆପଣଙ୍କ ଯମପୁରୀରେ ଏପରି ବିଚାରଧାରା ନାହିଁ ।

ଯମରାଜ କହିଲେ - ନାଁ ଆମେ ଆମର ବିଚାରକୁ ଯେତେଦୂର ସମ୍ଭବ ନିରପେକ୍ଷ କରିବାପାଇଁ ଚେଷ୍ଟା କରୁଛୁ । ତଥାପି, ତୁମ ମର୍ତ୍ତ୍ୟଭୂମିରୁ ବେଳେବେଳେ ଗୋଟେ ଗୋଟେ ଅପରାଧୀ ଏଠାକୁ ଆସି ଏଣୁ ତେଣୁ ଚାଲ୍‌ବାଜି ଖେଳି ଆମକୁ ହରଡ଼ ଘଣାରେ ପକାଉଅଛନ୍ତି । ଚିତ୍ରଗୁପ୍ତ କହିଲେ - ହଁ ଆଜ୍ଞା ! ସେହି ଛକଡ଼ି ମହାନ୍ତିଟା କେମିତି ଠକିକରି ଆମ ଭଣ୍ଡାରରୁଛ ଛପଟ ବାରପଟ ସୁନାଶଙ୍ଖା ନେଇ ତା' ଘରଣୀକୁ ଦେଇ ପୁଣି ଚାଲି ଆସିବ କହି ଯେ ଯାଇଛି ଯାଇଛି ଆଉ ଫେରିବାର ନାଁ ନାହିଁ ।

ଆଜ୍ଞା ! ଏଇ କଥାକୁ ନେଇ ଆମ ମର୍ତ୍ତ୍ୟଭୂମିରେ ଗୋଟେ ଗୀତିନାଟ୍ୟ ଆକାଶବାଣୀରୁ ପ୍ରଚାର ହେଉଅଛି । ଯମରାଜ ଟିକେ ହସି ଦେଇ କହିଲେ - ସତେ ନା କ'ଣ ଆଗନ୍ତୁକ ? ହଁ ଛାମୁ ମୁଁ ବେଳେବେଳେ ନିଜେ ପରା ଏଇ ସଙ୍ଗୀତ ରୂପକ ଆକାଶବାଣୀରୁ ଶୁଣିଛି । ଇୟାର ନାମ ମଧ୍ୟ ଦିଆଯାଇଛି ସୁନା ଶଙ୍ଖା । ତେବେ ସେ କଥା ଛାଡ଼ନ୍ତୁ ଛାମୁଁ । ମୁଁ ମୋ ଜୀବନରେ ପିଲାବେଳର ଏଇ ଛୋଟ ଛୋଟ ଘଟଣା ଯାହା କହିଲି ତାକୁ ଆପଣ ଚୋରି ବୋଲି ବିଚାରକରି ଯାହା ଦଣ୍ଡ ଦେବେ ମୁଁ ମାନିନେବି ।

ନାଁ ନାଁ ଆଗନ୍ତୁକ ! ତୁମେ ସିଲାବେଳେ ଏଇ ଯେଉଁ ଛୋଟ ଛୋଟ ଦୁଷ୍ଟାମି କରିଛ ତାହା ସେ ସମୟର ଏକ ସ୍ୱାଭାବିକ୍ ପ୍ରକ୍ରିୟା । ତଥାପି ବାପା ମାଆଙ୍କ ସଂସ୍କାର ଆମ ପିଲାମାନଙ୍କ ପ୍ରତି ଯତ୍ନର ଅବହେଳା ଯୋଗୁଁ ଏପରି ଘଟିଥାଏ । ତଥାପି ତୁମେ ସେହି ପିଲା ବେଳର କଥା ମନେପକାଇ ନିଜର ଦୋଷ ସ୍ୱୀକାର କରିଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଏବେ ତୁମେ ଯାଇପାର । ଆଗାମୀକାଲି ପୁଣି କିଛି ନୂଆ କଥା ମନେ ପକାଇ ସଅଳ ଚାଲିଆସିବ ।

ଯଥା ଆଜ୍ଞା ଛାମୁଁ !



# ଯମପୁରୀର ଜମାନବନ୍ଦି -୧୧

କୋରେଇ ମାଇନର ସ୍କୁଲରେ ପାଠ ପଢୁଥିବା ବେଳର କଥା । ମୋ ସ୍ମରଣ ଶକ୍ତି ଖୁବ୍ ତୀକ୍ଷ୍ଣ ଥିଲା । ଇତିହାସ, ଭୂଗୋଳ, ସାହିତ୍ୟ ଆଦି ବହିର ପ୍ରତିପୃଷ୍ଠା ପ୍ରାୟ ମୋର ମନେ ଥାଏ । ତକିଆତଳେ ବହିଟି ରଖି ମୁଁ ମନେ ମନେ ପୁରା ବହିଟିକୁ ମୁଖସ୍ଥ କଲାଭଳି କହି ଚାଲିଥାଏ । ଏହି କାରଣରୁ ପରୀକ୍ଷାରେ ପ୍ରଶ୍ନ ଯାହାବି ପଡୁ, ଉତ୍ତର ଦେବାର କୌଶଳ ମୋତେ ଭଲ ଭାବରେ ଜଣା ନଥିବାରୁ ପ୍ରାୟ ଅନାବଶ୍ୟକ ଅଂଶ ବି ଉତ୍ତର ଦେବାରେ ରହିଯାଏ । ତଥାପି ମୁଁ ଶ୍ରେଣୀରେ ପ୍ରଥମ ହେଉଥାଏ । କିନ୍ତୁ ମାଇନର ସ୍କୁଲରେ ମଧ୍ୟ ମୁଁ ବୃତ୍ତି ପାଇପାରିଲି ନାହିଁ ।

କିନ୍ତୁ ଜଣେ ଭଲ ଛାତ୍ର ଭାବରେ ଏନ୍.ସି. ହାଇସ୍କୁଲ ଯାଜପୁର ରୋଡ଼ରେ ମୁଁ ପଢୁଥିବା ବେଳେ ବେଶ୍ ପ୍ରଶଂସିତ ହେଉଥାଏ । ଆମ ସମୟରେ ହାଇସ୍କୁଲ ଚାରିଶ୍ରେଣୀରେ ବିଭକ୍ତ ଥାଏ । ଯଥା - ଅଷ୍ଟମ, ନବମ, ଦଶମ ଓ ଏକାଦଶ । ଏବେ ଛାମୁଁ ହାଇସ୍କୁଲରେ ମାତ୍ର ତିନିଗୋଟି ଶ୍ରେଣୀ ଅଛି । ଯଥା - ଅଷ୍ଟମ, ନବମ ଓ ଦଶମ । ଅଷ୍ଟମ ଶ୍ରେଣୀରେ ପଢୁଥିବା ବେଳେ ମୁଁ ଏବଂ ଆଉ କେତେକ ସାଙ୍ଗ ରେଳଗାଡ଼ିରେ କୋରେଇରୁ ଯାଜପୁରରୋଡ଼ ଯା ଆସ କରି ଆମେ ପାଠ ପଢୁଥାଉଁ । ସେତେବେଳେ ହାୱଡ଼ା-ପୁରୀ ପାସେଞ୍ଜରକୁ ସିକ୍ସ ଅପ୍ ଏବଂ ପୁରୀରୁ ଆସୁଥିବା ପୁରୀ ହାୱଡ଼ା ପାସେଞ୍ଜର ଗାଡ଼ିକୁ ଫାଇଭ୍ ଡାଉନ୍ କୁହାଯାଉଥିଲା । ଆଜି ବି ସେ ଗାଡ଼ି ଚାଲିଛି ହେଲେ ଗାଡ଼ିର ନମ୍ବର ବଦଳି ଯାଇଛି, ନାଆଁ ବଦଳିନି । କିନ୍ତୁ ଏଯାଏଁ ଲୋକମୁଖରେ ସିକ୍ସ ଅପ୍ ଏବଂ ଫାଇଭ୍ ଡାଉନ୍ ନାମ ଚଳି ଆସିଛି ।

ସେହି ଗାଡ଼ିରେ ଯା- ଆସ କରିବା ଫଳରେ ବିଦ୍ୟାଳୟରେ ଠିକ୍ ସମୟରେ ପହଞ୍ଚିବା ଅଥବା ଠିକ୍ ସମୟରେ ବିଦ୍ୟାଳୟ ଛାଡ଼ିବା ସମ୍ଭବ ହେଉ ନଥାଏ । ଯେଉଁଦିନ ଗାଡ଼ି ବିଳମ୍ବ ହୋଇଯାଏ ଆମେ ପ୍ରଥମ ପିରିୟଡ୍ ପ୍ରାୟ ପଢ଼ିବାର ସୁଯୋଗ ପାଉନା । ସେହିପରି ଶେଷ ପିରିଅଡ୍‌ଟି ଆମେ ପ୍ରାୟ ମନଦେଇ ପଢ଼ିପାରୁନା । କାରଣ ଷ୍ଟେସନରେ ଆସି ୪ଟା ସୁଦ୍ଧା ଗାଡ଼ିଧରି ଘରକୁ ଆସିବା କଥା । ଏଥିପାଇଁ ଶିକ୍ଷକ ମାନେ ଆମ ଉପରେ ବିରକ୍ତ ହୁଅନ୍ତି । ମୁକୁନ୍ଦ ସାର୍ ତ ପ୍ରତିଦିନ ଥଟ୍ଟା କରନ୍ତି ।

କିନ୍ତୁ ଶିକ୍ଷକ ମାନଙ୍କର ଆମ ପ୍ରତି ଏ ପ୍ରକାର ଖରାପ ଧାରଣା ଧୀରେ ଧୀରେ କମିଗଲା । କାରଣ ମୁଁ ଗାଡ଼ିରେ ଯା-ଆସ କରି ମଧ୍ୟ ଶ୍ରେଣୀରେ ପ୍ରଥମ ହେଉଥାଏ ।

ମୋ ତଳ କ୍ଲାସର ପିଲା ବି ଗାଡ଼ିରେ ଯା-ଆସ କରି ପ୍ରଥମ ହେଉଥାଏ । ଏଣୁ ଶିକ୍ଷକମାନେ ଶ୍ରଦ୍ଧା ମଧ୍ଯ କରୁଥାଆନ୍ତି । ଦିନକର କଥା । ସେଦିନ ବିଦ୍ୟାଳୟକୁ ବିଦ୍ୟାଳୟ ସମୁହର ପରିଦର୍ଶକ ଆସିବାର କଥା । ଏଇଠି ଗୋଟେ କଥା କହିବା ଉଚିତ୍ ମନେ କରୁଛି । ଆମ ସମୟରେ (ଅର୍ଥାତ୍ ୧୯୫୪ ମସିହାର କଥା) ବିଦ୍ୟାଳୟ ଗୁଡ଼ିକୁ ପରିଦର୍ଶକ ମାନେ ନିୟମିତ ବିଦ୍ୟାଳୟ ପରିଦର୍ଶନ କରୁଥିଲେ । ଶିକ୍ଷା ଓ ଶିକ୍ଷକମାନଙ୍କର ମାନ ନିର୍ଦ୍ଧାରଣରେ ସହଯୋଗ କରୁଥିଲେ । ଫଳରେ ଶିକ୍ଷକ ମାନଙ୍କ ଉପରିସ୍ଥ କର୍ମଚାରୀ ମାନଙ୍କ ପ୍ରତି ଭୟ ରହୁଥିଲା । ଛାତ୍ରମାନେ ମଧ୍ଯ ଶିକ୍ଷକମାନଙ୍କୁ ଭୟ ଓ ଭକ୍ତି କରୁଥିଲେ । କିନ୍ତୁ ଏବେ ଯୁଗ ବଦଳି ଯାଇଛି । ବହୁ ସଂଖ୍ୟାରେ ବିଦ୍ୟାଳୟ ପ୍ରତିଷ୍ଠା ହୋଇଛି । ଅଥଚ ଶିକ୍ଷାର ଗୁଣାତ୍ମକ ମାନ ବହୁ ସଂଖ୍ୟାରେ କମିଯାଇଛି । ଶିକ୍ଷା ବିଭାଗର କର୍ମଚାରୀ ମାନେ କେବଳ ଅଫିସ୍ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି । ପରିଦର୍ଶନ କରିବାକୁ ବେଳ ପାଉ ନାହାଁନ୍ତି ।

ହଁ ମୂଳ କଥାକୁ ଆସେ । ଆମ ଏନ୍.ସି. ହାଇସ୍କୁଲକୁ ସେଦିନ ଇନିସ୍ପେକ୍ଟର ଅଫ୍ ସ୍କୁଲସ୍ ଆସିବାର ଥାଏ । ତାଙ୍କର ନାମ କି ସେନାପତି ଠିକ୍ ଭାବରେ ମନେ ପଡୁନାହିଁ । ବୋଧେ ରାମସ୍ୱାମୀ ସେନାପତି ଏଣୁ ପୂର୍ବ ଦିନ ସାର୍‌ମାନେ ଠିକ୍ ସମୟରେ ଆସିବାକୁ ଆମକୁ ତାଗିଦ୍ କରିଦେଇ ଥିଲେ । କିନ୍ତୁ ଦୁର୍ଭାଗ୍ୟ ଆମର । ସେହି ଦିନ ସିକ୍ ଅପ୍ ପ୍ରାୟ ୨ ଘଣ୍ଟା ବିଳମ୍ୱରେ ଆସିଲା । ଏଣୁ ଆମେ ବିଦ୍ୟାଳୟରେ ପ୍ରାୟ ୩ୟ ପିରିୟଡ୍ ବେଳକୁ ଆସି ପହଞ୍ଚିଲୁ । ସେତେବେଳକୁ ପ୍ରଧାନ ଶିକ୍ଷକ ମଧ୍ଯ ମୋର ବିଦ୍ୟାଳୟକୁ ଆସିବା କଥା ବୁଝୁଥାଆନ୍ତି । ବୋଧହୁଏ ଏଇଟା ମୋର ଅଷ୍ଟମ ଶ୍ରେଣୀ । ଛ ମାସିଆ ପରୀକ୍ଷାରେ ମୋର କୃତିତ୍ୱ ଦୃଷ୍ଟି ଆକର୍ଷଣ କରିଥାଏ ସମସ୍ତଙ୍କର । ମୁଁ ଇଂରାଜୀ ୨ୟ ପତ୍ରରେ ୧୦୦ ରୁ ୭୫ ନମ୍ୱର ରଖିଥାଏ ଏବଂ ୧ମ ପତ୍ରରେ ୬୮ ନମ୍ୱର । ସଂସ୍କୃତରେ ୯୧ । ଓଡ଼ିଆ ୭୦ ରୁ ଅଧିକ । ଏଣୁ ସବୁ ଶିକ୍ଷକ ମୋ ଉପରେ ଖୁବ୍ ଖୁସି ଥାଆନ୍ତି । ଏପରିକି ଇଂରାଜୀ ଶିକ୍ଷକ ଗୋପୀ ସାର୍ ମୋ ଇଂରାଜୀ ଲେଖାରେ ଏତେ ଖୁସି ହୋଇଥାଆନ୍ତି ଯେ, ପରିଚାଳନା ସମିତି ସଭ୍ୟମାନଙ୍କୁ ଡାକି ମୋତେ ଦେଖାଇ ଦେଉଥାଆନ୍ତି ।

ଛାଡ଼ନ୍ତୁ ସେସବୁ କଥା ପରେ କହିବି । ଆପଣ ଭାବୁଥିବେ ମୁଁ ଖାଲି ଖାଲି ମୋର ପ୍ରଶଂସା କରି ଚାଲିଛି । ନା ନା ତୁମେ ଠିକ୍ କହୁଛ ଆଗନ୍ତୁକ । କହିଚାଲ ! କହିଚାଲ !! କହିଲେ ଯମରାଜ । ଏବେ ତୁମେ ତୁମ ସ୍କୁଲ ଇନିସ୍ପେକ୍ଟର କଥା କୁହ । କହୁଛି ସାର୍ ! ମୋର ସୌଭାଗ୍ୟ ଯେ ସେତେବେଳେ ଯାଏ ଇନିସ୍ପେକ୍ଟର ଶ୍ରେଣୀ ପ୍ରଦର୍ଶନକୁ ଆସି ନଥାଆନ୍ତି । ଆମେ ଲୁଚି ଲୁଚି ବିଦ୍ୟାଳୟର ପଛବାଟେ ଆସି

ଶ୍ରେଣୀରେ ପହଞ୍ଚିଲୁ । ବିଜ୍ଞାନ ନିର୍ଘଣ୍ଟରେ ଇନିସ୍ପେକ୍ଟର ଆମ ଅଷ୍ଟମ ଶ୍ରେଣୀକୁ ଆସିଥିଲେ । ବିଜ୍ଞାନ ସାର୍ ଲକ୍ଷ୍ମୀଧର ବାବୁ ଉଦ୍ଭିଦ ବିଜ୍ଞାନ ପଢ଼ାଉ ଥାଆନ୍ତି । ଇନିସ୍ପେକ୍ଟର ଆସି କିଛି ପ୍ରଶ୍ନ ପଚାରିଲେ । ମୁଁ ଯଥାର୍ଥ ଉତ୍ତରସବୁ ପ୍ରାଞ୍ଜଳ ଭାବରେ ଦେଇଥିଲି । ଉଭୟ ବିଜ୍ଞାନ ଶିକ୍ଷକ ଓ ପରିଦର୍ଶକ ମହାଶୟଙ୍କୁ ସନ୍ତୁଷ୍ଟ କରିପାରିଥିଲି । ଯାହା ହେଉ ଟିଏ ବଡ଼ ବିପଦ ଟଳିଗଲା । ପ୍ରକୃତରେ ରେଳଗାଡ଼ିଟା ସେହିଦିନ ଏମିତି ବାଦ ସାଧିବ ବୋଲି ଆମକୁ ଜଣା ନଥିଲା ।

ତେବେ ଏବେ ଏଇ ଅଷ୍ଟମ ଶ୍ରେଣୀ କଥା କହୁଛି । ଏଇ ଶ୍ରେଣୀରେ ମାତ୍ର ଜଣେ ଝିଅ ପାଠ ପଢୁଥିଲା । ସେହି ଝିଅର ମୋ ପ୍ରତି ଟିକେ ଆକର୍ଷଣ ବି ଥିଲା । ସମ୍ଭବତଃ ଏହା ବୟସର ଧର୍ମ । ମୁଁ ମଧ୍ୟ ନୂଆ ନୂଆ ପ୍ରେମର ଅନୁଭବ କରୁଥିଲି । ମୋର ଧାରଣା ସପ୍ତମ ଶ୍ରେଣୀରେ ଲୁଚେଇ ଲୁଚେଇ 'ନରବଳୀ' ଉପନ୍ୟାସ ପଢୁଥିବା ସମୟରେ ଲଭ୍ ଶବ୍ଦ ସହିତ ମୋର ପରିଚୟ ହେଲା । ସେଇ ଲଭ୍‌ର ପ୍ରଭାବ ଏଇ ଅଷ୍ଟମ ଶ୍ରେଣୀରେ ଟିକେ ବେଶୀ ଅନୁଭବ ହେଲା । ଏଇ ବାଳିକା ସହପାଠିନୀ ପାଖରେ ।

ମୋର ଏକଥା ଶୁଣି ଚିତ୍ରଗୁପ୍ତ ଟିକେ ହସିଦେଲେ । ମୁଁ ସଂକୋଚ ପ୍ରକାଶ କରି ଆଗକୁ ଆଉ ଅଧିକ କିଛି କହି ନପାରି ଆଜିପାଇଁ ଏଇଠୁ ଶେଷ କରି ବିଦାୟ ମାଗିଲି ।



# ଯମପୁରୀର ଜମାନବନ୍ଦି -୧୨

ଆପଣ ଏମିତି କହିଲେ ମୋତେ ସଂକୋଚ ଲାଗୁଛି   ମନ୍ତ୍ରୀ ମହାଶୟ ! ଯମରାଜ ଆସି ନାହାନ୍ତି ଏଣୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ମୋର ଏଇ ଆଦ୍ୟ ଯୌବନର କଥା କହିଲା ବେଳେ ମୋତେ ପରିହାସ କରି ଲଜ୍ଜା ଦେବେ ନାହିଁ ।

ହେଇ ଯମରାଜ ଆସିଗଲେଣି । ଏତକ ମନ୍ତ୍ରୀ ଚିତ୍ରଗୁପ୍ତ କହିବାମାତ୍ରେ ମୁଁ ସତର୍କ ହୋଇଗଲି । ନିଜର ପୋଷାକ ପରିଛଦ ଟିକେ ସଜାଡ଼ି ନେଲି ।

ଯମରାଜ ସିଂହାସନରେ ବସିବା ମାତ୍ର ମୋତେ ନିର୍ଦ୍ଦେଶ ଦେଲେ ହେଉ ଆଗନ୍ତୁକ ତୁମର ଆଦ୍ୟ ଯୌବନରେ ପହିଲି କୁଆଁ କୁଆଁ କଥା ଆରମ୍ଭ କର ।

ମୁଁ ଲାଜେଇ ଯାଇ କହିଲି - ଛାମୁ ସତେ କ'ଣ ଏସବୁ ଶୁଣିବେ ! ଯମରାଜ କହିଲେ - ଆରେ ମାନବ ଜନ୍ମ ହେଲା ଦୁର୍ଲଭ ଜନ୍ମ । ସେ ବାଲ୍ୟ, ପୌଗଣ୍ଡ, କୈଶୋର, ଯୌବନ, ପ୍ରୌଢ଼ ଆଉ ଶେଷରେ ବୃଦ୍ଧାବସ୍ଥା ଦେଇ ଗତିକରେ । ପ୍ରତ୍ୟେକ ଅବସ୍ଥାର ଏକ ନିର୍ଦ୍ଦିଷ୍ଟ ଅନୁଭବ ରହିଛି । ଏସବୁ ଅନୁଭବ ଦେବତା ମାନଙ୍କର ନାହିଁ । ଚିରଯୌବନ ଯେ କେତେ ଯନ୍ତ୍ରଣା ଦାୟକ ତାହା ଅନୁଭବୀ ହିଁ ଜାଣେ । ମୃତ୍ୟୁ ଅଛି ବୋଲି ଜନ୍ମର ଆନନ୍ଦ ରହିଛି । ଠିକ୍ ଯେମିତି ଅନ୍ଧକାର ଅଛି ବୋଲି ଆଲୋକର ଆଦର ରହିଛି ।

ହେଲେ ମଣିମା ଆମ ଏଇ ଯମପୁରୀରେ ସଦାବେଳେ କରୁଣ ଚିତ୍କାର, ଆର୍ତ୍ତନାଦ ଭିତରେ ଆମେ ବୁଡ଼ି ରହିଲେ । ଟିକେ ହସ କାହା ମୁହଁରେ ଦେଖିବାକୁ ପାଇଲେନି । କହିଲେ ଚିତ୍ରଗୁପ୍ତ ।

ସେଇଥିପାଇଁ ତ ଆଗନ୍ତୁକଙ୍କ ମୁହଁରୁ ତାଙ୍କ ଯୌବନର କଥା ଶୁଣିବା ପାଇଁ ଆଗ୍ରହ ଆସିଛି । କୁହ ଆଗନ୍ତୁକ ଆଉ ବିଳମ୍ବ କରନା ।

"ହଉ ଆଜ୍ଞା ଆରମ୍ଭ କରୁଛି ।"

ଆଗରୁ କହିଥିଲି   ମୋର ଅଷ୍ଟମ ଶ୍ରେଣୀ ହୋଇଥାଏ । ଆମ ଶ୍ରେଣୀରେ ମାତ୍ର ଜଣେ ଛାତ୍ରୀ । ମୁଁ ମଧ ଖୁବ୍ ଭଲ ପଢ଼ି ଶ୍ରେଣୀରେ ପ୍ରଥମ ହୋଇଥାଏ । ଏଣୁ ଝିଅଟି ମୋର ଅଙ୍କ ଖାତା, ବିଜ୍ଞାନ ଖାତା ନିରୋଳା ହେଲେ ଖେଳ ଛୁଟିରେ ମୋତେ ମାଗିଥାଏ । ସେତେବେଳେ ମୋର ବୟସ ୧୪/୧୫ ବର୍ଷ ହେବ ପ୍ରାୟ । ଷଷ୍ଠ ଶ୍ରେଣୀରେ ମୁଁ କେତୋଟି ଉପନ୍ୟାସ ପଢ଼ିଥିଲି । ସେଇ ମଧ୍ୟରୁ 'ଭୁଲିଲ ସତେ ସଖି' ଉପନ୍ୟାସଟିରେ ବର୍ଣ୍ଣିତ ସୁନ୍ଦରୀ ସ୍ତ୍ରୀଟିର ବେହେରା, ସତେ ଅବା ମୁଁ ଆମ ଏଇ ଶ୍ରେଣୀର ଛାତ୍ରୀଟିର ଦେହରେ ଦେଖିଲି । ତା'ର ଆଖିର ଚାହାଣିରେ ଗୋଟେ କେମିତି ନୂଆ ନୂଆ ଆମନ୍ତ୍ରଣ ଭାବ ଅନୁଭବ କଲି । ମୋତେ ସୁବିଧା ଦେଖି ସେ ଅନେଇ ମୁରୁକି

ମୁରୁକି ହସି ଦେବାରେ ମଧ୍ୟ ମୁଁ ଲକ୍ଷ୍ୟ କରୁଥାଏ । ମୋର କେତେକ ସାଙ୍ଗ ଏହା ଲକ୍ଷ୍ୟ କରୁଥିବାର ଦେଖି ଆମେ ଉଭୟ ସତର୍କ ହୋଇଯାଉ । ଏଇ ଝିଅଟି ପ୍ରତି ମୋର ଆକର୍ଷଣକୁ ଦେଖି ମୁଁ ଆଉ ମୋର ସହପାଠିନୀ ମଧ୍ୟରେ ଏଇ ସଂପର୍କ କେବଳ ଚାହାଁ ଚାହିଁରେ ସିମୀତ ଥିଲା । ବେଳେ ବେଳେ ଖାତା ଦେବା ନେବା ବେଳେ ଆଙ୍ଗୁଳି ଛୁଆଁ ଛୁଇଁ ଛଡ଼ା ଅଧିକ ଆଗେଇବା ସମ୍ଭବ ନଥିଲା । ତା' ଛଡ଼ା ପାଠଟା ମୋ ପାଇଁ ଥିଲା ଖୁବ୍ ଜରୁରୀ ।

ପରେ ପରେ ଏଇ ବିଦ୍ୟାଳୟକୁ ୪/୫ ଜଣ ଛାତ୍ରୀ ଆସି ନାମ ଲେଖାଇଥିଲେ । ସେଇ ଛାତ୍ରୀମାନଙ୍କ ସମ୍ପର୍କରେ ମୁଁ ମଧ୍ୟ ଆସିଥିଲି ।

ଥରକର କଥା । ବିଦ୍ୟାଳୟରେ ପ୍ରଧାନ ଶିକ୍ଷକଙ୍କ ସଭାପତିତ୍ୱରେ ଗୋଟିଏ ସଭା ହୋଇଥାଏ । ସେଠାରେ ବିଦ୍ୟାଳୟର ପତ୍ରିକା ସଂପାଦକ ପାଇଁ ନିର୍ବାଚନ କରାଗଲା । ମୋ ସପକ୍ଷରେ ପୁଅମାନଙ୍କ ସହ ସବୁ ଝିଅ ମଧ୍ୟ ସମର୍ଥନ ଦେଇଥିଲେ । ଝିଅମାନଙ୍କ ସମର୍ଥନ ଦେଖି ମୋର ପ୍ରତିଦ୍ୱନ୍ଦୀ ମାନେ ମୋ ପ୍ରତି ଯେମିତି ଈର୍ଷା କରୁଥିଲେ ମୁଁ ସେତିକି ପୁଲକିତ ହେଉଥାଏ ।

ମୁଁ ଅନୁଭବ କରୁଛି ଝିଅମାନଙ୍କର ଏଇ ସମର୍ଥନ ମୋତେ ଖୁବ୍ ଉତ୍ସାହ ଯୋଗାଇଥିଲା ହାଇସ୍କୁଲରେ ପ୍ରତି କାର୍ଯ୍ୟରେ ନେତୃତ୍ୱ ନେବା ପାଇଁ । ମୁଁ ଯଦି ଗୋଟେ ଦିନ ବିଦ୍ୟାଳୟରେ ଅନୁପସ୍ଥିତ ରହିଯାଏ ତେବେ ପ୍ରଧାନ ଶିକ୍ଷକ ମଧ୍ୟ ମୋତେ ଖୋଜା ଖୋଜି କରନ୍ତି । ଫଳରେ ଉଭୟ ଛାତ୍ର ଓ ଶିକ୍ଷକ ମହଲରେ ମୋର ଗୁରୁତ୍ୱ ଖୁବ୍ ବଢ଼ିଯାଏ ।

ହଁ, ପ୍ରଥମେ ଯେଉଁ ସହପାଠିନୀ କଥା କହୁଥିଲି ପରେ ଜାଣିଲି ଯେ ସେ ସହପାଠିନୀ ଜଣକ ଆମ ବିଦ୍ୟାଳୟର ଜଣେ ଶିକ୍ଷକଙ୍କ କଲେଜ ପଢୁଆ ପୁଅ ପ୍ରେମରେ ପଡ଼ି ଯାଇଛି । ଏଣୁ ମୋର ତା ପ୍ରତି ଥିବା ଆକର୍ଷଣଟି ଘୃଣାରେ ପରିଣତ ହୋଇ ଯାଇଥିଲା । ଆଉ ଏହାହିଁ ମୋ ଛାତ୍ର ଜୀବନ ପାଇଁ ମଙ୍ଗଳକରଥିଲା । ଫଳରେ ମୁଁ ମୋର ପାଠରେ ମନ ଧ୍ୟାନ ଦେଇ ପଢ଼ିଲି । ପରୀକ୍ଷାରେ ମଧ୍ୟ ଭଲ କରି ଚାଲିଲି ।

ଏହି ବିଦ୍ୟାଳୟ (ଏନ୍.ସି. ହାଇସ୍କୁଲ, ଯାଜପୁର ରୋଡ଼) ମୋ ଭଳି ଜଣେ ପ୍ରତିଭାବାନ ଛାତ୍ର ଆସିଥିବାରୁ ଶିକ୍ଷକ ଆଉ ପରିଚାଳନା ସମିତିର ସଦସ୍ୟମାନେ ମଧ୍ୟ ଖୁବ୍ ଖୁସି ହେଉଥିଲେ ।

ଆମେ ୧୯୫୮ ମସିହାରେ ଏଇ ବିଦ୍ୟାଳୟରୁ ତିନିଜଣ ଛାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲୁ । ମୋର ମନେ ଅଛି ସେବର୍ଷ ସାରା ଓଡ଼ିଶାରେ (ଖୁବ୍ ସମ୍ଭବ ମନେ ପଡୁଛି) ୨୮୭ ଜଣ ଛାତ୍ର ଛାତ୍ରୀ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ । ଅବଶ୍ୟ ସେତେବେଳେ ମେଟ୍ରିକ୍ ପରୀକ୍ଷାର୍ଥୀ ଖୁବ୍ ବେଶୀରେ ୭/୮ ହଜାର ଭିତରେ ଥିଲେ ।

ଏନ୍.ସି. ହାଇସ୍କୁଲରୁ ପୂର୍ବରୁ ଏକ ସମୟରେ ତିନିଜଣ ପ୍ରଥମ ଶ୍ରେଣୀରେ ପାଶ୍ କରିବା ସମ୍ଭବ ନଥିଲା । ଏଣୁ ଆମକୁ ସମସ୍ତେ ଖୁବ୍ ଭଲ ପାଇଲେ । ଆମେ ତିନିଜଣ ହେଲୁ ମୁଁ ଚକ୍ରଧର ପୃଷ୍ଟି ଆଉ ଗଜେନ୍ଦ୍ର ମିଶ୍ର । ଆମ ତିନି ଜଣ ଭିତରୁ ଚକ୍ରଧର ପୃଷ୍ଟି ଖୁବ୍ କମ୍ ପଢ଼ାପଢ଼ି କରି ବେଶୀ ମନେ ରଖେ । ଗଜେନ୍ଦ୍ର ମିଶ୍ର ଖୁବ୍ ଘୋଷାଘୋଷି କରେ । ଆମ୍ଭୁଁ ମୁଁ ଯେତିକି ଆବଶ୍ୟକ ସେତିକି ନିଶ୍ଚୟ ପଢ଼େ । ତେବେ ପାଠପଢ଼ା ପଢ଼ି ସଙ୍ଗେ ସଙ୍ଗେ ମୁଁ ବିଭିନ୍ନ ପତ୍ରପ୍ରତିକା ପଢ଼େ । କମନ୍ରୁମ୍‌ରେ ସଂପାଦକ, ମୀନା ମଣ୍ଡଳୀର ମିନା, ତର୍କ ସଭାରେ ଅଂଶ ଗ୍ରହଣ କରେ । ବିଦ୍ୟାଳୟର ମୁଁ ଥିଲି ଶ୍ରେଷ୍ଠ ଡିବେଟ୍‌ର ।

ମୋଟ ଉପରେ ପାଠ ଏବଂ ପାଠ୍ୟୋତ୍ତର ସମସ୍ତ ବିଷୟରେ ମୋର ପାରଦର୍ଶିତା ଥିଲା । କେବଳ କ୍ରୀଡ଼ା କ୍ଷେତ୍ରରେ ମୁଁ ମୋର ଉପଯୁକ୍ତ ପ୍ରତିନିଧିତ୍ୱ ନେବାରେ ସଫଳ ନଥିଲି । ତା'ର କାରଣ ହେଲା ମୁଁ ଘରୁ ଯା' ଆସ କରି ପାଦରେ ଚାଲି ଚାଲି ପ୍ରତିଦିନ (୧୦/୧୨) କିଲୋମିଟର) କ୍ଳାନ୍ତ ହୋଇ ପଡୁଥିଲି । ଏଇଠି ପ୍ରକାଶ ଥାଉକି ମୁଁ ରେଳ ଗାଡ଼ିରେ ଯା' ଆସ କଲେ ବି ଖେଳିବାର ସୁଯୋଗ ପାଉ ନଥାଏ । ଯେଉଁ ଦିନ ଗାଡ଼ି ଫେଲ ହୁଏ ଏବଂ ଯେଉଁ ଦିନ ସକାଳୁଆ ସ୍କୁଲ ଥାଏ ସେଦିନ ଚାଲି କରି ଯା' ଆସ କରିବାକୁ ପଡ଼ିଥାଏ । ଅବଶ୍ୟ ଏକାଦଶ ଶ୍ରେଣୀ ବେଳକୁ ବାପା ଗୋଟିଏ ସାଇକେଲ ମରାମତି କରି ମୋତେ ଯୋଗାଇଥିଲେ । ଏଣୁ ଶେଷ ବର୍ଷ ଟିକେ ପାଦଚଲା ପରିଶ୍ରମ ଲାଘବ ହୋଇଥିଲା ।.

ହଁ ମୋର ଅନ୍ୟ ଦୁଇ ପ୍ରଥମ ଶ୍ରେଣୀ ପାଶ୍ କରିଥିବା ସଙ୍ଗୀ ଇଂଜିନିୟର ହେଲେ । ସୁପରିଟେଣ୍ଡେଣ୍ଟ ଇଂଜିନିୟର ହୋଇ ଉଭୟ ଅବସର ନେଇ ଏବେ ଭୁବନେଶ୍ୱର ରମ୍ୟ ପ୍ରାସାଦରେ ଅଛନ୍ତି । ଆଉ ମୁଁ ଶିକ୍ଷା ବିଭାଗରୁ ୨ୟ ଶ୍ରେଣୀ ପଦରୁ ଅବସର ନେଇ ଘରେ ଅଛି । ଗାଁରେ ଛୋଟ କାଟିଆ କୋଠା ଖଣ୍ଡିକ ବି ଅଛି । ଅବଶ୍ୟ ପୁଅ ଅଶୋକ ଭୁବନେଶ୍ୱରରେ ଆପାର୍ଟମେଣ୍ଟଟିଏ କିଣିଛି । ତିନି ବଖରିଆ ଘରଟିରୁ ମୋ ଭାଗରେ ଗୋଟେ ବଖରା ମୋତେ ରହିବା ଶୋଇବାର ସୁଯୋଗ ଦେଇଛି ।

ମହାଭାଗ ଏଇ ଏନ୍.ସି. ହାଇସ୍କୁଲ ସମ୍ବନ୍ଧରେ ମୋର ଅନେକ କହିବାର ଅଛି । କାରଣ ଏଇଠି ମୁଁ ଛାତ୍ର ଥିଲି । ପୁଣି ଏଇଠି ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଇ ଶେଷରେ ଏଇ ଚାକିରୀରୁ ଅବସର ନେଲି । ଏଣୁ ପରେ ପରେ ସବୁ କହିବି । ଆଜି ପାଇଁ ଏଇଠୁ ବିଦାୟ ନେଉଛି । କ୍ଷୁଧାର ଆହ୍ୱାନ ଅସ୍ଥିର କଲାଣି ।

# ଯମପୁରୀର ଜମାନବନ୍ଦି -୧୩

ହଁ - ଛାମୁଁ, ଗତକାଲି କହିଥିଲି, ଏହି ଏନ୍.ସି. ହାଇସ୍କୁଲର ମୁଁ ଛାତ୍ର ଥିଲି । ପୁଣି ଏହି ଏନ୍.ସି. ହାଇସ୍କୁଲରେ ମୋର ରାଜ କାର୍ଯ୍ୟର ଶେଷ ଭାଗ ସାରି ଅବସର ନେଲି । ଏଣୁ ଏନ୍.ସି. ହାଇସ୍କୁଲ ଯାଜପୁର ରୋଡ୍ (ଆଜିକାଲି ବ୍ୟାସ ନଗର କୁହାଯାଉଛି) ଏଇଠି ମୋର କର୍ମଭୂମି, ତୀର୍ଥଭୂମି, ସାଧନାର ଭୂମି, ସିଦ୍ଧିର ଭୂମି ମଧ୍ୟ । ଛାତ୍ର ଥିଲି, ଶିଖିଲି ଶୃଙ୍ଖଳା । ଏଇଠି କେବଳ ପାଠ ପଢ଼ାରେ ମୋର କର୍ତ୍ତବ୍ୟ ସୀମାବଦ୍ଧ ନଥିଲା । ଏଇଠି ମୁଁ ଶିଖିଲି ଶୃଙ୍ଖଳା । ଏଇଠି ଶିଖିଲି ପତ୍ରପତ୍ରିକା ପାଇଁ ଲେଖାଲେଖି ଏଇଠି ମଧ୍ୟ ସାହିତ୍ୟ ସଂଗଠନ, ମୀନା ମଣ୍ଡଳୀ ଗଢ଼ି ଶିଖିଲି । ଏଇ ମୀନା ମଣ୍ଡଳୀର ନାମ ତତ୍‌କାଳୀନ ଜହୁରୀ ଭାଇ (ରାମ ପ୍ରସାଦ ମହାନ୍ତି)ଙ୍କ ପରାମର୍ଶରେ ରଖାଯାଇଥିଲା ଉନ୍ମେଷ - "ମୁଁ ଥିଲି ଏଇ ମୀନା ମଣ୍ଡଳୀର ମୀନା, ଅର୍ଥାତ୍ ମୁଖ୍ୟ ସୂତ୍ରଧର । ମୋର ମନେ ପଡୁଛି ମୋର ଅନେକ ଲେଖା ଏହି ସମୟରେ ମୀନା ବଜାରରେ ପ୍ରକାଶ ପାଉଥିଲା । ପ୍ରଥମ ଲେଖା ଥିଲା 'ନେଉଳ ଭାଇର ରାଇଜଫେରି' । ସେତେବେଳେ ମୀନାବଜାର ପ୍ରତି ଗୁରୁବାର ପ୍ରଜାତନ୍ତ୍ରର କ୍ରୋଡ଼ ପତ୍ର ଭାବେ ପ୍ରକାଶ ପାଉଥିଲା । ମୋର ମଧ୍ୟ ମନେ ପଡୁଛି ଆମ ଏନ୍.ସି. ହାଇସ୍କୁଲର ଦୁଇ ଜଣ ଛାତ୍ରୀ ଯିଏ କି ଉନ୍ମେଷ ମୀନା ମଣ୍ଡଳୀର ସଦସ୍ୟା ଥିଲେ ତାଙ୍କ ଲେଖା ମଧ୍ୟ ମୀନା ବଜାରରେ ପ୍ରକାଶ ପାଉଥିଲା । ସେ ଦୁଇ ଜଣ ଛାତ୍ରୀ ହେଉଛନ୍ତି କଲ୍ୟାଣୀ ସାହୁ ଏବଂ ଲିଲି ବାଇ ଦାସ, କଲ୍ୟାଣୀ ସାହୁଙ୍କ ଗପ 'ଟୁନାର ସ୍ୱପ୍ନ' ଏବଂ ଲିଲି ବାଇଙ୍କ କବିତା ପ୍ରକାଶ ପାଇଥିଲା ।

ଏହି ବିଦ୍ୟାଳୟ ମୋତେ ସାଂଗଠନିକ ଦକ୍ଷତା ଯୋଗାଇଥିଲା । ମୁଁ ବିଦ୍ୟାଳୟର ସର୍ବୋତ୍ତମ ଛାତ୍ର ଥିଲି । ଏଣୁ ବିଦ୍ୟାଳୟର ଛାତ୍ର ଛାତ୍ରୀଙ୍କ ପାଠ ପଢ଼ା ନିୟମିତ କରାଇବା, ବିଦ୍ୟାଳୟରେ ଶୃଙ୍ଖଳା ରକ୍ଷା କରିବା ଏପରିକି ଏହି ଅନୁଷ୍ଠାନର ନିକଟବର୍ତ୍ତୀ ବ୍ୟାସ ସରୋବର ମେଳାରେ ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ମୋରି ଉପରେ ନ୍ୟସ୍ତ କରାଯାଇଥିଲା । ମୁଁ ମୋର ସହପାଠୀ ଏବଂ ତଳ ଶ୍ରେଣୀର ବଛା ବଛା ପିଲାଙ୍କୁ ନେଇ ମେଳାରେ ଶୃଙ୍ଖଳାରକ୍ଷା, ବ୍ୟାସଙ୍କ କୁଣ୍ଡରୁ ତୀର୍ଥଯାତ୍ରୀଙ୍କୁ ଜଳ ଦାନ ଆଦିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲି ।

ଏହି ବିଦ୍ୟାଳୟରେ ମୁଁ କେବଳ ଲେଖାଲେଖି କରୁନଥିଲି, କବିତା, ଗଳ୍ପର ଆଦ୍ୟ ସ୍ଫୁରଣ ଆଗରୁ ଅର୍ଥାତ୍ ଷଷ୍ଠ ଶ୍ରେଣୀରୁ ହୋଇଥିଲା । ତେବେ ଅଭିନୟ କଳା

ପ୍ରତି ଆଗ୍ରହ ଏଇଠି ମୋର ଜନ୍ମ ହେଲା । ଏଥିପାଇଁ ମୋର ଶିକ୍ଷକ ଅଚ୍ୟୁତାନନ୍ଦ ପତିଙ୍କ ଅବଦାନ ଯଥେଷ୍ଟ । ଅଚ୍ୟୁତାନନ୍ଦ ପତି ହିଁ ମୋତେ ଗଳ୍ପ ଲେଖାଇବାର ପ୍ରଣାଳୀର ଖଡ଼ି ଛୁଆଁଇଥିଲେ ଓ ଅଭିନୟ ମଧ୍ୟ ଶିଖାଇଥିଲେ ।

ମୋର ମନେ ପଡୁଛି, ବିଦ୍ୟାଳୟର କୌଣସି ଏକ ବିଶେଷ ଉତ୍ସବରେ (ସମ୍ଭବତଃ ଏକ ନୂଆ ଗୃହ ଉଦ୍‌ଘାଟନ ଉତ୍ସବ) ଡକ୍ଟର ହରେକୃଷ୍ଣ ମହତାବ ଯୋଗ ଦେଇଥାନ୍ତି, ସେହି ଉତ୍ସବରେ ଆମ ବିଦ୍ୟାଳୟର ଛାତ୍ର ଛାତ୍ରୀ, ଏକାଂକିକା ଅଭିନୟ କରୁଥାନ୍ତି । ମୁଁ ତିନୋଟି ଭାଷା ଓଡ଼ିଆ, ହିନ୍ଦୀ ଓ ଇଂରାଜୀରେ ଭାଗ ନେଇଥିଲି । ସବୁଥିରେ ରିହିୟରସେଲରେ ମୁଁ ଖୁବ୍ ଭଲ ଅଭିନୟ କରୁଥାଏ ବୋଲି ଅଚ୍ୟୁତ ସାର ଖୁସି ଥାନ୍ତି । ଓଡ଼ିଆ ଏକାଂକିକାରେ ଗୋଟେ କମ୍ୟୁନିଷ୍ଟ ନେତା ଭାବେ ଭାଷଣ ଝାଡ଼ିବାରେ ଥାଏ । ହିନ୍ଦୀରେ ଶିବାଜୀ ଭୂମିକାରେ ମୋର ଲମ୍ବା ଦାଢ଼ି ଲଗା ଯାଇଥାଏ । ଏହା ପରେ ଅର୍ଥାତ୍ ହିନ୍ଦୀ ଅଭିନୟ ସରିଲେ ଇଂରାଜୀ ଭୂମିକା ନେବି । ମୁଁ ହୋଇଥାଏ ଫାଷ୍ଟ ଜେଣ୍ଟଲମେନ୍, ମୋର ସହଧର୍ମିଣୀ ଭୂମିକାରେ ଥିଲେ, ତପନ୍ ସିଲ୍, ତାଙ୍କୁ ମଧ୍ୟ ନନ୍ଦ ଡାକନ୍ତି ।

କିନ୍ତୁ ମଜାର କଥା ହେଲା ସମୟ ଅଭାବରୁ ହିନ୍ଦୀ ଏକାଂକିକାଟି ବାତିଲ୍ କରାଗଲା । ପରେ ପରେ ଇଂରାଜୀ ନାଟକ ଅଭିନିତ ହେବ । ଏଣୁ ପେଣ୍ଟିଂ ମାଷ୍ଟ୍ରେ ମୋର ଶିବାଜୀ ଭୂମିକାରୁ ଖୁବ୍ ତରବରରେ - ଜେଣ୍ଟଲମେନ୍ ଅବସ୍ଥାକୁ ଆଣିଲେ । ଏଣୁ ଟଣା ଝିଙ୍କା କରି ଦାଢ଼ିକୁ ଟାଣିବା ବେଳେ ଯଉଁ କଷ୍ଟ ପାଇଲି ଏବେ ମନେ ପଡ଼ି ହସ ମାଡୁଛି । ସେତେବେଳେ କିନ୍ତୁ ଆଖିରୁ ଲୁହ ଗଡ଼ି ପଡ଼ିଥିଲା ।

ମୋର ଇଂଲିଶ ଅଭିନୟ ଦେଖି ମୁଖ୍ୟ ଅତିଥି ଡକ୍ଟର ମହତାବ୍ ଖୁବ୍ ଖୁସି ହୋଇଥିଲେ । ସେ ଦିନ ଭଲ ଛାତ୍ର, ଭଲ ଅଭିନେତା ତଥା ଭଲ ତର୍କକାରୀ, (ଡିବେଟର) ଭାବେ ଅନେକ ଗୁଡ଼ିଏ ପୁରସ୍କାର ପାଇଥିଲି । ଏଣୁ ପରବର୍ତ୍ତୀ ଅବସ୍ଥାରେ ମୁଁ କବି ହୁଏ କି ଗୀତି କବି ହୁଏ, ଶିଶୁ ସାହିତ୍ୟିକ ହୁଏ କି, ନାଟ୍ୟକାର ହୁଏ ସେସବୁର ମୂଳଦୁଆ ବିଦ୍ୟାଳୟରେ ପଡ଼ିଛି । ଆଜି ଆକାଶବାଣୀ ଦୂରଦର୍ଶନ ମଞ୍ଚର ଜଣେ ସୌଖିନ ଗୀତିକାର, ନାଟ୍ୟକାର ତଥା ନାଟ୍ୟ ଶିଳ୍ପୀ ହେବା ପଛରେ ନିଶ୍ଚୟ ଏହି ବିଦ୍ୟାଳୟର ଅବଦାନ ରହିଛି । ଆଉ ମୋର ଗୁରୁ ଅଚ୍ୟୁତାନନ୍ଦ ପତି ଆଜି ଓଡ଼ିଶାର ଜଣେ ସୁପ୍ରତିଷ୍ଠିତ ଗାଳ୍ପିକ ସାହିତ୍ୟ ଏକାଡ଼େମୀର ସର୍ବୋଚ୍ଚ ସାରସ୍ୱତ ସମ୍ମାନ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର ପ୍ରାପ୍ତ । ଏଥିପାଇଁ ମୁଁ ତାଙ୍କ ଛାତ୍ର ହୋଇଥିବାରୁ ଖୁବ୍ ଗର୍ବିତ ।

ଆଜି ବି ସେ ମୋତେ ପ୍ରେରଣା ଯୋଗାନ୍ତି, ଉତ୍ସାହ ଦିଅନ୍ତି ଏପରିକି ମୋ ପଲ୍ଲୀଜୀବନ ଧର୍ମୀ ସାହିତ୍ୟ ପତ୍ରିକା 'ବୋଲେ ହୁଁଟି' ପାଇଁ ଅନୁରୋଧରେ ଗଳ୍ପ ଲେଖି ସେ ପଠାନ୍ତି । ଏଣୁ ସେ ମୋର ଶିକ୍ଷା ଗୁରୁ, ଦୀକ୍ଷା ଗୁରୁ ଏବଂ କଳାର ଗୁରୁ ।

ଏଇଠି ତଥା ପ୍ରଧାନ ଶିକ୍ଷକ ଉପେନ୍ଦ୍ର ଶତପଥିଙ୍କ ନାମ ସ୍ୱତଃ ମନକୁ ଆସେ । ସେ ମୋତେ ଏତେ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲେ ଯେ, ବିଦ୍ୟାଳୟର ପ୍ରତ୍ୟେକଟି ଭଲ ମନ୍ଦ, ହାନୀ ଲାଭ ସହ ମୋତେ ଜଡ଼ିତ କରୁଥିଲେ । ଏହାଦ୍ୱାରା ଶିକ୍ଷକ ମହଲରେ ମଧ୍ୟ ମୋର ଗୁରୁତ୍ୱ ବଢ଼ି ଯାଇଥିଲା ।

ବହୁଦିନ ପରେ କଣ୍ଟିଲୋ ଯାଇ ନୀଳମାଧବ ଦର୍ଶନ କରିଥିଲା ବେଳେ ମୋର ପ୍ରଧାନ ଗୁରୁଜୀ ଉପେନ୍ଦ୍ର ସାରଙ୍କୁ ଭେଟିଥିଲି । କାରଣ ତାଙ୍କ ଘର ଠିକ୍ ନୀଳମାଧବ ମନ୍ଦିରର ପଶ୍ଚିମ ପଟ ପାବଚ୍ଛକୁ ସ୍ପର୍ଶ କରିଛି । ସେତେବେଳକୁ ସେ, ଆପାତତଃ ଦୃଷ୍ଟିଶକ୍ତି ହରାଇ ବସିଥିଲେ । ତଥାପି ମୋତେ ପାଖରେ ପାଇ ଭାରି ଖୁସି ହେଲେ । ଏନ୍‌ସି ହାଇସ୍କୁଲ କଥା ପଚାରି ବୁଝିଲେ । ମୋ ଗାଁର ସତ୍ତାର ବାବୁଙ୍କ କଥା ପଚାରି ବୁଝିଲେ । ତାଙ୍କ ସମୟର ସହକର୍ମୀମାନଙ୍କ କଥା ବିଶେଷତଃ ଗୋପୀ ସାର ଓ ମୁକୁନ୍ଦ ସାରଙ୍କ କଥା ଗୋଟି ଗୋଟି କରି ବୁଝିଲେ ।

ମୋ ସତ୍ତାର ବାବୁଙ୍କ ସମ୍ବନ୍ଧରେ କହିବି ଏତିକି, ସେ ଜଣେ ଶତାୟୁ ବ୍ୟକ୍ତି । ବାଘ ସଙ୍ଗେ ଲଢ଼େଇ କରି ବାଘକୁ ହରେଇଥିବା ବ୍ୟକ୍ତି ସୁବାଷ ବୋଷଙ୍କ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତି ସେ ମୋର ପିତୃ ପ୍ରତିମ ମୋର ବାଲ୍ୟବନ୍ଧୁ, କାଲାର ପୋଷ୍ୟ ବାପା ।

ହଉ ଆଜି ଏତିକି ଥାଉ - ପରେ ଆଉ କିଛି ଶୁଣିବା ଛାମୁଙ୍କର ମଣୋହି ବେଳ ହେଲାଣି, କହିଲେ ଚିତ୍ରଗୁପ୍ତ ।



# ଯମପୁରୀର ଜମାନବନ୍ଦି -୧୪

ସତରେ ଚିତ୍ରଗୁପ୍ତ ଏଇ ଏନ.ସି. ହାଇସ୍କୁଲରେ ପଢୁଥିବା ସମୟରେ ମୋର ଛାତ୍ର ଜୀବନ ବଡ଼ ଘଟଣା ବହୁଳଥିଲା । ଗତକାଲି ତ ଆପଣ ଏହାର କିଛି କିଛି ସୂଚନା ପାଇଛନ୍ତି । ଆଜି ଆଉ କେତେକର ସୂଚନା ଦେବି । ତେବେ ସ୍ୱୟଂ ଯମରାଜ ଆସିଯାଆନ୍ତୁ ମୁଁ ମୋର ବକ୍ତବ୍ୟ ଆରମ୍ଭ କରିବି ।

× × × ଏଇତ ସ୍ୱୟଂ ସିଂହାସନାଧିପତି ଉପଗତ । ଏବେ ମୋର ବକ୍ତବ୍ୟ ଆରମ୍ଭ କରୁଛି ।

ହଁ– ଆଗନ୍ତୁକ ତୁମେ ତୁମର ସେହି ଛାତ୍ରଜୀବନ କଥା କହିଯାଅ ଖୁବ୍ ଇଣ୍ଟରେଷ୍ଟିଙ୍ଗ୍' । କହିଲେ ଯମରାଜ !

ହଁ, ମଣିମା– ଏଇ ବିଦ୍ୟାଳୟରୁ ମୁଁ ପ୍ରଥମେ ଗଣତନ୍ତ୍ର ଶାସନ ବ୍ୟବସ୍ଥାର ସ୍ୱାଦ ଚାଖିଥିଲି । ପ୍ରଧାନଶିକ୍ଷକ ଉପେନ୍ଦ୍ର ଶତପଥୀଙ୍କ ଦିଗ୍‌ଦର୍ଶନରେ ଆମ ଶ୍ରେଣୀରେ ଗୋଟିଏ ଛାତ୍ର କ୍ରିୟାନୁଷ୍ଠାନ କମିଟି ଗଠିତ ହୋଇଥିଲା । ଏଥିରେ କ୍ରୀଡ଼ାମନ୍ତ୍ରୀ, ସ୍ୱାସ୍ଥ୍ୟମନ୍ତ୍ରୀ, ସଂସ୍କୃତି ମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଆଉ ଜଣେ ମୁଖ୍ୟମନ୍ତ୍ରୀ ରହୁଥିଲେ । ମୁଁ ନିଜେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇଥିଲି । ଶୃଙ୍ଖଳା ବା ଗୃହ ବିଭାଗ ମଧ୍ୟ ମୁଁ ବୁଝାସୁଝା କରୁଥିଲି । କ୍ରୀଡ଼ାମନ୍ତ୍ରୀ ଆମ ଶ୍ରେଣୀର ଛାତ୍ର ଛାତ୍ରୀଙ୍କର କ୍ରୀଡ଼ା ପ୍ରତି ଅନୁରାଗ ବୃଦ୍ଧି କରିବାରେ ସହଯୋଗ କରୁଥିଲା । ଏହାଛଡ଼ା କ୍ରୀଡ଼ା ସାମଗ୍ରୀ ଯାହା ଦରକାର ପି.ଇ.ଟି.ଙ୍କ ଜରିଆରେ ପ୍ରଧାନଶିକ୍ଷକଙ୍କୁ ଜଣାଉଥିଲା । ସେହିପରି ଶିକ୍ଷାମନ୍ତ୍ରୀ ଶ୍ରେଣୀରେ କେଉଁ ଛାତ୍ର ଗୃହପାଠ କରି ଆସୁନି ତାକୁ ଲକ୍ଷ୍ୟକରି ତାଗିଦ୍ କରୁଥିଲା । ଏହିପରି ସମସ୍ତ ନିଜ ନିଜ କର୍ତ୍ତବ୍ୟ କରୁଥିଲେ । ଫଳରେ ଆମ ଶ୍ରେଣୀ ଏଇ ବିଦ୍ୟାଳୟର ଏକ ଆଦର୍ଶ ଶ୍ରେଣୀ ଭାବେ ନିଜକୁ ପ୍ରତିଷ୍ଠା କରିଥିଲା । ଏହାଦ୍ୱାରା ବିଦ୍ୟାଳୟର ବାତାବରଣ ମଧ୍ୟ ବେଶ୍ ସୁଶୃଙ୍ଖଳ ଥିଲା । ଏଥିପାଇଁ ଶିକ୍ଷକମାନେ ମଧ୍ୟ ପାଠ ପଢ଼ାଇବାକୁ ବେଶ୍ ପ୍ରସ୍ତୁତ ହୋଇ ଆସୁଥିଲେ ।

ଆମ ବିଦ୍ୟାଳୟର ମୁକୁନ୍ଦବାବୁ ଭୂଗୋଳ ଶିକ୍ଷାରେ ଏମିତି ଧୂରନ୍ଧର ଯେ, ସେ ଆମକୁ ଅନାଇ ପଛପଟରେ ପଏଣ୍ଟରରେ ମାନଚିତ୍ରର ଠିକ୍ ଠିକ୍ ଜାଗାରେ ନେଇ ସ୍ଥାନ ଦେଖାଇ ଦିଅନ୍ତି । ଏହାର ପ୍ରଭାବ ଛାତ୍ରଙ୍କ ଉପରେ ପଡ଼େ । ଏଣୁ ଆମ ସମୟରେ ଭୂଗୋଳ ପଢ଼ିବା ବେଳେ ଆଟଲାସ୍ ଦେଖି ପଢ଼ିବାର ଅଭ୍ୟାସ

ହୋଇଯାଇଥିଲା । ସେତେବେଳେ ମାତ୍ର ଦୁଇ ପ୍ରକାର ଆଟଲାସ୍ ମିଳୁଥିଲା । ଗୋଟିଏ ତାଜମହଲ ଆଟଲାସ୍ ଅନ୍ୟଟି ସ୍କୁଲ୍ ଆଟଲାସ୍ । ସ୍କୁଲ ଆଟଲାସ୍‌ଟି ଅପେକ୍ଷାକୃତ ଭଲଥିଲା । ସୁବିଧା କଥା ତ କହିଗଲି, ସେହିପରି ଆମ ସମୟରେ ଅନ୍ୟ ଗୋଟିଏ ଅସୁବିଧାର କଥା କହୁଛି । ଆମେ ଏହି ସ୍କୁଲରେ ପଢୁଥିବା ବେଳେ ଚାରିବର୍ଷ ଭିତରେ ବହୁଶିକ୍ଷକ ଆସିଲେ ଗଲେ । ଏଣୁ ପଢ଼ା ଉପରେ ଘୋର ପ୍ରତିକୂଳ ପ୍ରଭାବ ପଡ଼ିଲା । ପ୍ରଧାନଶିକ୍ଷକ କୁଣ୍ଡଳ ଭୀମସେନ୍ ପଟ୍ଟନାୟକ ମୋର ଅଷ୍ଟମ ଶ୍ରେଣୀ ବେଳେ ବିଦାୟ ନେଲେ । ପରେ ପରେ ଆସିଥିଲେ ଅଦ୍ୱୈତ ବଲ୍ଲଭ ଦାସ । ସେ ବଲ୍ୟାଣପୁର ଅଞ୍ଚଳର । ଖୁବ୍ ସୁନ୍ଦର ଇଂରାଜୀ ପଢ଼ାନ୍ତି । ସେ ମଧ କିଛିଦିନ ପରେ ବିଦାୟ ନେଲେ । ଆସିଲେ ଉପେନ୍ଦ୍ର ଶତପଥୀ । ସେ ଲ-ଗ୍ରାଜୁଏଟ୍ ଥିଲେ । ସେ ବୋଧେ ଦୁଇବର୍ଷ ରହିଲେ । ଆଉ ଏକାଦଶ ଶ୍ରେଣୀ ପରୀକ୍ଷା ପରେ ପରେ ସେ ବି ବିଦାୟ ନେଲେ ।

ସେହିପରି ବିଜ୍ଞାନ ଶିକ୍ଷକ ଲକ୍ଷ୍ମୀଧର ବାବୁ ଅଡିଟର ଚାକିରୀ ପାଇବା ପରେ ବିଦ୍ୟାଳୟ ଛାଡ଼ିଲେ ବୋଧେ ଆମର ନବମ ଶ୍ରେଣୀରେ ପରେ ପରେ ଆଉ ଜଣେ ଶିକ୍ଷକ ଆସି ଯୋଗଦେଲେ । ହେଲେ ସେ ପଢ଼ାଇ ପାରିଲେ ନାହିଁ । ଏଣୁ କିଛିଦିନ ପରେ ଯୋଗଦେଲେ ବୃନ୍ଦାବନ ଚନ୍ଦ୍ର ପଣ୍ଡା । ସେ ମହାଶୟ ଖୁବ୍ ଛାତ୍ରପ୍ରିୟ ଥିଲେ । ଏଣୁ ଅନ୍ୟ ଶିକ୍ଷକମାନେ ତାଙ୍କୁ ଈର୍ଷା କଲେ ଏପରିକି ପ୍ରଧାନଶିକ୍ଷକଙ୍କ ସଙ୍ଗେ ତାଙ୍କର ଭଲ ସଂପର୍କ ରହିଲା ନାହିଁ ।

ଏତେସବୁ ଉତ୍‌ଥାନ ପତନ ଭିତରେ ଆମର ପାଠପଢ଼ା ଚାଲିଥାଏ । ହଁ, ଏଇଠି ଗୋଟେ କଥା କହେ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ ମୋ ଉପରେ ବେଳେ ବେଳେ ଖୁବ୍ କ୍ଷୁବ୍ଧ ହୁଅନ୍ତି । କାହିଁକି ହୁଅନ୍ତି ମୁଁ ଜାଣି ପାରେନା । ଦିନେ ଦିନେ ମୋତେ ଅଯଥା କଥାରେ ବେଞ୍ଚ ଉପରେ ଠିଆ କରାଇ ଦିଅନ୍ତି । ଥରେ ମୋତେ ଭୀଷଣ ଅପମାନ ଲାଗିଲା । ଏଣୁ ତାଙ୍କ କଥାମାନି ଠିଆ ହେଲି ନାହିଁ । ଏଣୁ ସେ ରାଗରେ ମୋତେ ସାରାଦିନ ବେଞ୍ଚ ଉପରେ ଠିଆ କରିବାକୁ କହିଲେ ମୋତେ ଆହୁରି ବାଧିଲା । ସଂସ୍କୃତ ସାର୍ ତାଙ୍କ ପିରିୟଡ୍ ପରେ ଶ୍ରେଣୀ ଛାଡ଼ିଲେ । ମୁଁ ଦରଖାସ୍ତ ଦେଇ ଅବଶିଷ୍ଟ ପିରିୟଡତକ ଛୁଟିନେଇ ଘରକୁ ଚାଲିଆସିଲି । ଆଉ ବିଦ୍ୟାଳୟର ଅବଶିଷ୍ଟ ସମୟତକ ମୋତେ ବେଞ୍ଚ ଉପରେ ଠିଆ ହେବାର ଦଣ୍ଡରୁ ତାଙ୍କ ରକ୍ଷା ମିଳିଥିଲା । ମୁଁ ସିନା ଦଣ୍ଡରୁ ରକ୍ଷା ପାଇଲି । ହେଲେ ସଂସ୍କୃତ ସାର୍ (ହରିବଲ୍ଲଭ ବାବୁ)ଙ୍କ ରାଗ ମୋ ଉପରେ ପ୍ରାୟତଃ ମେଟ୍ରିକ୍ ପାଶ୍ ପର୍ଯ୍ୟନ୍ତ ରହିଲା । ସେ ମୋତେ ଉପଯୁକ୍ତ ସହଯୋଗ ଦେଲେ ନାହିଁ । ତଥାପି ମାଟ୍ରିକ୍ ପରୀକ୍ଷାରେ ମୋର ସଂସ୍କୃତରେ ୧୦୦ରୁ

୬୯ ଥିଲା । ଏହାଠୁ ଅଧିକ ନମ୍ବର ରଖି ପାରିଥାନ୍ତି ଯଦି ଠିକ୍ ଭାବେ ସହଯୋଗ ପାଇଥାନ୍ତି ଶିକ୍ଷକଙ୍କଠାରୁ ।

ଏହି ଛାତ୍ର ଜୀବନରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା– ଷଢେଇକଳା, ଖରସୁଆ ଓଡ଼ିଶାରେ ମିଶ୍ରଣ ପାଇଁ ଆନ୍ଦୋଳନ । ଛାତ୍ର ଆନ୍ଦୋଳନ ବେଳେ ମୋର ବୋଧେ ଅଷ୍ଟମ ଶ୍ରେଣୀ । ଏଣୁ ଏକାଦଶ ଶ୍ରେଣୀ ପିଲାଙ୍କ ନେତୃତ୍ୱରେ ଆମେ ଚାଲିଲୁ ରେଳ ଧାରଣାରେ ବସିବା ପାଇଁ । ସେହି ଗାଡ଼ି ଅଟକାଇବା ପାଇଁ । ବୋଧହୁଏ ସେ ସମୟରେ ସିକ୍ସ ଅପ୍ ଗାଡ଼ିକୁ ଆମେ ଅଟକାଇ ରଖିଲୁ । ସେତେବେଳେ ଆଜିଭଳି ଏତେ ଯାତ୍ରୀବାହୀ ଗାଡ଼ି ଯା'ଆସ କରୁନଥିଲା । ଦିନବେଳା ମୁଖ୍ୟତଃ ଏଇ ସିକସ୍ ଅପ୍ ଆଉ ଫାଇଭଡାଉନ୍ ଚଳପ୍ରଚଳ ହେଉଥିଲା । ଏଣୁ ଏଇ ଗାଡ଼ିକୁ ଅଟକାଇବା ପାଇଁ ରେଳ ଧାରଣାରେ ବସିଲୁ । ନେତୃତ୍ୱ ନେଇଥାନ୍ତି ପୂର୍ଣ୍ଣ ମହାପାତ୍ର, ନିତ୍ୟାନନ୍ଦ ବଳ, ବିଜୟାନନ୍ଦ ପଟ୍ଟନାୟକ । ହଁ କହିରଖେ, ବିଜୟ ପଟ୍ଟନାୟକ ଆମ ଏମ୍.ଏଲ୍.ଏ. ମଦନ ପଟ୍ଟନାୟକଙ୍କ ପୁଅ ।



# ଯମପୁରୀର ଜମାନବନ୍ଦି -୧୫

ଚିତ୍ରଗୁପ୍ତ– ଆଗନ୍ତୁକ ! ତୁମର ସେଇ ଏନ.ସି. ହାଇସ୍କୁଲର ଛାତ୍ରଜୀବନ ବିଷୟରେ ଆଉ କିଛି କଥା ଛାଡ଼ିଗଲା ପରି ମନେହେଉଛି !

''ହଁ ମହାଶୟ, ଯେତିକି ଯେତେବେଳେ ମନେ ପଡୁଛି କହିଦେଉଛି । ଗତକାଲି ଏଠାରୁ ଯିବା ପରେ ମୋର ଆଉ ଗୋଟିଏ କଥା ମଡ଼େପଡ଼ିଛି ।

ଚିତ୍ରଗୁପ୍ତ– କ'ଣ ତିନୋଟି ବହି କଥାର !

''ହଁ, ମହାଶୟ, ଛାମୁଁ ବି ଆସି ସିଂହାସନରେ ବସିଗଲେଣି । ଏବେ ମୁଁ ସେଇ ତିନୋଟି ବହି କଥା ଉଲ୍ଲେଖ କରୁଛି ।

ନିମାଇଁ ଚରଣ ଦାସ ହେଉଛନ୍ତି ଏହି ତିନୋଟି ବହିର ସଂଗ୍ରାହକ । ବହି ତିନୋଟି ଇଂରାଜୀରେ । ସେଗୁଡ଼ିକ ନାଆଁ ବି ମନେ ଅଛି । (a) A Book of Words, (b) A Short cut to Translation, (c) A book of Idioms and Phrases.

ବହି ତିନୋଟିର ଦାମ୍ ପ୍ରତ୍ୟେକଟି ଟଙ୍କାଏ ଲେଖା । କିନ୍ତୁ ତିନିଖଣ୍ଡ ବହି କିଣିଲେ ମାତ୍ର ଦୁଇ ଟଙ୍କା ଦେବାକୁ ପଡ଼ିବ ।

ଇଯେ ବୋଧେ ୧୯୫୪-୫୫ ମସିହାର କଥା । ସେତେବେଳେ ଯେଉଁ ବହିର ଦାମ୍ ଏକ ଟଙ୍କା ଥିଲା । ଆଜି ତାହା ଦଶଟଙ୍କାରୁ ଅଧିକ ହେବ ।

ତେବେ ଏହି ବହି ବିଷୟରେ କହିବା ପୂର୍ବରୁ Compiler ନିମାଇଁ ବାବୁଙ୍କ କଥା ଟିକେ କହୁଛି । ଇଯେ ହେଉଛନ୍ତି ଜଣେ ଖୁବ୍ ଉଦାର ଆଉ ମିଷ୍ଟ ଭାଷୀ ଲୋକ । ପ୍ରତ୍ୟେକ ସ୍କୁଲକୁ ସେ ଯାଇ ପିଲାମାନଙ୍କୁ ବହି ସମ୍ବନ୍ଧରେ ବୁଝାନ୍ତି । ପିଲାଏ ମଧ୍ୟ ବହିଗୁଡ଼ିକ ସମ୍ବନ୍ଧରେ ଜାଣି କିଣିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ଏଇ ମହାଶୟକଙ୍କର ଝିଅ ବିଦ୍ୟୁତ୍‌ପ୍ରଭା ଦାସ ମଧ୍ୟ ଜଣେ ଥିଲେ ଶିଶୁ ସାହିତ୍ୟିକା । ପରେ ସେ ଶ୍ରୀ ଅରବିନ୍ଦଙ୍କ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଦର୍ଶନ ପ୍ରଚାର ଓ ପ୍ରସାରରେ ଜୀବନ ବିତାଇଥିଲେ ।

ଯମରାଜ– ଅନ୍ୟ ପ୍ରସଙ୍ଗକୁ ଏତେ ଯାଅ ନାହିଁ ଆଗନ୍ତୁକ । ନିଜ କଥା ହିଁ କୁହ ।

ଚିତ୍ରଗୁପ୍ତ– ନାଇ ଛାମୁ ଏଥିସହ ଏହାର ସମ୍ପର୍କ ଅଛି ।

ଯମରାଜ– ତେବେ କହିଚାଲ ଆଗନ୍ତୁକ । ଚିତ୍ରଗୁପ୍ତ ମଧ୍ୟ ତୁମ କଥା ଶୁଣିବାକୁ ବେଶ୍ ଆଗ୍ରହୀ ଜଣାପଡୁଛି ।

ହଁ ମହାଶୟ ଏଇ ବିଦ୍ୟୁତ୍‌ପ୍ରଭା ଦାସଙ୍କ ରଚନାକୁ ମୁଁ ଖୁବ୍ ପସନ୍ଦ କରେ । ଆପଣ ଜାଣିଛନ୍ତି କି ନା ମୁଁ ଜାଣେନା । ମୀନାବଜାର ବୋଲି ଏକ ଶିଶୁ ଓ କିଶୋର ପତ୍ରିକା ରହିଛି । ଏଇ ପତ୍ରିକାରେ ବିଦ୍ୟୁତ୍‌ପ୍ରଭା ଦେବୀ କବିତା ଲେଖନ୍ତି ଆଉ ମୁଁ ମଧ୍ୟ ଲେଖେ । ସେଇ ଦିନଠୁଁ ତାଙ୍କୁ ମୁଁ ଦେଖି ନଥିଲେ ବି ଜାଣେ । ବହିଦିନ ପରେ ମୁଁ ଯେତେବେଳେ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ (ଡୋଲିପୁର)ରେ ଚାକିରି କରିଥିଲି । ସେଇ ସମୟରେ ଏକ ଅରବିନ୍ଦ ପାଠଚକ୍ର ସମାରୋହରେ ସେଇ ମହାଶୟଙ୍କ ସହ ଦେଖା ହୋଇଥିଲା । ପରେ ବହୁ ଦିନ ପରେ ତାଙ୍କ ସମ୍ବନ୍ଧରେ ଅନେକ କଥା, କଥା-କବିତା-କବିତା ପତ୍ରିକାରୁ ଜାଣିବାକୁ ପାଇଥିଲି ।

ଛାଡ଼ ସେ କଥା– ତେବେ ତୁମେ ସେ ବହି ତିନୋଟି କଥା କୁହ । କହିଲେ ଚିତ୍ରଗୁପ୍ତ !

ହଁ ମହାଶୟ କହୁଛି । ଖୁବ୍ ସଂକ୍ଷେପରେ ଏକଥା କହୁଛି । ବହି ତିନୋଟିକୁ ପ୍ରତ୍ୟେକ ପିଲା କିଣି ରଖିଲେ ଖୁବ୍ ଭଲ ହେବ ବୋଲି ଇଂରେଜୀ ଶିକ୍ଷକ ଗୋପୀନାଥ ରାଉତ ପରାମର୍ଶ ଦେଲେ । ବିଶେଷତଃ ମୁଁ ବହି ତିନିଖଣ୍ଡ ରଖିବା ଉଚିତ ବୋଲି ସେ ଜୋରଦେଲେ ।

ମୁଁ ଘରକୁ ଆସିଲି । ହେଲେ ଆମର ଆର୍ଥିକ ଅବସ୍ଥା ସେତେବେଳେ ବହୁତ ଖରାପ । ଦୁଇଟଙ୍କା ଦେଇ ବହି କିଣିବା ପାଇଁ ମୋ ପକ୍ଷେ ସମ୍ଭବ ନଥାଏ । ବହୁ କନ୍ଦାକଟା ପରେ ମୁଁ ମାଆ ଠାରୁ ଟଙ୍କାଟିଏ ନେଲି ।

ହଁ, ଏଇଠି ମୋର ଆର୍ଥିକ ଅନାଟନ କଥାଟି ନକହିଲେ ଭୁଲ ହେବ । ମୁଁ ଅଷ୍ଟମ ଶ୍ରେଣୀରେ କଷ୍ଟେମଷ୍ଟେ ନାଆଁ ଲେଖାଇଥିଲି । ଆମ ଗ୍ରାମରେ ସତ୍ତାର ହଜାରୀ ଥିଲେ ଏଇ.ଏନ୍.ସି. ହାଇସ୍କୁଲ ପରିଚାଳନା କମିଟି ମେମ୍ବର । ସେ କୁହାବୋଲା କରି ମୋତେ Poor boys fundରୁ ମାସିକ ଏକ ଟଙ୍କା କରି ମିଳିବାର ବ୍ୟବସ୍ଥା କରିଥିଲେ । ଏହାଛଡ଼ା ଯାଜପୁର ରୋଡ଼ରେ ଜଣେ ବ୍ୟବସାୟୀ ନୃସିଂହ ଚରଣ ପରିଡ଼ାଙ୍କ ଠାରୁ ଏବଂ ବାବାଜୀବାବୁଙ୍କ ଠାରୁ ଟଙ୍କାଏ ଲେଖା ମାଗିକରି ଆଣି ମୋ ସ୍କୁଲ ଦରମା ଦେବା କାମ ଚଳାଏ । ସେତେବେଳେ ଆଜିକାଲି ପରି ଦରମା ଫ୍ରି ନଥିଲା । ଅଷ୍ଟମ ଶ୍ରେଣୀରେ ବୋଧେ ଦରମା ଫିସ୍ ଥିଲା ଚାରିଟଙ୍କା କିମ୍ବା ତିନିଟଙ୍କା । ବାବାଜୀବାବୁ ନିୟମିତ ଭାବେ ଥରକରେ ଟଙ୍କାଏ ଲେଖା ଦିଅନ୍ତି । କିନ୍ତୁ ନୃସିଂହ ପରିଡ଼ାଙ୍କ ପାଖକୁ ମାଗିବା ପାଇଁ ମୋତେ ଦୁଇତିନିଥର ଯିବାକୁ ପଡ଼େ । ଏଇ ଟଙ୍କାଟି ପାଇଁ । ଭାରି ଲାଜ ବି ମାଡୁଥାଏ ଏଇ ମାଗିବାକୁ ।

ହଉ ତୁମେ ବିଳମ୍ବ ନକରି ସେଇ ବହି ତିନିଖଣ୍ଡି କଥା କୁହ । ଚେତେଇ ଦେଲେ ଚିତ୍ରଗୁପ୍ତ ।

ମୁଁ ଆଜ୍ଞା କହୁଛି । ଟଙ୍କାଟିଏ ନେଇ ମୁଁ Books of words ବହିଟି ଆଣିଲି । ଅନ୍ୟ ଦୁଇଖଣ୍ଡି ବହି କିଣି ପାରିଲିନି । କିନ୍ତୁ A short cut to Translation ବହିଟି ଜଣଙ୍କଠୁ ଆଣି ତାକୁ ଗୋଟେ ଖାତାରେ ଟିପି ରଖିଲି । ସେ ବହି ଖଣ୍ଡିକ ଆଉ ଟିପା ହୋଇଥିବା Translation ବହିଖଣ୍ଡ ଏ ପର୍ଯ୍ୟନ୍ତ ମୋ ପାଖରେ ଅଛି । ନବମ ଶ୍ରେଣୀରେ ମୋ ନାତୁଣୀ ପଢୁଛି । ତାକୁ ମୁଁ ଏ ବହି ଦେଖାଇ କହେ– ଦେଖ କେତେ କଷ୍ଟରେ ମୁଁ ପାଠ ପଢ଼ୁଥିଲି । ଏବେ ତୁମକୁ ସବୁ ସୁବିଧା ଯୋଗାଇ ଦେଲେ ବି ତୁମେ ଭଲ ପାଠ ପଢୁନ । ତୁମ ପାଇଁ ଟିଉସନରେ ମୁଁ ମାସକୁ ଶହ ଶହ ଟଙ୍କା ଖର୍ଚ୍ଚ କରୁଛି । ହେଲେ ମୁଁ ଟିଉସନ ହେବାକୁ ଆଦୌ ପସନ୍ଦ କରୁନଥିଲି । ଏପରିକି ହାଇସ୍କୁଲର ପ୍ରଧାନଶିକ୍ଷକ ଉପେନ୍ଦ୍ର ଶତପଥି ମୋ ପାଇଁ ମାଗଣା ଖାଇବା ଆଉ ପଢ଼ିବାର ବ୍ୟବସ୍ଥା କରିଥିଲେ ବି ମୁଁ ହଷ୍ଟେଲରେ ନରହି ଘରକୁ ଚାଲି ଚାଲି ପଳେଇ ଆସେ । ଘରେ ପଢ଼ାପଢ଼ିରେ ଖୁବ୍ ଆନନ୍ଦ । ମୋଟ ଉପରେ ଶିକ୍ଷକଙ୍କ ବିନା ସାହାଯ୍ୟରେ ମୁଁ ଘରେ ପ୍ରାୟତଃ ପଢ଼ି ବୁଝିପାରେ ଏବଂ ପରୀକ୍ଷାରେ ବି ଭଲ କରେ ।

ହଁ ସେଇ ବହି ତିନିଖଣ୍ଡି କଥା ପ୍ରାୟତଃ ଏତିକି । ଗୋପୀବାବୁ ଖୁବ୍ ମନ ଖରାପ କଲେ ମୁଁ ତିନିଖଣ୍ଡି ବହିରୁ ମାତ୍ର ଖଣ୍ଡିଏ କିଣିଲି ବୋଲି । ସେ ମହାଶୟ ବହିର ଲେଖକ ନିମାଇଁ ବାବୁଙ୍କୁ ମୋ ବିଷୟରେ କହିଲେ ବି ନିମାଇଁ ବାବୁ ମୋତେ ଉଦାରତା ଦେଖାଇ ଅନ୍ୟ ବହିଖଣ୍ଡି ମାଗଣାରେ ଦେଲେ ନାହିଁ । ଏହାଛଡ଼ା ମୁଁ ମଧ ମନେ ମନେ ଭାବୁଥାଏ ଗୋପୀସାର୍ ମୋ ପାଇଁ ଅନ୍ୟ ଦୁଇଖଣ୍ଡ ବହି କିଣି ଦିଅନ୍ତେନି !

ହଉ ଛାଡ଼ ସେକଥା– ତୁମ ସାର୍ ଗୋପୀବାବୁ ଆଉ ସେ ଲେଖକ ନିମାଇଁ ବାବୁ ଉଭୟ ଆଉ ମର୍ତ୍ତ୍ୟରେ ନାହାନ୍ତି । କହିଲେ ଚିତ୍ରଗୁପ୍ତ !

ମୁଁ ମଧ ସେ କଥା ଜାଣେ । ମୁଁ ତ ନିଜେ ମର୍ତ୍ତ୍ୟପୁରକୁ ଆଉ ଫେରିବିକି ନା– ବେଳେ ବେଳେ ସନ୍ଦେହ ଆସୁଛି ।

କାହିଁକି ତୁମକୁ କ'ଣ ଏଠି ରହିବା ଖାଇବାରେ କିଛି ଅସୁବିଧା ହେଉଛି ଆଗନ୍ତୁକ ? ପଚାରିଲେ ଯମରାଜ !

ମୁଁ ତଳକୁ ମୁହଁପୋତି କେବଳ ଏତିକି କହିଲି– ମୋ ପୃଥିବୀ ମୋ ଦେଶ ଭାରତ, ଆଉ ମୋ ରାଜ୍ୟ ଓଡ଼ିଶାଠୁ ବଳି ସୁନ୍ଦର ଜାଗା ଆଉ କେଉଁଠି ନାହିଁ ।



# ଯମପୁରୀର ଜମାନବନ୍ଦି -୧୬

ଚିତ୍ରଗୁପ୍ତ– ତୁମ ହାଇସ୍କୁଲର ଛାତ୍ରଜୀବନ କଥା ବୋଧେ ସଦାବେଳେ ମନେପଡ଼େ ଆଗନ୍ତୁକ ।

ଆଗନ୍ତୁକ– ସତରେ ମନ୍ତ୍ରୀ ମହାଶୟ, ୧୯୫୪ରୁ ୧୯୫୮ ଏହି ଚାରିବର୍ଷ ମୋ ଜୀବନର ସବୁଠୁ ସୁଖ ଦୁଃଖ ସ୍ମୃତି ବିଜଡ଼ିତ ସମୟ । ତାଛଡ଼ା ହାଇସ୍କୁଲର ଛାତ୍ର ଜୀବନ ହିଁ ସବୁଠୁ ଆନନ୍ଦଦାୟକ କାରଣ ହାଇସ୍କୁଲର ପୂର୍ବ ଅର୍ଥାତ୍ ପ୍ରାଇମେରୀ ଓ ମାଇନର ସ୍କୁଲରେ ବାଲ୍ୟ ଓ କୈଶୋର ଜୀବନ ଥାଏ । ହାଇସ୍କୁଲରେ ସାଧାରଣତଃ ୧୨ ବର୍ଷରୁ ୧୬ବର୍ଷ ଯାଏ କଟୁଥିବାର କୈଶୋର ପର ଅବସ୍ଥା ଏବଂ ପୌଗଣ୍ଡ ପ୍ରାରମ୍ଭିକ ଅବସ୍ଥା ମଣିଷ ଜୀବନରେ ଆସି ପାରିବ । ପହିଲି ଯୌବନର କାଉଁରୀ ପରଶର ନୂଆ ନୂଆ ଅନୁଭବ ମଣିଷ ମନରେ ବେଶ୍ ଆମୋଦ ଆଣିଦିଏ । ମନୋବିଜ୍ଞାନ ଦୃଷ୍ଟିରୁ ଏହି ସମୟଟା ପ୍ରି ଆଡୋଲିସେନ୍ସ । ଏଣୁ ମନେ ମନେ ନିଜକୁ ଫିଲ୍ମ ହିରୋ ଭଳି ରହିବାର ବେଳ ଇଯେ । ଦିବା ସ୍ୱପ୍ନରେ ହଜିବାର ସମୟ ଇଯେ !

ଚିତ୍ରଗୁପ୍ତ– ତୁମେ ବି ତ ଦିବାସ୍ୱପ୍ନ ଦେଖୁଥିଲା ସେଇ ଝିଅଟିକୁ ନେଇ !

ଆଗନ୍ତୁକ– ହଁ ମନ୍ତ୍ରୀ ମହାଶୟ ଆପଣଙ୍କ ପାଞ୍ଜିବିଡ଼ାରେ ତ ସବୁକଥା ଲେଖା ହୋଇ ରହିଛି । ସେ ଝିଅଟିକୁ ମୁଁ ମନେ ମନେ ଭଲ ପାଉଥିଲି । ଆଉ ସେ ଝିଅ ଟିକେ ମୋ ପ୍ରତି ଆକୃଷ୍ଟ ଥିଲା ଏକଥା ବୁଝିବାର ବୟସ ମଧ୍ୟ ହୋଇସାରିଥିଲା ।

ଯମରାଜ– (ପ୍ରବେଶ)– କେଉଁ ଝିଅ କଥାପଡ଼ିଛି ଆଗନ୍ତୁକ !

ଚିତ୍ରଗୁପ୍ତ– ଛାମୁ ସେଇ ତାଙ୍କ ସହପାଠିନୀ କଥା ।

ଆଗନ୍ତୁକ– ସେ ଏକମାତ୍ର ଝିଅଭାବେ ଆମ ଶ୍ରେଣୀରେ ପଢୁଥିଲା । ସେତେବେଳେ ଆମ ହାଇସ୍କୁଲ ସାର୍‌ମାନେ ରହିବା ପାଇଁ ଘର ବ୍ୟବସ୍ଥା ଥାଏ । ଏବେ ସେଠାରେ ନୂଆ ଘର ହୋଇ ଶଶିଭୂଷଣ ବାଳିକା ବିଦ୍ୟାଳୟ ଚାଲିଛି । ସେଇ ବାଳିକା ହାଇସ୍କୁଲ ପଛପଟର ଜାଗାକୁ ଅନ୍ୟମାନେ ଜବର ଦଖଲ ମଧ୍ୟ କରିଗଲେଣି ।

ପରବର୍ତ୍ତୀ ଅବସ୍ଥାରେ ଏଇ ଏନସି ହାଇସ୍କୁଲରେ ମୁଁ ପ୍ରଧାନ ଶିକ୍ଷକ ହୋଇ ସେ ଜାଗାକୁ ପୁନରୁଦ୍ଧାର କରିବାକୁ ଚେଷ୍ଟା କରି ମଧ୍ୟ ବିଫଳ ହୋଇଛି । ତେବେ ସେ ସବୁକଥା ପରେ କହିବି ।

ଚିତ୍ରଗୁପ୍ତ– ହଁ ତୁମେ କଥାରେ ଏଣୁତେଣୁ ଫାଳ ନ ପୂରାଇ ସିଧାସଳଖ କହିଚାଲିଲ ।

ଆଗନ୍ତୁକ– କହୁଛି ଆଜ୍ଞା କହୁଛି । ସେଇ ସାର୍‌ମାନଙ୍କ ଭିତରୁ ଆଗରୁ ଇଂରାଜୀ ପଢ଼ାଉଥିବା ସାର୍‌ଙ୍କ କଥା କହୁଛି । ତାଙ୍କର ବି ପୁଅ ମଧ୍ୟ ଥାଆନ୍ତି । ସେ ବୋଧେ କଲେଜରେ ପଢୁଥାଆନ୍ତି କିମ୍ବା ଏକାଦଶ ଶ୍ରେଣୀରେ ପଢ଼ି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଶୁଣିବାକୁ ପାଇଲି ମୋର ସେଇ ସହପାଠିନୀକୁ ସେ ଖୁବ୍ [illegible] କରୁଛନ୍ତି । ବୟସ ଦୃଷ୍ଟିରୁ ଜଣେ ଯୁବତୀର ଚାହିଦା ପୂରଣ ପାଇଁ ମୋ ଠାରୁ [illegible] ସାର୍‌ଙ୍କ ପୁଅ ଯେ ଅଧିକ ଉପଯୁକ୍ତ ଏକଥା ବୋଧେ ମୋ ସହପାଠିନୀ ବେଶୀ ଅନୁଭବ କରିଥିଲା । ତା'ଛଡ଼ା ଝିଅମାନେ ଏକ୍ଷେତ୍ରରେ ବଡ଼ ଚାଲାଖ । ସେମାନେ ସହଜରେ ଅନ୍ୟର ଆଖିର ଭାଷା ବିଶେଷତଃ ଅନ୍ୟମାନଙ୍କର ପ୍ରେମର ଇସାରାକୁ ସହଜରେ ବୁଝିପାରନ୍ତି । ଏଣୁ ମୁଁ ପରେ ଜାଣିପାରିଲି ମୋର ସେଇ ସହପାଠିନୀଟି ଦେହ ମନ ସବୁ ସମର୍ପଣ କରି ଦେଲାଣି ସେଇ ସାର୍‌ଙ୍କ ପୁଅ ପାଖରେ । ଏଣୁ ମୋ ମନଟା ବଡ଼ ଖରାପ ହେଲା । ହେଲେ ଈର୍ଷା ବା ରାଗ ଆସିଥିବା କଥା ମନେ ପଡୁନି ।

ତେବେ ଛାଡ଼ ସେକଥା । ସେ ଝିଅ ମେଟ୍ରିକ୍ ପରୀକ୍ଷା ନଦେଇ ବିଦ୍ୟାଳୟ ଛାଡ଼ି ଅବେଳରେ ଚାଲିଯିବା ପଛରେ ବୋଧେ ଏଇ ପ୍ରେମ ସଂପର୍କ ଏବଂ ତଦ୍‌ଜନିତ କୁପରିଣତି (ସମ୍ଭବତଃ କୁମାରୀ ମାତୃତ୍ୱ ଦାୟୀ ବୋଲି ଜଣାଗଲା ।

ଚିତ୍ରଗୁପ୍ତ– ହଁ କେଇଦିନ ପରେ ସେ ଝିଅଟି ମରିଗଲା ମଧ୍ୟ ।

ଆଗନ୍ତୁକ– ଆତ୍ମହତ୍ୟା ନୁହେଁ ମନ୍ତ୍ରୀ ମହାଶୟ ।

ଚିତ୍ରଗୁପ୍ତ– ତୁମର ସେ ସବୁ କଥା ଜାଣି ଲାଭ ନାହିଁ । ଏତିକି ଜାଣ ତୁମ ସାର୍‌ଙ୍କ ପୁଅ ହିଁ ତାକୁ ବିପଥଗାମୀ କରିବାରେ ସହାୟକ ହୋଇଥିଲା । ଆଉ ତାର କୁପରିଣତିରେ ଝିଅଟି ନର୍କବାସୀ ହେଲା । ହଉ ଛାଡ଼ ସେକଥା । ଏବେ ତୁମେ ତୁମକଥା କହିଚାଲ ।

ଆଗନ୍ତୁକ– ହଁ ମନ୍ତ୍ରୀ ମହାଶୟ ଏହିପରି ଚାରିବର୍ଷ ମୋର ହାଇସ୍କୁଲ ଜୀବନର ଅବସାନ ଘଟିଲା । ମୁଁ ଅବଶ୍ୟ ଭଲ ଭାବର ମେଟ୍ରିକ୍ ପାଶ୍ କଲି । ପ୍ରଥମ ଶ୍ରେଣୀରେ ଆମେ ତିନିଜଣ ପାଶ୍ କଲୁ । ତିନିଜଣଙ୍କ ଭିତରେ ମୁଁ ସବୁଠୁ ବେଶୀ ନମ୍ବର ମଧ୍ୟ ରଖିଥିଲି ।

ପରୀକ୍ଷା ଫଳ ଜାଣିବା ପାଇଁ ମୁଁ ଯାଜପୁର ରୋଡ଼ ଯାଇଥିଲି । ଖଣ୍ଡିଏ ଗଣତନ୍ତ୍ର ଖବରକାଗଜ କିଣିଲି । କାଗଜଟି ଫାଳିକିଆ ଥିଲା । ସୌଭାଗ୍ୟକୁ ତହିଁରେ ଆମ ବିଦ୍ୟାଳୟର ପରୀକ୍ଷା ଫଳ ମଧ୍ୟ ଥିଲା । ପରୀକ୍ଷାଫଳ ଦେଖି ମୁଁ ଖୁସି ହେଲି ସତ । ମାତ୍ର ମୋର ବାଲ୍ୟବନ୍ଧୁ ସହପାଠୀ କାଲା (ହଜାରୀ ଅବଦୁଲ ବାରି) ତୃତୀୟ ଶ୍ରେଣୀରେ ପାଶ୍ କରିଥିବାରୁ ଆମେ ଦୁହେଁ ବସି ଏଇ ପରୀକ୍ଷା ଫଳର ଆନନ୍ଦ ଉପଭୋଗ କରିପାରିଲୁନି ।

ଚିତ୍ରଗୁପ୍ତ– ଏଇ ପରୀକ୍ଷା ଫଳ ସହ ତୁମ ଜୀବନର ଆଉ ଏକ ପରୀକ୍ଷାର ଘଟଣା ମିଶିକରି ରହିଛି ବୋଧେ ।

ଆଗନ୍ତୁକ– ମୁଁ ଆପଣଙ୍କ ଇଙ୍ଗିତ ବୁଝୁଛି ମନ୍ତ୍ରୀ ମହାଶୟ । ମୋ ମ୍ୟାଟ୍ରିକ୍ ପରୀକ୍ଷା ଫଳ ବାହାରିବା ଦିନ ହିଁ ମୋର ବିବାହ ପ୍ରସ୍ତାବର ନିଷ୍ପତ୍ତି ନିଆ ସରିଥିଲା । ମୋର ଭାବୀ ଶ୍ୱଶୁରଙ୍କ ଗୁମାସ୍ତା ଆସି ଆମଘରେ ପହଞ୍ଚିଥାନ୍ତି । ମୋର ଜଣେ ମାମୁଁ ପୁଅ ଭାଇ ଆମଘରେ ଥାଆନ୍ତି । କାରଣ ସେ ଘରେ ରହି ପାଠ ପଢ଼ିପାରୁ ନଥିଲା । ପଡ଼ୋଶୀ ବହୁର ପ୍ରେମରେ ଉବୁଟୁବୁ ହେଉଥିଲା । ଆମ ଘରକୁ ଆସିବି ସେ ପାଠରେ ମନ ନଦେଇ ପ୍ରେମପତ୍ର ଲେଖାରେ ବେଶୀ ସମୟ ଦେଇଥିଲା ।

ସେ ଯାହାହେଉ ସେ ମୋ ଭାବୀ ଶ୍ୱଶୁରଙ୍କ ଗୁମାସ୍ତାକୁ ଗୋଟେ ଇଂଲିସ ଫିଲିପ୍ସ ସାଇକେଲ୍ ଦବାକୁ ପ୍ରସ୍ତାବ ଦେଲେ । ଅବଶ୍ୟ ଶ୍ୱଶୁରଘର ଇଣ୍ଡିଆ ଗ୍ରୀନ୍ ମଡ଼େଲ ରାଲେ ଦେବାକୁ ରାଜିଥିଲେ । ସେତେବେଳେ ଜଣେ ଗ୍ରୀନ୍ ମଡେଲ ରାଲେ ଯୌତୁକ ଭାବେ ପାଇବାଟା ଗର୍ବର କଥା ବୋଲି ଧରାଯାଉଥିଲା । କାରଣ ଗାଆଁରେ ମଟର ସାଇକେଲ କେବେବି ଦେଖା ଯାଉନଥିଲା । କାର୍ ତ ସ୍ୱପ୍ନ ଥିଲା । ସେତେବେଳେ ଗୋଟିଏ କାର୍‌ର ନାଆଁ ଆମ୍ଭେ ଶୁଣୁଥିଲୁ । ତାର ନାଆଁ ଆମ୍ୱାସାଡ଼ାର । ଏହାର ଦାମ୍ ବୋଧେ ଆଠହଜାର ଭିତରେ ଥିଲା । ସାଇକେଲ ଦାମ୍ ୨୦୦ ଟଙ୍କା ଭିତରେ ତେବେ ମୋତେ ଯୌତୁକ ମିଳିଥିବା ଇଂଲିଶ ଫିଲିପ୍ସଟିର ଦାମ୍ ୩୦୦ ଟଙ୍କା ବୋଲି କୁହାଯାଇଥିଲା ।

ସତରେ ଛାମୁଁ ଏଇ ଅଳପ ବୟସରେ ମୋ ବିବାହଟା ମୋତେ ଖୁସି ବଦଳରେ ବେଶୀ ଲାଜ ଆଣି ଦେଉଥିଲା । ମୁଁ ଭଲରେ ମୁହଁ ଟେକି ଭଦ୍ରଲୋକଙ୍କୁ ଚାହିଁପାରୁ ନଥିଲି । ଗୋଟେ ଉଦାହରଣ ଦେଉଛି ସେତେବେଳେ କାଳିଆ ବାବୁ ଥାଆନ୍ତି କୋରେଇ ଥାନାର ସବ୍‌ଇନିସପେକ୍ଟର (ତାଙ୍କର ସଂପୂର୍ଣ୍ଣ ନାମ ମୋର ମନେ ନାହିଁ) ମୋ ବିବାହ ପାଇଁ ଗୋଟେ ଷ୍ଟେସନ୍ ଓ୍ୱାଗନ ଯୋଗାଡ଼ କରିଦେବା ପାଇଁ ମୋ ସାନବାପା (ନବକିଶୋର) ମୋତେ ପଠାଇଥିଲେ ତାଙ୍କ ପାଖକୁ ସେ ମୋତେ ଦେଖି ହସିଲେ । ମୁଁ ମଧ ଲଜ୍ଜିତ ହେଲି ।

ଆଜି ଯେତେବେଳେ ୧୭/୧୮ ବର୍ଷର ଜଣେ ପିଲାକୁ (ଯୁବକ କୁହାଯାଇପାରେ), ମୁଁ ଦେଖେ ସେତେବେଳେ ମନେ ମନେ ଭାବେ ଏଇଭଳି ଛୋଟ ଅବସ୍ଥାରେ ମୋ ବାହାଘର କରିଦେବାକୁ ମୋ ବାପାଙ୍କ ଇଚ୍ଛା କେମିତି ହେଲା । ଆଉ ମୋ ଶ୍ୱଶୁର ମଧ କିପରି ତାଙ୍କର ଏକ ପୂର୍ଣ୍ଣ ଯୌବନା ଝିଅକୁ ମୋ ବେକରେ ଛନ୍ଦିଦେବା ପାଇଁ ମନ ବଳାଇଲେ ।

ଏଇଥି ପାଇଁ ମୁଁ ଆଜିବି ମୋ ସାଙ୍ଗ ମେଳରେ କହିଥାଏ ମୋ ଯୌବନର ବହୁ ପୂର୍ବରୁ ମୋ ବିବାହ । ଆଉ ପ୍ରେମ କ'ଣ ଜାଣିବା ପୂର୍ବରୁ ମୁଁ ଘୋର ସଂସାରୀ ବନିଗଲି । ସତରେ ବିବାହ ପ୍ରଥମ ମିଳନର ମଧୁଚନ୍ଦ୍ରିକା ଯାପନ ସବୁକୁ ନେଇ ମୁଁ ସିନା ଭଲ କବିତା କି ଗୀତ ଲେଖିପାରୁଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ମୋ ଜୀବନର ମଧୁଚନ୍ଦ୍ର ତିଥି । ପହିଲି ମିଳିନରେ ପ୍ରିୟାର ମୁଖଦର୍ଶନର ପୁଲକ ମୁଁ ଆଦୌ ସେତେବେଳେ ଅନୁଭବ କରି ନଥିଲି । ବରଂ କେଉଁ ପରିସ୍ଥିତିରେ ମୋ ବାସରଘର ସଜା ହୋଇଥିଲା ସେକଥା ପରେ କହିବି । ପରେ ମାନେ ଆଗାମୀ କାଲି ହିଁ କହିବି ।



# ଯମପୁରୀର ଜମାନବନ୍ଦି -୧୭

ଚିତ୍ରଗୁପ୍ତ– ଆସିଗଲ ଆଗନ୍ତୁକ ।

ଆଗନ୍ତୁକ– ମୋର ସୌଭାଗ୍ୟ ଆପଣ ଆଜି ମୋ ଆଗରୁ ଉପସ୍ଥିତ ଅଛନ୍ତି ।

ଚିତ୍ରଗୁପ୍ତ– ଆସିବିନି କିପରି ! ଆଜିପରା ତୁମର ବାସରଘର ବର୍ଣ୍ଣନା ଶୁଣିବାର ଅଛି ।

ଆଗନ୍ତୁକ– ମୋତେ ଲଜ୍ଜିତ କରନ୍ତୁ ନାହିଁ ଚିତ୍ରଗୁପ୍ତ ମହାଶୟ । ଆପଣ ଜାଣନ୍ତି ଯୌବନର ଜନ୍ମ ପୂର୍ବରୁ ମୋର ବିବାହ ହୋଇଗଲା । ଏଣୁ ବାସରଘର କ'ଣ କି ଆନନ୍ଦ ତହିଁରେ ଅଛି ମୁଁ ଏକପ୍ରକାର ଅନଭିଜ୍ଞ ଥିଲି ।

ଏବେ ସିନେମାରେ ନାୟକ ନାୟିକାଙ୍କ ବାସରଘର ଦେଖିଲେ ମୋର ମନେପଡୁଛି ମିଞ୍ଜି ମିଞ୍ଜି ଜଳୁଥିବା ଲଣ୍ଠନ, ମୂଷାମାଟି ଭରପୂର ଖଟତଳ । ଅର୍ଥାତ୍ କେଉଁଠାରେ ଯେଉ ଖଟ ଉପରେ ମୁଁ ପ୍ରଥମେ ମୋ ପ୍ରିୟତମାଙ୍କ ସ୍ପର୍ଶ ପାଇବାକୁ ଯାଉଥିଲି, ସେଇ ଖଟତଳେ ଥିଲା ଯଥେଷ୍ଟ ମୂଷାଗର୍ତ୍ତ ।

ପୁନଶ୍ଚ ପ୍ରିୟତମାଙ୍କୁ ଉପହାର ଦେବା ପାଇଁ ମୋ ପାଖରେ ଥିଲା ମୋ ମାଆ, ମୋର ଲେଖାଯୋଖା ଭାଉଜ ଜରିଆରେ ଦେଇଥିବା କେଇଟି ରୂପାଟଙ୍କା, କାରଣ ମୁଁ ଏକ କପର୍ଦ୍ଦକ ଶୂନ୍ୟ ସଦ୍ୟ ମାଟ୍ରିକ୍ ପାଶ୍ କରିଥିବା ଛାତ୍ର ମାତ୍ର ଥିଲି ।

ରୂପେଲି ପର୍ଦ୍ଦାର ମଧୁଶଯ୍ୟାରେ ସାଜସଜ୍ଜା ଦେଖିଲେ ମୁଁ ଲଜ୍ଜିତ ହୁଏ ଆମର ବାସର ଶେଯରେ ସାଜସଜ୍ଜା କଥା ମନେପକାଇ । ମୋ ଶ୍ୱଶୁରଘର ଅବଶ୍ୟ ଶେଯ ପାଇଁ ଉପାଦାନ ଓ ପ୍ରସାଧନ ଯୋଗାଇଥିଲେ । ତଥାପି ସାମାଜିକ ଶୃଙ୍ଖଳା ଓ ପରମ୍ପରା ଭିତରେ ବନ୍ଧାହୋଇ ବାସରରାତିକୁ ପାଳନ କରିଥିଲି ମୁଁ ମୋର ପତ୍ନୀ ସହ । ମୋ ଅନୁରୋଧରେ ମୋ ପତ୍ନୀ ମଧ୍ୟ କେଉଁ ଏକ ସଙ୍ଗୀତ ଗାଇଥିଲେ ମୋର ମନେ ନାହିଁ । ତେବେ ଗୀତଟି ଗାଇବା ଢଙ୍ଗ ଏତେଟା ଆକର୍ଷଣୀୟ ନଥିଲା । ବୋଧହୁଏ ବାସର ରାତିରେ ସେ ତାଙ୍କର ପତିଦେବଙ୍କୁ ସୁଖୀ କରିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ ।

ଅଷ୍ଟମଙ୍ଗଳା ଯିବାର କେଇଦିନ ପରେ ମୋତେ କଲେଜରେ ଆଡ୍‌ମିଶନ ଏବଂ କଲେଜକୁ ଯାଇ ପାଠପଢ଼ିବା କଥା ଚିନ୍ତା କରିବାକୁ ପଡ଼ିଥିଲା । କାରଣ ମୋର ଏ ବିବାହ ପଛରେ ଗୋଟାଏ ସର୍ତ୍ତ ଥିଲା । ମୋତେ ମୋ ଶ୍ୱଶୁର ମୁଁ ଯେତେଦୂର ଚାହିଁବି ସେ ପାଠ ପଢ଼ାଇବାକୁ ଖର୍ଚ୍ଚ ବହନ କରିବେ ।

ଚିତ୍ରଗୁପ୍ତ– ସେ ସର୍ତ୍ତ ତ ପୂରଣ ହେଲା ନାହିଁ ।

ଆଗନ୍ତୁକ– ଆପଣ ତ ତାହା ଭଲଭାବେ ଜାଣନ୍ତି, ଆଇ.ଏସ୍.ସି. ପଢୁଥିବା ବେଳେ ମଧ୍ୟ ଶ୍ୱଶୁରଙ୍କ ଆର୍ଥିକ ସହଯୋଗ ଅଦୌ ସୁଖକର ନଥିଲା । ଆଇଏସ୍‌ସି. ପରେ ଏହା ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ।

ଚିତ୍ରଗୁପ୍ତ– ଛାଡ଼ ବାସର ରାତିର ବର୍ଣ୍ଣନାର ମଧୁରିମା ଏହାଦ୍ୱାରା ଫିକା ପଡ଼ିଯିବ ସେ ସବୁ ପରକଥା ।

ଆଗନ୍ତୁକ– ନାଇଁ ମହାଶୟ, ମୋର ଏସବୁ କହିବାର ଉଦ୍ଦେଶ୍ୟ ହେଉଛି ଆଉ କେହି ଦାରିଦ୍ର୍ୟର କବଳିତ ହୋଇ ଅଳ୍ପ ବୟସରୁ ଶ୍ୱଶୁରଘର ଦ୍ୱାରା ପ୍ରଲୋଭିତ ହୋଇ ବିବାହ ନ କରନ୍ତୁ !

ଚିତ୍ରଗୁପ୍ତ– ତେବେ ଏହାର ପ୍ରଭାବ ତୁମର ଦାମ୍ପତ୍ୟ ଜୀବନ ଉପରେ ପଡ଼ିଥିବ ନିଶ୍ଚୟ ।

ଆଗନ୍ତୁକ– ଏଥିରେ ମୋ ସ୍ତ୍ରୀର ଅପରାଧ କେଉଁଠି ରହିଛି ଯେ । ତାଙ୍କ ବାପାଙ୍କ ପ୍ରତାରଣାକୁ ସେ ମୋଭଳି ମଧ୍ୟ ଦୁଃଖର ସହ ଗ୍ରହଣ କରିଥିଲେ ଏହାହିଁ ଥିଲା ମୋର ଆଶ୍ୱାସନା ।

ଚିତ୍ରଗୁପ୍ତ– ମନଦୁଃଖ କରନା ଆଗନ୍ତୁକ– ଏହା ବିଧି ନିର୍ଦ୍ଦିଷ୍ଟ । ତୁମେ ଉଭୟ ସମବୟସ୍କ । ପତିପତ୍ନୀ ହେବାର ସମ୍ବନ୍ଧ ତୁମର ଆଗରୁ ସ୍ଥିରୀକୃତ ।

ଆଗନ୍ତୁକ– ସେଇ କାରଣରୁ ବୋଧେ ଆମ ଦାମ୍ପତ୍ୟ ଜୀବନରେ ପାଠପଢ଼ାକୁ ଦେଖି କେବେ ମନୋମାଳିନ୍ୟ ଘଟିନାହିଁ । ଘରୋଇ ଭାବେ ବି.ଏ. ପଢ଼ିବାବେଳେ ମୋ ପତ୍ନୀଙ୍କର ସନ୍ନ୍ୟାସିନୀ ପରି ତ୍ୟାଗ ମୋତେ ମୁଗ୍ଧ କରିଥିଲା ଏବଂ ପ୍ରେରଣା ଦେଇଥିଲା କୃତକାର୍ଯ୍ୟ ହେବାକୁ ।

ଚିତ୍ରଗୁପ୍ତ– ଆଜି ଏତିକିଥାଉ ତୁମର ବକ୍ତବ୍ୟ ।

ଆଗନ୍ତୁକ– ପ୍ରଣାମ ଚିତ୍ରଗୁପ୍ତ ମହାଶୟ । ଯମରାଜ ବୋଧେ ଆଜି ଆସିବେନି ।

ଚିତ୍ରଗୁପ୍ତ– ନା, ସେ ଏକ ବିଶେଷ କାର୍ଯ୍ୟ ନେଇ ବ୍ୟସ୍ତ ଅଛନ୍ତି ।

ଆଗନ୍ତୁକ– ମୋର ମଧ୍ୟ ସୌଭାଗ୍ୟ । ଏଇକଥା ମୁଁ ସହଜରେ ତାଙ୍କଆଗେ କହିପାରି ନଥାନ୍ତି ।

ଚିତ୍ରଗୁପ୍ତ– ସେ ତ ସର୍ବଜ୍ଞାତା ଆମର ଏ କଥୋପକଥନ ମଧ୍ୟ ସେ ଜାଣିପାରିଥିବେ । ତେବେ ତୁମେ ଯେ ତୁମ ପତ୍ନୀଙ୍କୁ ଅତ୍ୟଧିକ ଭଲ ପାଉଥିଲ ତାର ସୂଚନା ମଧ୍ୟ ମୋ ପାଖରେ ଅଛି । କାଲି ମୁଁ ତା'ର ଉପକ୍ରମଣିକା ଦେବି ।



# ଯମପୁରୀର ଜମାନବନ୍ଦି -୧୮

ଚିତ୍ରଗୁପ୍ତ - ଏତେ କଷ୍ଟକରି ଏତେ ଦୀର୍ଘ ପଥ ଚାଲିଚାଲି ଧର୍ମଶାଳାରୁ ଯାଇ କବୀରପୁରରେ ଶ୍ୱଶୁରଘରେ ପହଞ୍ଚିଗଲ । ତାପରେ କ'ଣ ହେଲା !

ଆଗନ୍ତୁକ ଆପଣ ତାହାହେଲେ ବଡ଼ ଆଗ୍ରହୀ ଜାଣିବା ପାଇଁ ଚିତ୍ରଗୁପ୍ତ ମହାଶୟ । କିନ୍ତୁ ଆପଣତ ସର୍ବଜ୍ଞ । ସବୁକଥା ଟିପିକରି ରଖନ୍ତି । ଏଇକଥାଟା କ'ଣ ଆପଣଙ୍କ ପାଞ୍ଜିରେ ନାହିଁ ।

ଚିତ୍ରଗୁପ୍ତ - ଅଛି ଆଗନ୍ତୁକ ଅଛି । କିନ୍ତୁ ତୁମେ କେତେଦୂର ସତ୍ୟ ଆଉ ନିଷ୍କପଟ ଭାବେ ପ୍ରକାଶ କରିପାରୁଛ ତାହାହିଁ ଜାଣିବା, ଏକ ମୋର ନୁହେଁ ସ୍ୱୟଂ ଯମରାଜଙ୍କ ଇଚ୍ଛା ।

ଆଗନ୍ତୁକ - ଏଇ ଛାମୁ ବିଜେ କଲେଣି । ପ୍ରଣାମ ଛାମୁ !

ଯମରାଜ ହଁ ଆଗନ୍ତୁକ ଶ୍ୱଶୁର ଘରେ ଭଲରେ ଭଲରେ କଟିଲାତ !

ଆଗନ୍ତୁକ - ଛାମୁ ଆପଣ ବି ସେଇ କଥା ପଚାରି ମୋତେ ଲଜ୍ଜା ଦିଅନ୍ତୁନି ।

ଯମରାଜ - ନାଇଁ ଆଗନ୍ତୁକ, ଏଥିରେ ଲଜ୍ଜାର କାରଣ ନାହିଁ । ତୁମେତ ତୁମ ପତ୍ନୀ ପାଖକୁ ଯାଇଥିଲ !

ଚିତ୍ରଗୁପ୍ତ - ପ୍ରକୃତରେ ଗୋସ୍ୱାମୀ ତୁଳସୀ ଦାସ ତ ଏହିପରି ପତ୍ନୀଙ୍କ ପ୍ରେମରେ ବାଇ ହୋଇ ସ୍ତ୍ରୀ ବାପଘରେ ପହଞ୍ଚି ସେ ବିଯାଇ ସ୍ତ୍ରୀଙ୍କ ପାଖରେ ପହଞ୍ଚିଲେ ।

ଆଗନ୍ତୁକ - ନାଇଁ ମନ୍ତ୍ରୀ ମହାଶୟ । କାହିଁ ସ୍ୱାମୀ ତୁଳସୀ ଦାସ ଆଉ କାଇଁ ମୁଁ ଛାର ଗୀତିକାରଟାଏ !

ହଁ ଏବେ କହୁଛି ଶୁଣନ୍ତୁ ! ମୁଁ ଶ୍ୱଶୁରଘରେ ପହଞ୍ଚି ଜାଣିଲି ସ୍ତ୍ରୀ ମୋର ସେ ସମୟରେ ସ୍ପର୍ଶ ଯୋଗ୍ୟ ନାହାନ୍ତି । ଏବେ ସିନା ଯୁଗ ବଦଳିଗଲାଣି । ଋତୁମତି ରମଣୀକୁ ସ୍ପର୍ଶକରି ଦୁଃଶାସନର ଦଶା ଭୋଗିବାର ଭୟ ବି ଆଉ ନାହିଁ । କିନ୍ତୁ ଆମ ଯୁବାବସ୍ଥାରେ ଅର୍ଥାତ ବିଂଶ ଶତାବ୍ଦୀର ସପ୍ତଦଶକ ବେଳକୁ ଅବସ୍ଥା ଭିନ୍ନଥିଲା । ସ୍ୱାମୀ ସ୍ତ୍ରୀ ଭିତରେ ଖୋଲାଖୋଲି କଥା ହେବାବି ବାରଣ ଥିଲା ।

ସେ ଯାହା ହେଉ ମନଦୁଃଖରେ ଶ୍ୱଶୁରଘରେ ଗୋଟାଏ ଦିନ କଟେଇ ତାପରଦିନ ପୁଣି କଲେଜକୁ ଫେରି ଆସିଲି । ଆସିଲାବେଳେ ଅବଶ୍ୟ ପ୍ରିୟାର ମୋର ହତାଶଭରା ଆଖି ଦୁଇଟିକୁ ବାଟସାରା ମନେ ପକାଉଥାଏ ।

ଏଥର ବି ଶ୍ୱଶୁର ମୋତେ ଟଙ୍କା ଦେବା ପାଇଁ ବଡ଼ ଦ୍ୱିଧା ପ୍ରକାଶ କଲେ । ତେବେ ତାଙ୍କର ଏଇ ଅଭ୍ୟାସଟା ମୋରବି ଦେହସୁହା ହୋଇ ଯାଇଥାଏ ।

ଯମ - ବେଶ ଏବେ ତୁମର କଲେଜ କଥା କୁହ ।

ଆଗନ୍ତୁକ   କଲେଜ ଜୀବନ ମୋର ଆଦୌ ରୋମାଣ୍ଟିକ ନଥିଲା ଛାମୁ ।

ମ୍ୟାଟ୍ରିକ ପରେ ପରେ ମୋ ବିଭାଘରଟା ମୋର ଯୌବନର ଜୟଯାତ୍ରା ପଥରେ ନିଶ୍ଚୟ ପ୍ରତିବନ୍ଧକ ହୋଇଗଲା । ତାଛଡ଼ା ହାଇସ୍କୁଲରେ ମୁଁ ଯେପରି ଏକ ଅନୁଷ୍ଠାନର ସର୍ବୋତମ ଛାତ୍ରଥିଲି କଲେଜରେ ସେ ସୌଭାଗ୍ୟ ମୋର ନଥିଲା । ମୋ ଠାରୁ ଅଧିକ ପ୍ରତିଭାବାନ ଛାତ୍ର ଏଇ କଲେଜରେ ପଢୁଥିଲେ । ତାଛଡ଼ା ବିଜ୍ଞାନ ପ୍ରତି ମୋର ଏତେଟା ଆଗ୍ରହ ନଥିଲା କଳା ପଢ଼ିଥିଲେ ହୁଏତ ଖୁବ୍ ଭଲ କରିଥାନ୍ତି ।

ସେ ଯାହା ହେଉ କଲେଜରେ ପଢ଼ିବା ବେଳର ଗୋଟେ କଥା କହିବାକୁ ଚାହେଁ । ବହୁ ସାହସ କରି ମୋର ଜଣେ ସହପାଠିକାକୁ ଥରେ ପଦଟିଏ କ'ଣ ପଚାରିଥିଲି । ସେ ମୋତେ ତାର ଉତ୍ତରବି ଦେଲାନି । ଏଣୁ ଭାବିଲି ଏଠି ପଢୁଥିବା ଯାଏ କୌଣସି ଝିଅ ସହ କଥା ହେବିନି । ତାହାହିଁ ବୋଧେ ହୋଇଥିଲା । କଲେଜ ଜୀବନରେ ମୁଁ କୌଣସି ସହପାଠିନୀଙ୍କ ସମ୍ପର୍କରେ କି ସଂସ୍ପର୍ଶରେ ଆସି ନଥିଲି । ଅବଶ୍ୟ ଆଉ ଗୋଟେକଥା ସ୍ଥିର ନିଶ୍ଚିତ । କଲେଜ ଜୀବନରେ ଯେଉଁମାନେ ନେତା, ବକ୍ତା, କ୍ରୀଡ଼ାବିତ୍ ବା ଅଭିନେତା ହୁଅନ୍ତି ସେମାନେ ଝିଅପିଲାଙ୍କ ପ୍ରିୟଭାଜନ ହୁଅନ୍ତି । ମୁଁ ଯେହେତୁ ଏସବୁ ହେବାର ସୁଯୋଗ ପାଇନଥିଲି ଏଣୁ ତଦ୍‌ଜନିତ ସୁବିଧା ସୁଯୋଗ ପାଆନ୍ତି କିପରି । ଏସବୁ ଗୁଣ ଯେ, ମୋ ପାଖରେ ନଥିଲା, ତାହା ନୁହେଁ ବରଂ ମୁଁ କହିବି ମୋର ଅପରିକ୍ୱ ବୟସର ବିବାହ ମୋ ଜୀବନପଥର ଅନେକ ଉଜ୍ଜଳତମ ଦିଗକୁ ତମସାଛନ୍ନ କରିଦେଲା ।

ଅନ୍ୟ ଘଟଣା କହୁଛି ଯମରାଜ । ବିଜ୍ଞାନ ମୋର ଭଲ ହେଉନଥିଲା । ତଥାପି ମୋର ମନୋବଳ କମିନଥିଲା । ହେଲେ ପଦାର୍ଥ ବିଜ୍ଞାନରେ ମୁଁ ଥରେ ଅକୃତକାର୍ଯ୍ୟ ହେଲି । ଏଇଟା ଥିଲା ମୋ ଜୀବନର ପ୍ରଥମ ଅକୃତକାର୍ଯ୍ୟର କଥା । ଏଣୁ ମନକୁ ଭାରି ବାଧିଲା । ସେଦିନ ରାତିରେ ମୁଁ ଆତ୍ମହତ୍ୟା କରିବି ବୋଲି ସ୍ଥିର କଲି । ପରେ ଅବଶ୍ୟ ମୋର ମନୋଭାବ ବଦଳାଇଲି । ଟିକେ ଦୃଢ଼ହେଲି । ଭାବିଲି ମୋର ପ୍ରତିଭା ଅଛି । ଦକ୍ଷତା ଅଛି କିନ୍ତୁ ମୁଁ ବିଜ୍ଞାନ ପ୍ରତି ଅନାଗ୍ରହ ଯୋଗୁଁ ଭଲ କରୁନି ।

ଅବଶ୍ୟ ସେ ବିପଦରୁ ମୁଁ ଓହରିଗଲି । ଆତ୍ମହତ୍ୟା କଲିନାହିଁ । କିନ୍ତୁ ବିଜ୍ଞାନ ପ୍ରତି ଏତେଟା ଆଗ୍ରହ ବଢ଼ିଲା ନାହିଁ । ସେ ଯାହାହେଉ ମାମୁଁଘରେ ଖିଆପିଆର କଷ୍ଟ,

ଶ୍ୱଶୁରଘରୁ ଟଙ୍କା ପଇସା ନିୟମିତ ନଆସିବାର ଅବଶୋଷ ସାଙ୍ଗକୁ ସ୍ତ୍ରୀ ଠାରୁ ଦୂରରେ ରହିବାର କଷ୍ଟ ଭିତରେ ପାଠପଢ଼ି ଆଇଏସସି ପରୀକ୍ଷା ଦେଲି ।

ପରୀକ୍ଷାଫଳ ଆଶାନୁରୂପ ହେଲାନି । ତଥାପି ମୁଁ ୨ୟ ଶ୍ରେଣୀରେ ଆଇଏସସି ପାଶ୍ କଲି । ଦୁଃଖର କଥା ମୋ ସାଙ୍ଗ କାଳା ମୋଠୁ ଶ୍ରେଣୀ ପରୀକ୍ଷାରେ ଭଲ କରୁଥିଲେ ବି ଫାଇନାଲ ପରୀକ୍ଷାରେ ଭଲ ନକରି ତୃତୀୟ ଶ୍ରେଣୀରେ ପାଶ୍ କଲା । ତେବେ ଏତିକି କହିବି । ମୋର ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିବା ପଛରେ ମୋର ଭାଗ୍ୟ ବୋଧେ ମୋତେ ସାହାଯ୍ୟ କରିଥିଲା । କାରଣ ପରୀକ୍ଷାରେ କ'ଣ କରିଛି ମୁଁ ବି ଭଲଭାବେ ଜାଣିନଥିଲି ।



# ଯମପୁରୀର ଜମାନବନ୍ଦି -୧୯

ଚିତ୍ରଗୁପ୍ତ - ଆଉ କୌଣସି ନାନ୍ଦୀପାଠ ନକରି ଶୀଘ୍ର ତୁମର ବକ୍ତବ୍ୟ ଆରମ୍ଭ କରିଦିଅ । କାରଣ ଆଜି ସାବିତ୍ରୀବ୍ରତ । ଛାମୁଙ୍କର ଆଜି ଅନେକ କାମ ରହିଛି ।

ଆଗନ୍ତୁକ - କହୁଛି ମନ୍ତ୍ରୀ ମହାଶୟ । ସ୍ୱୟଂ ଛାମୁଁ ଯେତେବେଳେ ସିଂହାସନରେ ଉପବିଷ୍ଟ ହୋଇଗଲେଣି ମୋର ଆଉ ବିଳମ୍ବ କାହିଁକି ହେବ । ବରଂ ମୁଁ ସାମାନ୍ୟ ବିଳମ୍ବରେ ପହଞ୍ଚିଥିବାରୁ କ୍ଷମା ମାଗି ନେଉଛି ।

ହଁ ମୁଁ ମୋର ଭଦ୍ରକ କଲେଜରୁ ଆଇ.ଏସ.ସି. ୨ୟ ଶ୍ରେଣୀରେ ପାଶ୍ କରିଗଲି । ମାମୁଁ ଘରେ ଖିଆପିଆ ପାଇଁ ଧାଁ ଧପଡ଼ ପୁଣି ମାମୁଁଘର ଖିଆଛାଡ଼ି ହୋଟେଲ ଖିଆରେ ଡିସେଣ୍ଟ୍ରି ଆଦିରୁ ରକ୍ଷା ବି ପାଇଲିନି । ତେବେ ମଣିମା ଡିସେଣ୍ଟ୍ରି ରୋଗଟା ମୋର ଚିର ସହଚର ହୋଇ ରହିଯାଇଛି ।

ସେ ଯାହା ହେଉ ଆଇ.ଏସ.ସି ପରେ ମୁଁ ଶ୍ୱଶୁର ଘରକୁ ଗଲି । ଶ୍ୱଶରଙ୍କୁ ଦେଖାକଲି । ମେଡ଼ିକାଲରେ ପଢ଼ିବା ପାଇଁ ମୋର ଇଚ୍ଛା ଜଣାଇଲି । ମେଡ଼ିକାଲ ନହେଲବି ଭେଟେରିନାରି (ପଶୁ ଡାକ୍ତର ବିଦ୍ୟା) ପଢ଼ିବାର ସୁଯୋଗ ଅନ୍ତତଃ ପାଇଗଲେ ଖୁସି ହେବି ବୋଲି କହିଲି ।

ଶ୍ୱଶୁର ସବୁ ଶୁଣିଲେ ତାଙ୍କର ଅଭାବ ଅସୁବିଧା, ବ୍ୟବସାୟରେ ମାନ୍ଦା ଅବସ୍ଥା ସାଙ୍ଗକୁ ମୋତେ ଆଉ ଅଧିକ ପାଠ ପଢ଼ାଇବା ପାଇଁ ନିଜର ଅସାମର୍ଥ୍ୟ ଜଣାଇଲେ । ଶେଷକୁ ମୋତେ ଦେଢ଼ଶହ ଟଙ୍କା ଧରାଇଦେଇ କହିଲେ ଏତକ ନିଅ ତୁମର ଆଡ଼ମିସନ କାମରେ ଲାଗିବ । ମୁଁ ସେ ଅର୍ଥତକ ଫେରାଇ ଦେଇ ଆସିଲି ।

ପାଠରେ ଡୋର ବାନ୍ଧିଦେଇ ଚାକିରୀ ସନ୍ଧାନରେ ରହିଲି । ଯୋଗଦେଖ ସେଇ ଶ୍ୱଶୁରଘର ପାଖ ସୁଜନପୁରରେ ଆଡ଼ଭୋକେଟ ରୁଦ୍ରଚରଣ ମହାନ୍ତି ଏକ ନୂଆ ହାଇସ୍କୁଲ ଖୋଲିଥାନ୍ତି । ନବମଶ୍ରେଣୀ ଖୋଲିଥାଏ । ଅର୍ଥାତ୍ ସ୍କୁଲ ଖୋଲିବାର ଦୁଇବର୍ଷ ହୋଇଥାଏ । ସେଇ ପ୍ରସ୍ତାବିତ ହାଇସ୍କୁଲରେ ଯୋଗଦେଲି ୮୦ ଟଙ୍କା ଦରମାରେ । ଏହାବୋଧେ ୧୯୬୦ ମସିହା ଜୁଲାଇ କି ଅଗଷ୍ଟ ହେବ ।

ସେତେବେଳେ ଜଣେ ଆଇ.ଏ ବା ଆଇ.ଏସ.ସି. ପାଶ ବ୍ୟକ୍ତି ଶିକ୍ଷା ବିଭାଗରେ ଦରମା ପଚାଶ ଓ ମହଙ୍ଗାଭତ୍ତା ପଚିଶ ଏପରି ମୋଟ ପଚସ୍ତରୀ ଟଙ୍କା ପାଇଥାଏ । ମୁଁ ଆଇ.ଏସ.ସି. ପାଶ କରିଥିବାରୁ ମୋତେ ଅଧିକା ପାଞ୍ଚ ଟଙ୍କା ମ୍ୟାନେଜମେଣ୍ଟ ଦେଇଥାଏ । ୧୯୬୦ ରୁ ୧୯୬୫ ଯାଏ ପ୍ରାୟ ପାଞ୍ଚ ବର୍ଷ

ଏଠାରେ ମୁ ଶିକ୍ଷକତା କଲି । ବିଭିନ୍ନ ସମୟରେ ପ୍ରଧାନଶିକ୍ଷକ ଭାବେ ସୁବାସ ବାବୁ, କୀର୍ତ୍ତନ ବାବୁ ଆଦିଯୋଗ ଦେଇଥିଲେ ହେଁ ସୁରେନ୍ଦ୍ରନାଥ ରାଉତଙ୍କ ସଙ୍ଗେ ବେଶୀଦିନ କାମ କରିବାର ସୁଯୋଗ ପାଇଥିଲି । ଏହି ସ୍କୁଲରେ ରହଣି ଭିତରେ ଭଲ ପାଠ ପଢ଼ାଇବା ସାଙ୍ଗକୁ ଭଲ ଛାତ୍ର ଛାତ୍ରୀ ଗଢ଼ିବା, ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମ ଯଥା - କ୍ରୀଡ଼ା, ଉଦ୍ୟାନ, ପୂଜା, ଜାତୀୟ ଦିବସ ପାଳନ ସର୍ବୋପରି ରଙ୍ଗମଞ୍ଚରେ ଅଭିନୟ କରିବା ଏବଂ ରଙ୍ଗମଞ୍ଚ ପାଇଁ ଏକାଙ୍କିକା, ଗୀତାଭିନୟ ଆଦି ଲେଖା ଲେଖିରେ ସମୟ ଦେଲି । ପ୍ରଧାନଶିକ୍ଷକ ସୁର ବାବୁ ଜଣେ ନାଟ୍ୟ ପ୍ରେମୀ । ସେ ମଧ୍ୟ ଜଣେ ବେତାର ନାଟ୍ୟଶିଳ୍ପୀ ଥିଲେ । ଏଣୁ ତାଙ୍କରି ପ୍ରେରଣାପାଇ ମୁଁ ମଧ୍ୟ ବେତାର ନାଟ୍ୟଶିଳ୍ପୀ ହେଲି । ଏହା ଛଡ଼ା ଆଉପାଦେ ଆଗେଇଯାଇ ବେତାର ନାଟ୍ୟକାର, ଗୀତିକାର ମଧ୍ୟ ହୋଇଗଲି ।

ଏଠାରେ ଦିନ ଗୁଡ଼ିକ ବେଶ ଭଲରେ କଟିଯାଉଥାଏ । ତେବେ ମଝିରେ ମଝିରେ କେତୋଟି ତିକ୍ତ ଅନୁଭୂତି ଆଶୁଥାଏ । ବଢ଼ି ସମୟରେ ପ୍ରଥମେ ପ୍ରଥମେ ବନ୍ୟାକୁ ଦେଖି ସ୍ତବ୍ଧୀଭୁତ ହୋଇ ପଡୁଥିଲି । ରାତିରେ ଶୋଇବା ଅବସ୍ଥାରେ ବିଦ୍ୟାଳୟ ହତାକୁ ପାଣି ମାଡ଼ିଆସିବା, ବଢ଼ି ସମୟରେ ସ୍କୁଲର ଡେସ୍କବେଞ୍ଚକୁ ଭାଡ଼ିକରି କିମ୍ବା କଡ଼ିରେ ସଜାଇ ଆଟୁକରି ତହିଁରେ ବସି ମୁଢ଼ି ନଡ଼ିଆ ଚୋବେଇ ଚୋବେଇ ଦିନେ ଦିଦିନ ରହିବାର ଅଭିଜ୍ଞତା ବେଶ ରୋମାଞ୍ଚକର । ଶ୍ରେଣୀ ଗୃହରେ ଏତେ ପାଣି ପଶେଯେ, ଗୋଟେ ଛୋଟ ଡଙ୍ଗା ଆମେ ସେହି ଶ୍ରେଣୀ ଗୃହରେ ରଖି ଡଙ୍ଗାରେ ସିଡ଼ିଟେ ରଖି ସିଡ଼ିରେ ଚଢ଼ି ଓହ୍ଲାଇ ଆମର ଦୈନନ୍ଦିନ କର୍ମ ଶେଷକରୁ । ମୋଟ ଉପରେ ବଢ଼ି ସମୟରେ ଦୁଇ ତିନିଦିନ ପାଇଁ ଆମେ ଜଳଚର ଜୀବ ପାଲଟି ଯାଉ ।

ପ୍ରଧାନ ଶିକ୍ଷକଙ୍କ ଘର ସ୍କୁଲ ପାଖ ସାହସପୁର ଗାଁହେଲେ ବି, ସବୁ ବଢ଼ି ସମୟରେ ସେ ଘରେ ନ ରହି ଉଭୟ ଛାତ୍ର ଓ ଶିକ୍ଷକଙ୍କୁ ସାହସ ଦେଇଥାନ୍ତି । ସେତେବେଳେ ହଷ୍ଟେଲରେ ପିଲାମାନେ ରହନ୍ତି । ବଢ଼ିବେଳେ ରୋଷେଇ କରୁକରୁ ରୋଷେଇ ଘରେ ପାଣି ପଶେ । ପିଲା ଓ ଆମେ ଥାଳି ଧରି ଠିଆ ହୋଇ ଆଣ୍ଠୁଏ କି ଜଙ୍ଘେପାଣିରେ ତରବର ହୋଇ ଗଣ୍ଡେଖାଇ ଦେବା କଥା ଆଜିବି ମନେ ପଡୁଛି । ଏହି ସ୍କୁଲରେ ଥିବା ବେଳେ ମୁଁ ପ୍ରଧାନ ଶିକ୍ଷକ ସୁରବାବୁ, ବିଦ୍ୟାଳୟର ପ୍ରେସିଡେଣ୍ଟ ପର୍ଶୁବାବୁ ସମେତ ଗୀତ ମାଷ୍ଟ୍ର ସୁରବାବୁ, ସଚିବାବୁ ଆଦିଙ୍କ ଗହଣରେ ନାଚ ତାମସାରେ ସେକାଳରେ ଦିନ ଗୁଡ଼ିକ କଟିଯାଉଥିଲା ।



# ଯମପୁରୀର ଜମାନବନ୍ଦି -୭୦

ଚିତ୍ରଗୁପ୍ତ– ସୁଜନପୁର ରୁଦ୍ରଚରଣ ହାଇସ୍କୁଲରେ ମଧ୍ୟ ତୁମର ତିକ୍ତ ମଧୁର ଅନୁଭୂତି ଶୁଣିବାର ଆଗ୍ରହ ରହିଛି । ଯମରାଜ ମଧ୍ୟ ତାହା ଜାଣିବାକୁ ଆଗ୍ରହୀ ।

ଆଗନ୍ତୁକ– ଏଇତ ଯମରାଜ ଆସିଗଲେଣି । ପ୍ରଣାମ ଯମରାଜ !

ଯମରାଜ– ହଁ, ଆଗନ୍ତୁକ– ଏବେ ବକ୍ତବ୍ୟ ଆରମ୍ଭ କର ।

ଆଗନ୍ତୁକ– ଏଠାରେ ପ୍ରଧାନଶିକ୍ଷକ ସମେତ ଅନ୍ୟାନ୍ୟ ଶିକ୍ଷକ ବନ୍ଧୁଙ୍କ ପ୍ରିୟଭାଜନ ହୋଇ ପାରିଥିଲି । ଛାତ୍ରଛାତ୍ରୀଙ୍କର ମଧ୍ୟ ଭକ୍ତିର ପାତ୍ର ଥିଲି । ମାତ୍ର ମୋର ନାଟ୍ୟାଭିନୟ ସାଙ୍ଗକୁ ଅନ୍ୟାନ୍ୟ ଗାନ୍ଧର୍ବ ବିଦ୍ୟାର ପ୍ରଭାବରେ ଜନୈକା ଛାତ୍ରୀ ମୋହାବିଷ୍ଟ ହୋଇପଡ଼ିଥିଲା । ଜନୈକ ବିବାହିତ ଶିକ୍ଷକ ଭାବେ ମୋତେ ସେ ଗ୍ରହଣ କରିବାକୁ ବୋଧେ ଆଦୌ ପ୍ରସ୍ତୁତ ନଥିଲା । ମୁଁ ମଧ୍ୟ ତାର ସୌନ୍ଦର୍ଯ୍ୟର ପିପାସୁ ହେବାର ଦୁର୍ବଳତାର କିଛିଟା ଶୀକାର ହେଲି । ଏନେଇ ଆମ ଦାମ୍ପତ୍ୟ ଜୀବନରେ ଝଡ଼ ଦେଖାଦେଲା । ଏହାର ସୁଯୋଗ ନେଇ କିଛି ଈର୍ଷାଳୁ ସହକର୍ମୀ ମଧ୍ୟ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର ରଚିଲେ ।

ସେ ଯାହାହେଉ ମୋ ସ୍ତ୍ରୀ ମୋତେ ଅଯଥା ସନ୍ଦେହ କରିବାର ଅଘଟଣ ମୋତେ ବହୁ କଷ୍ଟ ଦେଲା ।

ହସଖୁସିର ସୁଜନପୁର ବେଦନାଦାୟକ ହୋଇଗଲା କହିବାରେ ଦ୍ୱିଧା ମୋର ନାହିଁ । ଛାତ୍ରଛାତ୍ରୀମାନେ ମୋ ପ୍ରତି ଆସକ୍ତ ହେବା ଜାଣି ମୁଁ ଜଣେ ଶିକ୍ଷକଭାବେ ଯେପରି କଠୋର ହେବା କଥା ତାହା ନହୋଇ ଭୁଲ କରୁଥିଲି । ତେବେ ମୁଁ ଏଠାରୁ ବି.ଇଡି ପଢ଼ିବା ପାଇଁ ରାଧାନାଥ ଟ୍ରେନିଂ କଲେଜକୁ ଯିବାର ସୁଯୋଗ ଆସିବାରୁ ଆଶ୍ୱସ୍ତ ହେଲି ।

ମାତ୍ର ଟ୍ରେନିଂ ସମୟରେ କଲେଜରେ ମଧ୍ୟ ନାଚଗୀତରେ ସହପାଠୀ ସହପାଠିନୀ ମେଳରେ ହସଖୁସିରେ ସମୟ କଟିଥିଲା । ତେବେ ଏଠାରେ ମଧ୍ୟ ସହପାଠିନୀଠାରୁ ନିରାପଦ ଦୂରତ୍ୱରେ ରହିବାକୁ ମୁଁ ପସନ୍ଦ କରୁଥିଲି । କାରଣ ମୁଁ ଜଣେ ବିବାହିତ ପୁରୁଷ ଜାଣି ମଧ୍ୟ କିଛି ଆଶାୟୀ ସହପାଠିନୀ ମୋତେ ସେମାନଙ୍କ ଜୀବନସାଥୀ କରିବା ପାଇଁ ପ୍ରତିଯୋଗିତା ଆରମ୍ଭ କରିଥିଲେ ।

ଆଉଥରେ ଦାମ୍ପତ୍ୟ ଜୀବନରେ ଝଡ଼ ଆସୁ ଏହା ମୁଁ ଚାହୁଁ ନଥିଲି ।



# ଯମପୁରୀର ଜମାନବନ୍ଦି -୨୧

ଚିତ୍ରଗୁପ୍ତ   ରାଧାନାଥ ଟ୍ରେନିଂ କଲେଜରେ ବି.ଇଡ଼ି ପଢୁଥିବା ବେଳର ଘଟଣାର ସୂଚନା ଗତଥର ତୁମେ ଦେଇସାରିଛ ।

ଆଗନ୍ତୁକ– ନାଇଁ ଛାମୁଁ ଏଇ ଟ୍ରେନିଂ ଜୀବନ ମୋର ଖୁବ୍ ଘଟଣାବହୁଳ । ଏଣୁ ମୋତେ ଆଉ କିଛି ସମୟ ଦିଅନ୍ତୁ ।

ଯମରାଜ– ହଁ ଚିତ୍ରଗୁପ୍ତ ଆଗନ୍ତୁକଙ୍କ ରୋମାଣ୍ଟିକ୍ ଜୀବନ ମୋତେ ବି ଖୁବ୍ ଆନନ୍ଦ ଦେଉଛି ତାକୁ କହିବାକୁ ଦିଆଯାଉ ।

ଚିତ୍ରଗୁପ୍ତ– ଏବେ କୁହ ଆଗନ୍ତୁକ ! ସ୍ୱୟଂ ଛାମୁଁ ଯେତେବେଳେ ଆଗ୍ରହୀ ମୋର ଆପତ୍ତି ରହିବ କାହିଁକି ?

ଆଗନ୍ତୁକ– ତେବେ ଶୁଣନ୍ତୁ ମଣିମା– ଶୁଣନ୍ତୁ ମନ୍ତ୍ରୀ ମହାଶୟ !

ଗତଥର କହିଥିଲି ମୋତେ ବିବାହିତ ଜାଣି ମଧ୍ୟ ଅନେକ ସହପାଠିନୀ ମୋ ପ୍ରତି ଆସକ୍ତ ହୋଇପଡୁଥିଲେ । ଏପରିକି ମୋର ସାନ୍ନିଧ ଟିକେ ପାଇବା ପାଇଁ ସେମାନଙ୍କ ଭିତରେ ଏକ ପ୍ରକାର ପ୍ରତିଯୋଗିତା ହେଉଥିଲା । ଜଣେ ସହପାଠିନୀ ମୋତେ ଅନ୍ୟମାନଙ୍କ ସହ ସଂପର୍କ ନରଖିବାକୁ ତାଗିଦ କରିବାକୁ ପଛେଇ ନଥିଲା । ଜଣେ ଝିଅ ଖୁବ୍ ଆଶାବାଦୀ ହୋଇ ମୋତେ ତାଙ୍କ ଘରକୁ ଡକାଇନେଇ ବାପାଭାଇ ସଙ୍ଗେ ପରିଚିତ କରାଇବାର ଲୋଭ ସମ୍ବରଣ କରିପାରିନଥିଲା । ଖୁବ୍ ଇଛା ଥିଲା ତାର ମୋର ଜୀବନ ସଙ୍ଗିନୀ ହେବାକୁ । ବୋଧହୁଏ ରଙ୍ଗମଞ୍ଚରେ ସେ ମୋର ଏକ ନାଟକରେ ବାଗଦତ୍ତା ଭୂମିକା ଲିଭାଇଥିବାରୁ ତାର ବାସ୍ତବ ରୂପ ପାଇଁ ସେ ଆଶା କରିଥିଲା । ମୁଁ ମଧ୍ୟ ଖୁବ୍ ଆସକ୍ତ ହୋଇ ପଡ଼ିଥିଲି ଝିଅଟିର ସୌନ୍ଦର୍ଯ୍ୟରେ, ତେବେ ମୋର ସଂପର୍କୀୟଙ୍କ ପଡ଼ୋଶିନୀ ଥିବା ଜଣେ ସହପାଠିନୀ ମୁରୁକି ହସି ତାଗିଦ କରୁଥାଏ "ଦେଖ ଜାମାଇବାବୁ ଏ ଝିଅଙ୍କ ଫାନ୍ଦରେ ପଡ଼ିବନି । ବେଶୀ ଯଦି ଆଗେଇବନା ମୁଁ ମୋ ଦିଦିଙ୍କୁ (ଅର୍ଥାତ୍ ମୋ ସ୍ତ୍ରୀଙ୍କୁ) ସବୁ ଜଣାଇଦେବି ।

ଚିତ୍ରଗୁପ୍ତ– ତେବେ ସେଇ ସଂପର୍କୀୟା ଜଣକ ଆପଣଙ୍କ ପ୍ରତି ଆସକ୍ତ ଥାଇ ଅନ୍ୟମାନଙ୍କୁ ଈର୍ଷା କରୁଥାଆନ୍ତି ।

ଆଗନ୍ତୁକ– ଆପଣଙ୍କୁ କୋଉ କଥା ଅଛପା ଯେ ! ବାସ୍ତବିକ ସେଇ ସହପାଠିନୀଜଣକ ମୋ ସହ ବେଶ୍ ଅନ୍ତରଙ୍ଗ ହେବା ପାଇଁ ଆଗ୍ରହୀ ଥିଲା । ପିକ୍‌ନିକ୍ ସମୟରେ ପରିଭ୍ରମଣ ସମୟରେ ଏପରିକି ପ୍ରାକ୍ଟିକାଲ୍ ଟିଚିଂ ସମୟରେ ସେ ବେଶ୍ ନିକଟତର ହେଉଥିଲା । ସୁଖର କଥା–ତାଙ୍କ ସହ ପରବର୍ତ୍ତୀ ସମୟରେ ଟ୍ରେନିଂପରେ କେତେଥର ଦେଖାସାକ୍ଷାତ ହେଇଛି । ପରିଣତ ବୟସରେ ଆମେ ଦି'ଜଣ ପରସ୍ପର

ସମୃଦ୍ଧି ସମୃଦ୍ଧିଆଣି ହେବାର ସ୍ୱପ୍ନ ଦେଖିଥିଲୁ । ଦୁଃଖର କଥା ସେ ଆଜି ପତିହରା । ବିଧବା ।

ହଁ, ଏଇ ଟ୍ରେନିଂ କଲେଜରେ ଥରେ ଝିଅମାନଙ୍କ ସହ ମୋର ସଂପର୍କକୁ ନେଇ ବେଶ୍ କିଛି ହଇଚଇ ହୋଇଗଲା ପୁଅମାନଙ୍କ ଭିତରେ । ଏକପ୍ରକାର ରାଗିଂ ମୋ ସହିତ କରାଗଲା । ମୁଁ ବିବାହିତ ବୋଲି ଝିଅଙ୍କ ଗହଣରେ ପ୍ରଚାର କରାଗଲା । ମୋ ରଚିତ ଏକାଙ୍କିକା ଆଉ ଯେମିତି ଏଠାରେ ମଞ୍ଚସ୍ଥ ନହୁଏ ସେଥିପାଇଁ ଚେଷ୍ଟା କରାଗଲା । ତଥାପି ମୁଁ ଏଇ ଟ୍ରେନିଂ କଲେଜରେ ଏକ ଆନନ୍ଦମୁଖର ଛାତ୍ରଜୀବନ କଟାଇଥିଲି । ଏପରିକି ମୁଁ ବିଷଣ୍ଣ ହୋଇପଡ଼ିଲେ ମୋର ଜଣେ ଅଧ୍ୟାପକ ମୋତେ ଏପରି ଭାଙ୍ଗି ନପଡ଼ିବାକୁ ପରାମର୍ଶ ଦେଇଥାନ୍ତି । ସେ ଅଧ୍ୟାପକଙ୍କ ସଙ୍ଗେ ଏବେ ବି ମୋର ସଂପର୍କ ଅଛି । ଏପରିକି ମୋ ସଂପାଦିତ ବୋଲେ ହୁଁଟି ପତ୍ରିକା ପାଇଁ ସେ ଗପଲେଖି ପ୍ରକାଶନ ପାଇଁ  ପଠାଇଥାଆନ୍ତି ।

ଏଇ କଲେଜରେ ପତ୍ରିକା 'କ୍ଷଣିକା'ର ସଂପାଦକ ଥିବା ଯୋଗୁ ସଂସାରର ସଂପାଦକ ତଥା ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସୁଥିଲି । ଟ୍ରେନିଂ କଲେଜ ଛାଡ଼ିବା ପୂର୍ବରୁ ତାଙ୍କ ପ୍ରେସ୍‌ରେ (ସଂସାରପ୍ରେସ୍) କ୍ଷଣିକା ପତ୍ରିକା ମୁଦ୍ରଣ ସମ୍ବନ୍ଧୀୟ ସମସ୍ତ ଅର୍ଥ ଚୁକ୍ତି କରିଆସିଥିଲି । ଏଇ ଘଟଣାରେ ସେ ଏତେ ଖୁସି ହୋଇଥିଲେ ଯେ କହିଲେ– ପୂର୍ବରୁ ସବୁ ସଂପାଦକ ସମସ୍ତ ଦେୟ ଚୁକ୍ତି ନକରି ଠକି ଦେଇଯାଆନ୍ତି  କିନ୍ତୁ ତୁମେ ତାର ଏକ ବ୍ୟତିକ୍ରମ । ଆପଣ ଖୁବ୍ ସଚ୍ଚୋଟ ଓ ଦାୟିତ୍ୱବାନ୍ ଅବଶ୍ୟ ଏଇ ଘଟଣା ଯୋଗୁଁ ତାଙ୍କର ମୋର ସଂପର୍କ ଖୁବ୍ ଭଲ ଥିଲା । ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ତାଙ୍କ ସହ ସାରସ୍ୱତ ସଂପର୍କ ରଖିଆସିଥିଲି । ଏବେ ବି ମୁଁ ସଂସାର ସହ ଲେଖକ ଭାବେ ଜଡ଼ିତ ରହିଛି ।

ଟ୍ରେନିଂ କଲେଜରେ ଥିବା ବେଳରେ ଆହୁରି ଅନେକ ଘଟଣା ମନେପଡୁଛି । ସାଙ୍ଗମାନଙ୍କ ଭିତରୁ କିଏ କେତେବେଳେ କେମିତି ଦେଖାହୁଅନ୍ତି । କେତେକ ସ୍ୱର୍ଗବାସୀ ହେଲେଣି । ସବୁଠୁ ବେଶୀ ମନେପଡ଼ନ୍ତି ସ୍ୱର୍ଗତଃ ଅଧକ୍ଷ ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ମହାଶୟ । ତାଙ୍କର ମୋ ପ୍ରତି ଅନାବିଳ ସ୍ନେହ ଓ ଶ୍ରଦ୍ଧା ମୋ ଜୀବନର ପାଥେୟ । ତାଙ୍କ ଟିକି ଝିଅ ସ୍ୱାଗତିକା ଏବେ ଜଣେ ବେତାର ସଙ୍ଗୀତ ଶିଳ୍ପୀ ଭାବେ ମୋର ଜଣାଶୁଣା ।

ଅନେକ ସ୍ମୃତି ବିଜଡ଼ିତ ଏଇ ଟ୍ରେନିଂ ଜୀବନ କଥା ଏବେ ବି ମନକୁ ଆସିଲେ ମନଟା ଯୁବସୁଲଭ ଭାବନାରେ ମସଗୁଲ ହୋଇଉଠେ ।



# ଯମପୁରୀର ଜମାନବନ୍ଦି -୨୨

ଚିତ୍ରଗୁପ୍ତ - ବିଳମ୍ବ ନକରି ଆରମ୍ଭ କର ତୁମର ବକ୍ତବ୍ୟ । ଛାମୁଙ୍କର ଆଜି ମର୍ତ୍ତ୍ୟ ଭ୍ରମଣର ପ୍ରୋଗାମ ଅଛି ।

ଆରମ୍ଭ କରୁଛି ମନ୍ତ୍ରୀ ମହାଶୟ । ରାଧାନାଥ ଟ୍ରେନିଂ କଲେଜରେ ଦଶଟି ମାସ ବେଶ୍ ହସ ଖୁସିରେ କଟିଲା । ଏଇ ଟ୍ରେନିଂ କଲେଜର ବହୁ ବନ୍ଧୁ ବାନ୍ଧବୀଙ୍କ ସହ ମୁଁ କଲେଜ ଛାଡ଼ିଲି । ପୁଣି ଆସି ଯୋଗଦେଲି ରୁଦ୍ର ଚରଣ ହାଇସ୍କୁଲ ସୁଜନପୁରରେ । ଏହା ମୋର ୨ୟ ପର୍ଯ୍ୟାୟ ଶିକ୍ଷକ ଜୀବନ । କିଛି ଦିନପରେ ବିଇଡ଼ି ପରୀକ୍ଷା ଫଳ ବାହାରିଲା । ମୁଁ ଏଠାରେ ଜଣେ ଟ୍ରେଣ୍ଡ ଗାଜୁଟ ଶିକ୍ଷକ ଭାବେ କାମ କରିବାରେ ଆଶା ରଖିଥିଲି । ଇତିମଧ୍ୟରେ ଲକ୍ଷ୍ମୀକ୍ଷର ବାବୁ ଏନ.ସି.ସି. ଶିକ୍ଷକ ଭାବେ ଯୋଗ ଦେଇଥିଲେ । ସେ ଖୁବ୍ ଟିଉସନ କରୁଥିଲେ । ମୋର ପାଠପଢ଼ାର ଦକ୍ଷତା ଆଉ ଲୋକପ୍ରିୟତା ଯୋଗୁଁ ମୋ ପାଖରେ ଅଧିକ ଛାତ୍ରଛାତ୍ରୀ ଟିଉସନ ହେବାକୁ ଆଗ୍ରହ ଦେଖାଇଲେ । ଫଳରେ ଲକ୍ଷ୍ମୀଧର ବାବୁ ମୋତେ ଭିତରେ ଭିତରେ ଈର୍ଷା କଲେ । ଏହି ଈର୍ଷାର ଫଳ ସ୍ୱରୂପ ମୋ ବିରୁଦ୍ଧରେ ଏକ ଚକ୍ରାନ୍ତ ମଧ୍ୟ ଚଳାଇଲେ । ଅବଶ୍ୟ ମୁଁ ଯେ ସଂପୂର୍ଣ୍ଣ ନିର୍ଦ୍ଦୋଶ ଥିଲି ତାନୁହେଁ । ପିଲାଙ୍କୁ ଶ୍ରଦ୍ଧା ସ୍ନେହ କରିବା ଗୋଟେକଥା କିନ୍ତୁ ସେମାନଙ୍କୁ ନିଜର ସୁଖସ୍ୱଚ୍ଛନ୍ଦ ପାଇଁ ବ୍ୟବହାର କରିବା ଅନ୍ୟଏକ କଥା । ଏହି କାରଣରୁ ମୋ ବିରୁଦ୍ଧରେ କୁତ୍ସରଟନା ନିନ୍ଦା ପ୍ରସାରଣରେ ଜଣେ ଶିକ୍ଷକଙ୍କ ଭୂମିକା ଯଥେଷ୍ଟ ଥିଲା । ଏଣୁ ଗୋଟାଏ ବର୍ଷ ଟ୍ରେନିଂ ସମାପ୍ତ ପରେ ଏଠାରେ ଚାକିରୀ କରିବା ମୋ ପାଇଁ ବଡ଼ କଷ୍ଟକର ହେଲା । ତେବେ ଗୋଟେ କଥା ଆପଣଙ୍କ ପାଖେ ସ୍ୱୀକାର ନକଲେ ଭୁଲ ହେବ । ଜଣେ ଛାତ୍ରୀର ସୌନ୍ଦର୍ଯ୍ୟ ପ୍ରତି ମୋର ଦୁର୍ବଳତା ମୋ ବିରୁଦ୍ଧରେ କୁତ୍ସାରଟନା କରିବାକୁ ସୁଯୋଗ ଦେଇଥିଲା ମୋ ଶତ୍ରୁମାନଙ୍କୁ ।

ମୋଟ ଉପରେ ରୁଦ୍ରଚରଣ ହାଇସ୍କୁଲରେ ପ୍ରଥମପର୍ଯ୍ୟାୟ (ଟ୍ରେନିଂ ପୂର୍ବର) ଶିକ୍ଷକ ଜୀବନ ମୋର ଖୁବ୍ ସୁଖପ୍ରଦ ଥିଲା । ମାତ୍ର ଟେନ୍ରିଂ ପର ଶିକ୍ଷକ ଜୀବନ ବଡ଼ ଦୁଃଖଦଥିଲା । ଏହି ସମୟରେ ଗୋପୀନାଥ ମହାନ୍ତି ମଧ୍ୟ ବିଇଡ଼ି ଯାଇ ଫେରିଆସିଲେ । ସେ ସୁଜନପୁର ପାଖ ଗାଆଁର । ଗୋଟିଏ ଟ୍ରେଣ୍ଡ ଗ୍ରାଜୁଏଟ ପୋଷ୍ଟକୁ ବୋଧେ ମୁଁ ଆଉ ଗୋପୀବାବୁ ଆଶାୟୀ । ସେ ଯା'ହେଉ ସୁଯୋଗ ପାଇଲେ ଗୋପୀବାବୁ । ସେ ରହିଲେ ସେଠାରେ ଟ୍ରେଣ୍ଡ ଗ୍ରାଜୁଏଟ ଭାବେ ମୁଁ ଏବେ ବିବଦମାନ ପରିସ୍ଥିତିରେ ରୁଦ୍ରଚରଣ ହାଇସ୍କୁଲରୁ ବିଦାୟ ନେଇଆସିଲି । ବିତାଡନକୁ ବିଦାୟରେ ପରିଣତ କରିବାପାଇଁ ପ୍ରଧାନଶିକ୍ଷକ ସୁରବାବୁ ଏବଂ ପରିଚାଳନା ସମିତିର ଅକ୍ଷୟବାବୁଙ୍କ ଉଦ୍ୟମ ପ୍ରଶଂସନୀୟ ।

ସେ ଯା' ହେଉ ସେ ସ୍କୁଲ ଛାଡ଼ିବା ପରେ ମୋ ଗାଆଁ କୋରେଇ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବେ ରହିବାପାଇଁ ମୋତେ ଅନୁରୋଧ କରାଗଲା ମାତ୍ର ନିୟମିତ ଭାବେ ମୋତେ ଦୁଇଶତଟଙ୍କା ଦରମା ଦେବାର ଅକ୍ଷମତା ଯୋଗୁ ମୁଁ ବାଧ୍ୟହୋଇ ନିକଟସ୍ଥ ନଗୁଆଁ ଗାଆଁର ବ୍ରାହ୍ମଣୀ ଦେବୀ ହାଇସ୍କୁଲରେ ପ୍ରଧାନଶିକ୍ଷକ ପଦରେ ଯୋଗଦେଲି । ସର୍ତ୍ତଥିଲା ସରକାରୀ ହାଇସ୍କୁଲରେ ଚାକିରି ପାଇଲେ ଏଠାରୁ ଚାଲିଯିବି । ତାହାହିଁ ହେଲା । ୨ ମାସ ୩ ମାସ ଚାକିରି କଲାପରେ ବିଶ୍ୱନାଥ ବିଦ୍ୟାପୀଠ ସରକାରୀ ହାଇସ୍କୁଲରେ ଯୋଗ ଦେବାପାଇଁ ନିଯୁକ୍ତିପତ୍ର ପାଇଲି । ସମ୍ଭବତଃ ୧୯୬୭ ମସିହା ଅକ୍ଟୋବର ୨୬ ତାରିଖରେ ମୁଁ ଆଠଗଡ଼ ବିଶ୍ୱନାଥ ବିଦ୍ୟାପୀଠରେ ଜଣେ ସହକାରୀ ଶିକ୍ଷକଭାବେ ଯୋଗ ଦେଲି । ଏହି ନିଯୁକ୍ତି ପାଇବା ପଛରେ ମୋର ଟ୍ରେନିଂ କଲେଜର ଅଧ୍ୟକ୍ଷ ପ୍ରଫେସର ବୈଦ୍ୟନାଥ ରଥଙ୍କ ମୋ ପ୍ରତି ଶ୍ରଦ୍ଧା ଓ ସ୍ନେହ ଏବଂ ନିଯୁକ୍ତି କାରୀ ମୂର୍ତ୍ତିବାବୁଙ୍କ ମୋ ସାକ୍ଷାତକାର ଉପରେ ଗଭୀର ସଂତୋଷ ଖୁବ୍ କାମ କରିଥିଲା ।

ଏହି ବିଦ୍ୟାଦଳୟରେ ପ୍ରଧାନଶିକ୍ଷକ ଅକ୍ଷୟ ଘୋଷ ମୋ ଶ୍ୱଶୁର ଘର ଗାଆଁଲୋକ । ଏଣୁ ମୋତେ ଅଜଣା ଅପରିଚିତ ଲାଗିଲା ନାହିଁ ଏହି ବିଦ୍ୟାଳୟ । କିନ୍ତୁ ଏଇ ବିଦ୍ୟାଳୟରେ ଅକ୍ଟୋବର ୧୯୬୭ ଠୁ ୧୯୬୮ ମଇମାସ ଯାଏ ଚାକିରି କାଳ ବ୍ୟସ୍ତ ବହୁଳଥିଲା । ଏଠାରେ ରହିବା ଭିତରେ ମୁଁ ଚାକିରି ସମ୍ବନ୍ଧୀୟ ତାଲିମ ପାଇ ଚିଲିକା ଦର୍ଶନ ସୁଯୋଗ ପାଇଥିଲି । ବାଙ୍କି ଚର୍ଚ୍ଚିକାପୀଠକୁ ଯିବାପାଇଁ ସୁଯୋଗକୁ କରଛଡ଼ା କରିଥିଲି ।

ତେବେ ପ୍ରଶାସନିକ ବିଧି ବ୍ୟବସ୍ଥାରେ ଏଠାରେ ବେଶୀଦିନ ରହିପାରିଲିନି । ୧୯୬୮ ମଇମାସରେ ଗ୍ରୀଷ୍ମ ଅବକାଶ ବିକାଶରେ ମୋର ବଦଳିହେଲା ଆର ଏନ ହାଇସ୍କୁଲ ରାଜକନିକା । ଏଇ ସ୍ୱଳ୍ପ ରହଣି କାଳରେ ମଧ୍ୟ ବିଶ୍ୱନାଥ ବିଦ୍ୟାପୀଠ ମୋ ପାଇଁବେଶ୍ ଆକର୍ଷଣୀୟ ଏବଂ କର୍ମମୟଥିଲା । ମୁଁ ମୋ ପରିବାର ନେଇ ଏଠାରେ ଏକ ଉଡ଼ାଘରେ ରହୁଥିଲି । ମୋ ପରିବାର ବୋଇଲେ ମୁଁ ମୋ ସ୍ତ୍ରୀ ମୋ ଶିଶୁପୁତ୍ର ଏବଂ ମୋ ମାଆ । ଆଠଗଡ଼ର ରହଣି ସମୟରେ ବିଦେଶରେ ସପରିବାର ରହିବାର ଏକ ମଧୁର ସ୍ମୃତି ମୋତେ ଖୁବ୍ ଆନନ୍ଦ ଦେଇଥିଲା । ହେଲେ ଏ ରହଣି ଖୁବ୍ କ୍ଷଣସ୍ଥାୟୀ ହେଲା ମୋ ଆକସ୍ମିକ ବଦଳି ଯୋଗୁଁ । ତେବେ ବଦଳି ଯେପରି ଆକସ୍ମିକ ଥିଲା ରାଜକନିକା ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ କାର୍ଯ୍ୟରେ ଯୋଗ ଦେବାମଧ୍ୟ ଏକ ଦ୍ୱନ୍ଦାତ୍ମକ ପରିବେଶ ସୃଷ୍ଟି କରିଥିଲା ।

ଚିତ୍ରଗୁପ୍ତ - ହୋଉ ସେ କଥା ଶୁଣିବା । ଛାମୁଁ ଏବେ ତରବରରେ ଅଛନ୍ତି ।

ଆଗନ୍ତୁକ - ଯଥା ଆଜ୍ଞା ମହାଶୟ ।



# ଯମପୁରୀର ଜମାନବନ୍ଦି -୭୩

ଆଗନ୍ତୁକ– ଚିତ୍ରଗୁପ୍ତ ମହାଶୟ ଗତଥର କହିଥିଲି ରାଜକନିକାର ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ ଯୋଗ ଦେବା ପାଇଁ ଗଲାବେଳେ ଏକ ବିବଦମାନ ପରିସ୍ଥିତି ଉପୁଜିଥିଲା ।

ଚିତ୍ରଗୁପ୍ତ– ହଁ, ଛାମୁ ତ ଆସିଗଲେଣି ଏବେ କୁହ ତୁମର ସେ ବିବଦମାନ ପରିସ୍ଥିତି କ'ଣ ?

ଆଗନ୍ତୁକ– ଆପଣଙ୍କୁ ଜଣାଅଛି ଚିତ୍ରଗୁପ୍ତ । କାରଣ ଆପଣ ଆପଣଙ୍କ ପାଞ୍ଜିରେ ନିଖୁଣ ଭାବେ ସବୁ ଠିକ୍‌ଠାକ୍ ଲେଖିଥାନ୍ତି । ତଥାପି ଛାମୁଙ୍କ ଜାଣିବାର ନିର୍ଦ୍ଦେଶରେ କହୁଛି । ମୁଁ ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ ଯୋଗ ଦେବାର ଥାଏ । କାଶୀନାଥ ରଥଙ୍କ ସ୍ଥାନରେ । ମାତ୍ର କାଶୀନାଥ ରଥ ହେଉଛନ୍ତି ସେ ସ୍କୁଲର ପ୍ରଧାନଶିକ୍ଷକ ବଂଶୀଧର ନାୟକଙ୍କ ଛାତ୍ର । ମୁଁ କାର୍ଯ୍ୟରେ ଯୋଗଦେଲେ କାଶୀନାଥ ରଥ ତଳପାହ୍ୟାକୁ ଖସିଆସିବେ । କାରଣ ସେ ମୋଠୁଁ ବିଇଡି ଶିକ୍ଷକ ଭାବେ ଜୁନିଅର । ଏଣୁ ବଂଶୀଧର ବାବୁ ଭାରପ୍ରାପ୍ତ ପ୍ରଧାନଶିକ୍ଷକ ଗୟାଧର ବାବୁଙ୍କୁ ମୋତେ ଜଏନ୍ କରାଇ ନଦେବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି । କିନ୍ତୁ ମୋର ବୁଦ୍ଧି ଓ ଜ୍ଞାନ ଖଟେଇ ମୁଁ ପରିସ୍ଥିତିକୁ ସୁଧାରି ନେଲି । ଗୟାଧରବାବୁ ମଧ୍ୟ ମୋର ବିଇଡି ସହଯୋଗୀ ଦୟାନିଧି ବାବୁଙ୍କ ଭିଣୋଇ ହୋଇଥିବାରୁ ମୋ ପ୍ରତି ସହାନୁଭୂତିଶୀଳ ହେଲେ । ଏହାଛଡ଼ା ମଣ୍ଡଳାଧୀଶ ମୂର୍ତ୍ତୀବାବୁଙ୍କ ଆଶୀର୍ବାଦ ମୋ ପଛରେ ଥିଲା । ଏଣୁ ପ୍ରଶାସନିକ ସମର୍ଥନ ମୋତେ ସହାୟ ହେଲା । ମୁଁ ରାଜକନିକା ସ୍କୁଲରେ ଯୋଗଦେବାର କିଛି ଅସୁବିଧା ହେଲା ନାହିଁ । ଇତିମଧ୍ୟରେ ବଂଶୀଧର ବାବୁ ରାଜେନ୍ଦ୍ର ନାରାୟଣ ହାଇସ୍କୁଲରୁ ବିଦାୟ ନେଇଥିଲେ । ଦିବାକର ପାଣିଗ୍ରାହୀ କାର୍ଯ୍ୟରେ ଯୋଗଦେଲେ ପ୍ରଧାନଶିକ୍ଷକ ଭାବେ । ସେ ଆସି ତୁରନ୍ତ କାଶୀନାଥ ରଥଙ୍କୁ ରିଲିଭ କରାଇ ଦେଲେ । ଏଣୁ ଗୋଟିଏ ପୋଷ୍ଟରେ ମୁଁ ଏବଂ କାଶୀବାବୁ ପ୍ରାୟ ଏକମାସ ୧୧ ଦିନ ରହିଛୁ । ମୋର ସେ ସମୟତକ ଟ୍ରାନ୍‌ଜିଟ୍ ଭାବେ ମଞ୍ଜୁରୀ ହେଲା । ହେଲେ କାଶୀବାବୁଙ୍କ ଚାକିରିରେ ଅନିୟମିତତା ବହୁଦିନ ଯାଏ ଲାଗିରହିଲା । ସେ ପୁନଶ୍ଚ ବିଇଡି ପୋଷ୍ଟ ପାଇଲେ ହେଁ ପ୍ରଶାସନିକ ଆଇନ କାନୁନ୍ ଭିତରେ ଅନେକ ଦିନ ଘାଣ୍ଟି ହେଲେ ।

ଚିତ୍ରଗୁପ୍ତ– ବେଶ୍ ଏବେ ତୁମର ରାଜକନିକାରେ ରହଣି ବିଷୟରେ କୁହନା ।

ଆଗନ୍ତୁକ– ରାଜକନିକା ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ ମୁଁ ଖୁବ୍ ଭଲ ଭାବେ ସମୟ କାଟିଲି । ଯଦିଓ ମୁଁ ରହୁଥିବା ଗୃହଟି ଏତେ ଉନ୍ନତ ନଥିଲା । ଝରକାରେ କବାଟ ନଥିବାରୁ ଅଖାପାଲକୁ ସ୍କ୍ରିନ୍‌ପରି ଝୁଲାଇ ମୁଁ ରହୁଥିଲି । କିନ୍ତୁ ମନରେ ଦୁଃଖ ନଥିଲା ଏଇ ଘରେ ଥାଇ ମଧ୍ୟ ମୋ ରହଣିକାଳ ଜୀବନର ଶ୍ରେଷ୍ଠ ତ ରଚନା ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଝରକାରେ ମୁଁ ଲେଖି ପାରିଥିଲି ।

ଯମରାଜ– ହଁ ହଁ ତୁମର ସେ ଗୀତଟି ଖୁବ୍ ଲୋକପ୍ରିୟ ! ମୋତେ ବି ଭଲ ଲାଗେ ।

ଆଗନ୍ତୁକ– ଛାମୁଁଙ୍କୁ ଭଲ ଲାଗୁଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି । ତେବେ ସେ ରାଜକନିକାର ରାଜବାଟୀ, ରାଜଉଦ୍ୟାନ (ପିଜୁଳି ସପେଟା ଓ ଲଙ୍କା ଆମ୍ବର ତିନୋଟି ସ୍ୱତନ୍ତ୍ର ଉଦ୍ୟାନ) ସାମୁଦ୍ରିକ ଜଳବାୟୁ, ବସନ୍ତ ସମୟରେ ସୁନାରିଫୁଲର ମହୋତ୍ସବ ମୋତେ ଖୁବ୍ ଆନନ୍ଦ ଦେଉଥିଲା । ଏହାଛଡ଼ା ଏଇ ଅଞ୍ଚଳର ରାଜାଙ୍କ ତରଫାରାଣୀଙ୍କ ପୁଅ ଛୁଆବାବୁ (ପ୍ରଦ୍ୟୋତ) ଙ୍କ ସଙ୍ଗେ ମୋର ଖୁବ୍ ସୁସମ୍ପର୍କ ଥିଲା । ବାନାନ୍ନା (ଜଳଖିଆ ଦୋକାନୀ) ଦୋକାନ ଆମର ଏକ ଖଟିଥିଲା । ବିଦ୍ୟାଳୟର ଶିକ୍ଷକମାନଙ୍କ ସହ ମୋ ସୁସମ୍ପର୍କ ମଧ୍ୟ ମଧୁର ଥିଲା । ସଂସ୍କୃତ ପଣ୍ଡିତଙ୍କୁ ମୁଁ ଥଟ୍ଟା ପରିହାସ କରି ଚିଡ଼ାଇ ମଧ୍ୟ ଆନନ୍ଦ ପାଉଥିଲି ।

ଏଇ ବିଦ୍ୟାଳୟର ଶିକ୍ଷକ ଦାମ ରାଉତ ଏବଂ ହିନ୍ଦୀ ଶିକ୍ଷକ ରାମବାବୁ, ହୃଦାନନ୍ଦ ସୂତାରମାନଙ୍କ ସହଯୋଗରେ ମୁଁ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲି । କେତୋଟି ନାଟକ ମଧ୍ୟ ମଞ୍ଚସ୍ଥ କରାଇଥିଲି । ସମାଧି ନାଟକଟି ଖୁବ୍ ଆଦୃତ ହୋଇଥିଲା ।

ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ଭିତର କୃତିବାସ ଧରଣୀଧର, ଛାତ୍ରୀ କଳ୍ପଲତା ଓ ସୁଷମାଙ୍କ କଥା ଏବେବି ମନେପଡ଼େ । କୃତିବାସ ଆଜି ଆକାଶବାଣୀର ପଦସ୍ଥ କର୍ମଚାରୀ ଧରଣୀଧର ହାଇକୋର୍ଟ ବାର ଆସୋସିଏସନ୍‌ର ମଧ୍ୟ ପଦସ୍ଥ କର୍ମକର୍ତ୍ତା । କଳ୍ପଲତା ସୁଗୃହିଣୀ ଏବଂ ସୁଷମା ଏବେ ବି ସଙ୍ଗୀତ ସାଧିକା ।

ଚିତ୍ରଗୁପ୍ତ– ତୁମେ ଏତେ କଥା କହିଲଣି, ହେଲେ ରାଜକନିକାର ଗୁରୁତ୍ୱପୂର୍ଣ୍ଣ ଘଟଣାଟି ଏଯାଏଁ ଉଲ୍ଲେଖ କରିନାହଁ ।

ଆଗନ୍ତୁକ– ହଁ ମହାଶୟ, ସେ କଥା ମୁଁ ଭୁଲିନାହିଁ । ଆପଣ ନିଶ୍ଚୟ ରଘୁ ନାଏକଙ୍କ କଥା କହୁଛନ୍ତି ।

ଯମରାଜ– ରଘୁ ନାଏକ । କେଉଁ ରଘୁନାଏକ ।

ଆଗନ୍ତୁକ– ରଘୁନାଏକ ବିରଳା ରିସର୍ଚ୍ଚ ଦିଲ୍ଲୀରେ ମାଳୀ ଭାବେ କାମ କରୁଥିଲେ । ସେ ଜାତିର ପିତା ମହାତ୍ମା ଗାନ୍ଧିଙ୍କ ହତ୍ୟାକାରୀ ନାଥୁରାମ ଗଡ଼ସେକୁ ଧରି ପୋଲିସ ଜିମା ଦେଇଥିଲେ । ଏଥିପାଇଁ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ପାଖରୁ ପରବର୍ତ୍ତୀ କାଳରେ ସେ ପ୍ରଶଂସା ପତ୍ର ପାଇଥିଲେ । ଏଇ ରଘୁନାଏକଙ୍କ ସଙ୍ଗେ ମୋର ପରିଚୟ ହୋଇଥିଲା । ମୁଁ ମୋ ପ୍ରଚେଷ୍ଟାରେ ଏଇ ଦେଶପ୍ରେମୀଙ୍କ କଥା ଆକାଶବାଣୀରେ ପ୍ରଚାରିତ କରାଇଥିଲି । ଆକାଶବାଣୀ କଟକ ମୋର ଚିଠି ଉପରେ ଆସ୍ଥାରଖି ରଘୁନାଏକଙ୍କୁ ଡକାଇ ସାକ୍ଷାତକାର ନେଇଥିଲେ । କଟକ ସହର ସାରା ବୁଲାଇ ଦେଖାଇଥିଲେ । ହେଲେ ଏକ ପ୍ରତିଷ୍ଠିତ ସମ୍ବାଦପତ୍ରକୁ ସେ ସମ୍ବନ୍ଧରେ ତଥ୍ୟ ଯୋଗାଇଥିଲେ ବି ସେ ସମ୍ବାଦପତ୍ର ପ୍ରକାଶ କରି ନଥିଲେ । କିନ୍ତୁ ମୋର ପୁସ୍ତକ ରଙ୍ଗ ବେରଙ୍ଗରେ ରଘୁନାଏକଙ୍କ ଉପରେ ଏକ କ୍ଷୁଦ୍ର ଜୀବନୀ ସ୍ଥାନ ଦେଇଛି ।

ଆଜି ଅବଶ୍ୟ ଜାଗୁଳେଇପଡ଼ା ଠାରେ ଏକ ବିଦେଶୀ କମ୍ପାନୀ ସାହାଯ୍ୟରେ ରଘୁ ନାଏକ ଏବଂ ମହାତ୍ମାଗାନ୍ଧୀଙ୍କ ଯୁଗଳମୂର୍ତ୍ତି ସ୍ଥାପନ ହୋଇଥିବା ଆନନ୍ଦର କଥା । ହେଲେ ଆମ ସରକାର ନୀରବ ରହିବା ଦୁଃଖର କଥା ।

ଯମରାଜ– ଗୋଟିଏ ସ୍ଥାନର ତଥ୍ୟ ମୋତେ ଜଣାଇଲ ଆଗନ୍ତୁକ । ମୁଁ ମହାତ୍ମାଗାନ୍ଧୀଙ୍କ କଥା ଚିତ୍ରଗୁପ୍ତଙ୍କଠୁ ଶୁଣିଛି । ହେଲେ ରଘୁନାଏକଙ୍କ କଥା ଜାଣି ନଥିଲି ।

ଚିତ୍ରଗୁପ୍ତ– ଛାମୁଁ ଓଡ଼ିଆ ଜାତିଟା ପୂଜ୍ୟପୂଜାରେ ବଡ଼ ବୀତସ୍ପୃହ । ରଘୁ ନାଏକ ଅନ୍ୟ କେଉଁ ରାଜ୍ୟର ବାସିନ୍ଦା ହୋଇଥିଲେ ସେ ବି ଗାନ୍ଧିଙ୍କ ପରି ପ୍ରସିଦ୍ଧି ଲାଭ କରିଥାନ୍ତେ ।

ଆଗନ୍ତୁକ– ଚିତ୍ରଗୁପ୍ତ ମହାଶୟ ଠିକ୍ କହିଛନ୍ତି ।

ଯମରାଜ– ଆଜି ଏତିକି ଥାଉ କାଲି ପୁଣି ଶୁଣିବା ।



# ଯମପୁରୀର ଜମାନବନ୍ଦି -୨୪

ଚିତ୍ରଗୁପ୍ତ   କ'ଣ ଆଗନ୍ତୁକ ଜୀ ତୁମର ରାଜକନିକା ସ୍ମୃତି ଏବେ   ବି ଉଜ୍ଜୀବିତ ରହିଛି, ନୁହେଁ ?

ଆଗନ୍ତୁକ– ହଁ ମନ୍ତ୍ରୀ ମହାଶୟ ରାଜକନିକା ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ ମୁଁ ରହିଲି ୩୦/୦୫/୬୮ରୁ ୨୨/୦୫/୭୦ ଯାଏ । ଏଇ ଦୁଇବର୍ଷ ରହଣି ଭିତରେ ଏ ଅଞ୍ଚଳରେ ମୁଁ ଖୁବ୍ ଲୋକପ୍ରିୟ ଥିଲି । ସହକର୍ମୀମାନଙ୍କ ଗହଣରେ ମଧ୍ୟ ମୋର ପ୍ରତିଷ୍ଠା ଥିଲା । ଜଣେ ଶିକ୍ଷକ ଭାବରେ ଯେତିକି ପ୍ରଭାବ ଥିଲା ଆକାଶବାଣୀର ଜଣେ ଗୀତିକାର ଓ କଳାକାର ଭାବରେ ଅଧିକ ପ୍ରଭାବ ଥିଲା । ତେବେ ରାଜକନିକାରୁ ଆସି ମୁଁ ଯୋଗଦେଲି ହିଂଗୁଳା ହାଇସ୍କୁଲ ଶଙ୍ଖବିଲାରେ ।

ଚିତ୍ରଗୁପ୍ତ– ହଁ ତୁମର ହିଙ୍ଗୁଳା ହାଇସ୍କୁଲ ଶଙ୍ଖଚିଲାର ରହଣି ମଧ୍ୟ ଖୁବ୍ ଅଳ୍ପଦିନ ଥିଲା ।

ଆଗନ୍ତୁକ– ହଁ ଛାମୁ ମୋର ଏଠାରେ ରହଣି ପ୍ରାୟ ଦେଢ଼ବର୍ଷ । ଅର୍ଥାତ୍ ୨୫/୦୫/୭୦ରୁ ୩/୧୨/୭୧ ପର୍ଯ୍ୟନ୍ତ ।

ଚିତ୍ରଗୁପ୍ତ– ହେଇ ଛାମୁଁ ଆସିଲେଣି । ଏବେ ତୁମର ଶଙ୍କଚିଲା ରହଣିର ଅଭିଜ୍ଞତା ଉଲ୍ଲେଖ କର ।

ଆଗନ୍ତୁକ– ପ୍ରଣାମ ଛାମୁ !

ଯମରାଜ ହଁ ଆଗନ୍ତୁକ ତୁମେ ତୁମର ହିଙ୍ଗୁଳା ହାଇସ୍କୁଲକୁ ବଦଳି କଥା କହୁଥିଲ ନା । ରାଜକନିକାରୁ ଶଙ୍କଚିଲା ଆସିବା ପାଇଁ ତୁମେ ରାଜନୈତିକ ପ୍ରଭାବ ପକାଇଥିଲ ପରା.....

ଆଗନ୍ତୁକ– ଛାମୁଁ ମୁଁ ପ୍ରକୃତରେ ରାଜନୈତିକ ପ୍ରଭାବ ପକାଇବାକୁ ଚାହିଁ ନଥିଲି । ମାତ୍ର ମୋର କର୍ତ୍ତୃପକ୍ଷ ମୋ ଅସୁବିଧା ଠିକ୍ ଭାବରେ ନ ବୁଝିବାରୁ ମୁଁ ପରୋକ୍ଷ ଭାବରେ ମୋର ପରିଚିତ ରାଜନୈତିକ ବ୍ୟକ୍ତିଙ୍କ ସାହାଯ୍ୟ ଲୋଡ଼ିଥିଲି ।

ଯମରାଜ– ସେଇଟା କିନ୍ତୁ ଭଲ କଥା ନୁହେଁ । ମୁଁ ଜାଣେ ଏହା ତୁମ ଚରିତ୍ରର ଏକ ବ୍ୟତିକ୍ରମ ।

ଆଗନ୍ତୁକ– ମୁଁ ମଧ୍ୟ ମାନୁଛି ଛାମୁ ! ରାଜନୈତିକ ବ୍ୟକ୍ତିଙ୍କ ସଙ୍ଗେ ସମ୍ପର୍କିତ ହେବାକୁ ମୁଁ ପସନ୍ଦ କରେନା ତେବେ ଆଜି ୨୦୦୯ ମସିହାର ରାଜୀନତିଠାରୁ

୧୯୭୦-୭୧ ମସିହା ରାଜନୀତି ବେଶ୍ ସ୍ୱଚ୍ଛ ଓ ନିର୍ମଳ ଥିଲା । ଆଜି ଯେପରି ରାଜନୀତିରେ ମାଫିଆମାନଙ୍କ ପ୍ରଭାବ ବଢ଼ିବଢ଼ି ଚାଲିଛି, ସେତେବେଳେ ଏପରି ନଥିଲା । ଆଜି ଜଣେ ଏମ୍.ଏଲ୍.ଏ. କି ମନ୍ତ୍ରୀଙ୍କୁ ଦେଖିଲେ ଘୃଣା ଲାଗୁଛି । କିନ୍ତୁ ସେତେବେଳେ ସେମାନଙ୍କ ପ୍ରତି ଯଥେଷ୍ଟ ସମ୍ମାନବୋଧ ଥିଲା ।

ଯମରାଜ– ହଁ ତୁମେ ଠିକ୍ କହିଛ ! ମୁଁ ମଧ୍ୟ ଅନୁଭବ କରୁଛି ଆଜି ସମାଜରେ ଯେତେସବୁ ଅନ୍ୟାୟ ଓ ଅନୈତିକ କାର୍ଯ୍ୟ ବଢ଼ିଚାଲିଛି ସେସବୁ ପଛରେ ଅଛି ଏଇ ତଥାକଥିତ ରାଜନେତାଙ୍କ ପ୍ରୋତ୍ସାହନ । ଏଥିପାଇଁ ଆଜି ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିଛି ।

ଚିତ୍ରଗୁପ୍ତ– ହଁ ଛାମୁ ! ଏଇମାନଙ୍କ କାର୍ଯ୍ୟକଳାପର କୁ-ପ୍ରଭାବ ଆମ ଯମପୁରରେ ମଧ୍ୟ ପରିଲକ୍ଷିତ ହେଉଛି । ଏବେ ଯେତେ ସବୁ ପାପାତ୍ମା ଆମ ପାଖକୁ ଆସୁଛନ୍ତି ସେମାନେ ଯେତିକି ଦୁର୍ଦ୍ଧର୍ଷ, ସେତିକି ନିଷ୍ଠୁର । କଥାକଥାକେ ଆମକୁ ମଧ୍ୟ ସେମାନଙ୍କ ରାଜନୈତିକ ପୃଷ୍ଠପୋଷକତାର ଧମକ ଦେବାକୁ ଛାଡ଼ୁ ନାହାଁନ୍ତି ।

ଯମରାଜ– ହଉ ଛାଡ଼ନ୍ତୁ ସେକଥା, କୁହ ଆଗନ୍ତୁକ ! ତୁମ ହିଙ୍ଗୁଳା ହାଇସ୍କୁଲ ଅଭିଜ୍ଞତା ସଂକ୍ଷେପରେ କୁହ ।

ଆଗନ୍ତୁକ– ଛାମୁଁ ଏଇ ହିଙ୍ଗୁଳା ହାଇସ୍କୁଲଟି ଶଙ୍ଖଚିଲାର ଇଷ୍ଟଦେବୀ ମା ହିଙ୍ଗୁଳାଙ୍କ ନାମରେ ନାମିତ । ଏଠାକାର ଅଧିବାସୀ ପ୍ରାୟତଃ ବ୍ୟବସାୟୀ । ବିଶେଷତଃ ବିଭିନ୍ନ ହାଟ ଯଥା ଦାନଗଦି ହାଟ, ତରାପୁର ହାଟ ଏପରିକି ଦୂରଗାମୀ କନ୍ତରାହାଟକୁ ଯାଇ ପାନ ଚୂନ, ପରି ସାମଗ୍ରୀ, ଲୁଗାପଟା, ଚାହା ଜଳଖିଆ ଦୋକାନ ଖୋଲି ବ୍ୟବସାୟ କରିଥାନ୍ତି । ଏହାଛଡ଼ା ଏଇ ଗ୍ରାମରେ ମଧ୍ୟ ପ୍ରତି ରବିବାର ଓ ବୁଧବାର ହାଟ ବସିଥାଏ । ହାଟଟି ସ୍କୁଲର ହତାକୁ ଲାଗି ବସେ । ଏଇ ଗ୍ରାମର ହାନୀଲାଭ ଭଲମନ୍ଦ ନ୍ୟାୟନିଶାପ ସବୁ ମା' ହିଙ୍ଗୁଳାଙ୍କ ପୀଠରେ ବୁଝାସୁଝା ହୁଏ । ହିଙ୍ଗୁଳାଙ୍କ ଯାତ୍ରା ଖୁବ୍ ପ୍ରସିଦ୍ଧିଲାଭ କରିଛି । ଏହି ସମୟରେ ଯଜ୍ଞ ହୋମ, ସାଙ୍ଗକୁ ମେଳା ମହୋତ୍ସବ ଧୂମ୍ ଚାଲେ । ପ୍ରାୟ ୫/୭ ଦିନ ମେଳାରେ ଜନସମାଗମ ହୋଇଥାଏ । ଏହାଛଡ଼ା ଏଇ ଗ୍ରାମରେ ଦଶହରା ବଜାର ଶୋଭାଯାତ୍ରା ତଥା ଦୁର୍ଗାପୂଜାରେ ଯାତ୍ରାଦଳଙ୍କ ଅଭିନୟ ମଧ୍ୟ ଖୁବ୍ ଆନନ୍ଦଦାୟକ ହୋଇଥାଏ ।

ଶିକ୍ଷାନୁଷ୍ଠାନରେ ଛାତ୍ର/ଛାତ୍ରୀ, ଶିକ୍ଷକ/ ଶିକ୍ଷୟିତ୍ରୀମାନଙ୍କ ସହଯୋଗ ମଧ୍ୟ ସର୍ବଦା ରହିଥାଏ । ଆଜି ଏଇ ଶଙ୍ଖଚିଲାର ଏକ ଛୋଟ ଗ୍ରାମ ଠାକୁରପାଟଣାରେ ମଧ୍ୟ ବହୁ ଦେବା/ଦେବୀ ମନ୍ଦିର ନିର୍ମିତ ହୋଇ ଏ ସ୍ଥାନରେ ଏକ ଆଧ୍ୟାତ୍ମିକ ବାତାବରଣ ଖେଳିଯାଇଛି । ଏହା ଏକ ଦେବୀପୀଠ କହିଲେ କିଛି ଅତ୍ୟୁକ୍ତି ହେବନାହିଁ ।

ଚିତ୍ରଗୁପ୍ତ– ତୁମେ ତ କେବଳ ଶଙ୍ଖଚିଲା ଗ୍ରାମର ବର୍ଣ୍ଣନା କରିଚାଲିଛ, ତୁମ କଥା କିଛି କୁହ ।

ଆଗନ୍ତୁକ– ଆପଣ ବି ଥରେ ଏଇ ହିଙ୍ଗୁଳା ପୀଠକୁ ଗଲେ, ବିରାଟ ବଟବୃକ୍ଷର ଛାୟା ଶୀତଳ ପରିବେଶ ଦେଖି ବିମୁଗ୍ଧ ହୋଇଯିବେ । ଥରେ ଚାଲନ୍ତୁନା ସେଠାକୁ ।

ଚିତ୍ରଗୁପ୍ତ– ତେବେ ଶଙ୍ଖଚିଲା ଗ୍ରାମରେ ବି ରାଜନୈତିକ ବିଷବାତ୍ୟା ପ୍ରବାହିତ ହେଲାଣି ଏକଥାକୁ ଅସ୍ୱୀକାର କରିହେବ ନାହିଁ ।

ଆଗନ୍ତୁକ–ତାହାତ ଏବେ ଯୁଗଧର୍ମ ହୋଇଯାଇଛି । ତେବେ ଅନ୍ୟାନ୍ୟ ଗ୍ରାମ ତୁଳନାରେ ଏଠାକାର ଅଧିବାସୀ ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟରେ କାଳ କାଟୁଛନ୍ତି, ଏକଥା ସତ୍ୟ । ଏଇ ବିଦ୍ୟାଳୟର ବାତାବରଣ ମଧ୍ୟ ଅପେକ୍ଷାକୃତ ଶାନ୍ତ । ଏଇ ବିଦ୍ୟାଳୟଟି ସରକାରୀ ହେଲେ ବି ଗ୍ରାମବାସୀ ମାନଙ୍କର ଏହି ବିଦ୍ୟାଳୟ ପ୍ରତି ସହଯୋଗ ମନୋଭାବ ଅତୁଟ ରହିଛି । ଏଇ ବିଦ୍ୟାଳୟର ସ୍ୱଳ୍ପ ରହଣି କାଳରେ ମୁଁ ବେଶ୍ ଆନନ୍ଦ ପାଇଥିଲି । ମୋର ଶିକ୍ଷାଦାନ ସାଙ୍ଗକୁ କଳା ସଂସ୍କୃତିର ବିକାଶ ପାଇଁ ମଧ୍ୟ ମୋର ଯଥାଶକ୍ତି ସହଯୋଗ ଦାନ କରିଥିଲି । ବିଦ୍ୟାଳୟର ପ୍ରଧାନଶିକ୍ଷକ ନିମାଇଁ ବଲ୍ଲଭ ରାୟଙ୍କର ମୋ ପ୍ରତି ଏକ ସ୍ୱତନ୍ତ୍ର ଶ୍ରଦ୍ଧା ଓ ସମ୍ମାନ ବୋଧ ଥିଲା । ଫଳରେ ଛାତ୍ର ଓ ଶିକ୍ଷକ ମହଲରେ ମୋର ପ୍ରଭାବ ମଧ୍ୟ ଅତୁଟ ରହିଥିଲା । ଏହି ପ୍ରଭାବ ଫଳରେ ଏକ ଛାତ୍ର ଧର୍ମଘଟକୁ ଏଡ଼େଇ ଦେବାକୁ ମୁଁ ସଫଳ ହୋଇଥିଲି ।

ତେବେ ଏଠାରେ ଥିବାବେଳେ ୧୯୭୧ ମସିହା ପ୍ରଳୟଙ୍କରୀ ବାତ୍ୟାର ସ୍ମୃତି ଏବେ ବି ମୋର ମନେ ଅଛି । ଏଇ ଗାଆଁରେ ମୋର ଭଉଣୀ ଘର । ଏଣୁ ଝଡ଼ ଥମିଯିବା ପରେ ମୁଁ ପ୍ରଥମେ ଭଉଣୀ ଭିଣୋଇ ଏବଂ ଭଣଜାଙ୍କ କଥା ବୁଝିଥିଲି ।

ତେବେ ସେ ଯାହାହେଉ ଶଙ୍ଖଚିଲାରେ ମୋର ରହଣି ବେଶ୍ ଆନନ୍ଦଦାୟକ ଥିଲା । ମୁଁ ଅବଶ୍ୟ ଘରୁ ସାଇକେଲରେ ଯା-ଆସ କରି ଚାକିରି କରୁଥିଲି । ବେଳେବେଳେ ସେଠାରେ ରହୁଥିଲି । ଏହିଭଳି ଭାବରେ ଦେଢ଼ବର୍ଷ କଟାଇ ମୁଁ ବଦଳି ହୋଇ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ ଡ୍ରୋଲିପୁରକୁ ଆସିଲି ।



# ଯମପୁରୀର ଜମାନବନ୍ଦି -୨୫

ଚିତ୍ରଗୁପ୍ତ– କ'ଣ ଆଜି ବଡ଼ ବିମର୍ଷ ଦେଖା ଯାଉଚ ଯେ– କଥା କ'ଣ ?

ଆଗନ୍ତୁକ– ନାଇଁ ମନ୍ତ୍ରୀ ମହାଶୟ, ଗତକାଲି ରାତି ସାରା ଶଙ୍କଚିଲାରେ ସେଇ ନିର୍ଜନ କୋଠରୀରେ ଏକାକୀ ଥାଇ ୧୯୭୧ର ପ୍ରଳୟଙ୍କରୀ ବାତ୍ୟା କଥା ଚିନ୍ତା କରି ଭୟଭୀତ ହୋଇପଡୁଥିଲି । ମୋ କୋଠରୀ ପାଖରେ ଥିବା ନଡ଼ିଆ ଗଛଟିର ବାହୁଙ୍ଗାଗୁଡ଼ିକର ବାତ୍ୟା ସହ ସଂଗ୍ରାମ ଜନିତ ବିକଟାଳ ଶବ୍ଦ ସାଙ୍ଗକୁ ପ୍ରବଳ ମେଘ ଏବଂ ପ୍ରତି ମୁହୂର୍ତ୍ତରେ ମୁଁ ରହୁଥିବା ସ୍କୁଲ ଗୃହଟିର ଭାଙ୍ଗିଯିବାର ଆଶଙ୍କା ମୋତେ ମ୍ରିୟମାଣ କରି ଦେଇଥିଲା ।

ବହୁ କଷ୍ଟରେ ସେ ଘରକୁ ତ୍ୟାଗ କରି ମୁଁ ଅନ୍ୟମାନେ ଥିବା ସେଇ ବିଦ୍ୟାଳୟର ଏକ ନିରାପଦ ଗୃହକୁ ଗଲି । ସେଠାରେ ମୋର ସହକର୍ମୀ ମାନଙ୍କ ସଙ୍ଗେ ରହିବାରୁ ଟିକେ ଭୟ ଲାଘବ ହେଲା ସିନା କିନ୍ତୁ ସାରା ରାତି ବାତ୍ୟାର ପ୍ରକୋପ ଲାଗି ରହିଥିଲା ।

ଚିତ୍ରଗୁପ୍ତ– ଏଇ ତେବେ ବିମର୍ଷତାର କାରଣ । ହଉ ସେକଥା ଏବେ ଥାଉ· ମନେ ପକାଇ ନିଜକୁ କଷ୍ଟ ଦିଅନା । ବରଂ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ ଜୀବନ କଥା ମନେ ପକାଅ । ଏଇ ଛାମୁ ଆସିଗଲେଣି ।

ଯମରାଜ– କ'ଣ ! ଆଗନ୍ତୁକ ମହାଶୟ– ମନ୍ତ୍ରୀଙ୍କ ସଙ୍ଗେ କି ଖୁସି ଗପ ଚାଲିଛି ।

ଆଗନ୍ତୁକ– ପ୍ରଣାମ ଛାମୁ ! ଆପଣଙ୍କ ଅବର୍ତ୍ତମାନରେ ଏଇ ବିଗତ ୧୯୭୧ର ଝଡ଼ବାତ୍ୟାର କରାଳ ରାତ୍ରିର ସ୍ମୃତି କଥା ମନ୍ତ୍ରୀଙ୍କୁ ଶୁଣାଉଥିଲି ।

ଯମରାଜ– ହଁ ମୁଁ ବି ଜାଣେ ସେ ବାତ୍ୟାର କରାଳ ରୂପ କଥା । କେତେ ଧନ ଜୀବନ ନଷ୍ଟ ହୋଇଥିଲା ସେଥିରେ । ତେବେ ସେ କଥା ଥାଉ– ତୁମ ନୂତନ ସ୍ଥାନର ଅନୁଭୂତି କଥା କୁହ ।

ଆଗନ୍ତୁକ– ଛାମୁ ଆପଣ ଜାଣନ୍ତି ଏଇ ସେକେଣ୍ଡାରୀ ଟ୍ରେନିଂ ସ୍କୁଲଟି ଏକ ସୁନ୍ଦର ସ୍ଥାନରେ ଅବସ୍ଥିତ । ଯାଜପୁର ରୋଡ଼ର ଚୋରଦା ଛକଠାରେ କେନ୍ଦୁଝର ଆଡ଼କୁ ଯାଇଥିବା ରାସ୍ତାରେ ୪/୫ କିଲୋମିଟର ଗଲେ ଦେବୀ ମନ୍ଦିର, ଆମ୍ବତୋଟା ଆଦି ପଡ଼େ, ରାସ୍ତାର ପୂର୍ବ ପାର୍ଶ୍ୱରେ । ସେଇଠି ମଧ୍ୟ ଏଇ ତାଲିମ ଅନୁଷ୍ଠାନଟି

ଅବସ୍ଥିତ । ପୂର୍ବରୁ ଏହା ଇ.ଟି. ବା ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲ ଥିଲା । ପରେ ୧୯୬୯-୭୦ରୁ ଏହା ସି.ଟି. ଟ୍ରେନିଂକୁ ଉନ୍ନିତ ହେଲା । ଏଠାରେ ଏହି ଅନୁଷ୍ଠାନ ସାଙ୍ଗକୁ ପ୍ରାଇମେରୀ ସ୍କୁଲ, ହାଇସ୍କୁଲ ଆଦି ମଧ୍ୟ ଅଛି । ଆଜି ଏହି ସି.ଟି. ସ୍କୁଲଟି ଜିଲ୍ଲାସ୍ତରୀୟ ତାଲିମ ଅନୁଷ୍ଠାନ ଡି.ଆଇ.ଇ.ଟି.ରେ ପରିଣତ ହୋଇଛି । ଏଇ ଅନୁଷ୍ଠାନରେ ମୁଁ ଯୋଗ ଦେଇଥିଲି ୧୦।୧୨।୭୧ରେ । ଏଠାରେ ପ୍ରଥମେ ପର୍ଯ୍ୟାୟରେ ମୁଁ ଥିଲି ୧୦।୧୨।୭୧ରୁ ୭।୭।୭୨ । ଏଠାରୁ ମୁଁ ଅସମୀୟା ଭାଷାରେ ତାଲିମ ନେବା ପାଇଁ ପୂର୍ବାଞ୍ଚଳ ଭାଷା କେନ୍ଦ୍ର ଭୁବନେଶ୍ୱରରେ ଯାଇ ଅସମିୟା ଭାଷାରେ ତାଲିମ ନେଲି । ଏହି ତାଲିମ୍‌ରୁ ଫେରି ପୁନଶ୍ଚ ୧।୫।୭୩ରୁ ୧୨।୫।୯୦ ଯାଏ ଏଠାରେ ସହକାରୀ ଶିକ୍ଷକ ଭାବେ କାମ କଲି ।

ଚିତ୍ରଗୁପ୍ତ– ଅସମିୟା ଭାଷା ଶିଖିବା ବେଳେ ଆସାମ ପରିଭ୍ରମଣ ତୁମର ଖୁବ୍ ଆନନ୍ଦ ଦାୟକ ଥିଲା ନୁହେଁ ! ଆଗନ୍ତୁକ– ହଁ ଚିତ୍ରଗୁପ୍ତଙ୍କୁ କେଉଁ କଥା ଅଛପା ଯେ !

ଯମରାଜ– ହଁ, ତୁମର ଆସାମର ବର୍ଣ୍ଣନା ବରଂ ଆଗ କୁହ । ପରେ ଟ୍ରେନିଂ ସ୍କୁଲ କଥା କହିବ ।

ଆଗନ୍ତୁକ– ଛାମୁ ୭।୭।୭୨ରୁ ୩।୪।୭୩ ଯାଏ ଆଞ୍ଚଳିକ ଭାଷା କେନ୍ଦ୍ର ରହଣି ଜାଗାଟି ଖୁବ୍ ଆନନ୍ଦଦାୟକ ଥିଲା । ଏଠାରେ ଭାରତର ବିଭିନ୍ନ ରାଜ୍ୟରୁ ଆସିଥିବା ବ୍ୟକ୍ତି (ଶିକ୍ଷକ ଓ ଶିକ୍ଷୟିତ୍ରୀ) ଅସମୀୟା, ବଙ୍ଗଳା ଏବଂ ଓଡ଼ିଆ ଶିକ୍ଷା କରୁଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକଙ୍କୁ ଛାଡ଼ି ଅନ୍ୟ ଭାଷାଭାଷୀମାନେ ଏଠାରେ ଓଡ଼ିଆ ମଧ୍ୟ ଶିଖୁଥିବା ଦେଖି ମନରେ ଭାରି ଗର୍ବ ଆସୁଥିଲା । ଆମକୁ (ଓଡ଼ିଆମାନଙ୍କୁ) ଉଭୟେ ବଙ୍ଗଳା କି ଅସମୀୟା ଶିକ୍ଷା କରିବା ଏତେ କଷ୍ଟ ନଥିଲା । କିନ୍ତୁ ଦକ୍ଷିଣ ଭାରତରୁ ଆସିଥିବା ବ୍ୟକ୍ତିମାନଙ୍କୁ ଓଡ଼ିଆ ଉଚ୍ଚାରଣ ବଡ଼ କଷ୍ଟକର ଥିଲା । ସେ ଯାହାହେଉ ଅଳ୍ପ କେଇଦିନ ପରେ ଭାବର ଆଦାନ ପ୍ରଦାନ ଭିତରେ ସେମାନେ ଆମ ମାତୃଭାଷାକୁ ଆୟତ୍ତ କରିବାକୁ ଆଗ୍ରହ ଦେଖାଇଥିଲେ । ଆମେ ମଧ୍ୟ କିଛି କିଛି ତେଲଗୁ, ତାମିଲ, କର୍ଣ୍ଣଡ ଭାଷାର ଶବ୍ଦ ଶିଖିବାକୁ ଚେଷ୍ଟା କରୁଥିଲୁ ।

ଏଠାରେ ଅବସ୍ଥାନ କାଳରେ ମୋର ସହପାଠୀ, କାଳୀ ପ୍ରସନ୍ନ, ରମେଶ ସମେତ ପୁରୀର ଉମେଶ ଚନ୍ଦ୍ର ମହାପାତ୍ର ଏବଂ ରାଜସ୍ଥାନର କୋଠାରୀଙ୍କ କଥା ମନେ ପଡ଼େ । ମନେ ପଡ଼େ ମଧ୍ୟ ଶିକ୍ଷୟିତ୍ରୀ, ସୁହାସିନୀ, ସୁଭଦ୍ରା, ଶାନ୍ତି ପ୍ରଭା ଏବଂ ସଖୀ ଦେଈଙ୍କ କଥା ।

ଏଠାରେ ଦଶମାସ ଖୁବ୍ ଆନନ୍ଦରେ କଟିଥିଲା । ତେବେ ଅଫିସ୍ ସୁପରିଟେଣ୍ଡେଣ୍ଟ ଚକ୍ରଧର ବାବୁଙ୍କ ସହ ଆମର ସମ୍ପର୍କ ଆଦୌ ଭଲ ନଥିଲା । ବରଂ ଅଧ୍ୟକ୍ଷ ଯତିନ୍ଦ୍ର

ମୋହନ ମହାନ୍ତି ଏବଂ ଅଧ୍ୟାପକ ଫଣୀନ୍ଦ୍ର ଭୂଷଣ ଦତ୍ତ ବରୁଆ ଆମମାନଙ୍କ ଗହଣରେ ବେଶ୍ ଆନନ୍ଦ ଦାୟକ ମୁହୂର୍ତ୍ତମାନ କଟାଇଥିଲେ ।

ତେବେ ଏଠାରେ ଶିକ୍ଷାଗ୍ରହଣ ସମୟରେ ଷ୍ଟଡି ଟୁର୍‌ରେ ଦୁଇ ସପ୍ତାହ ପାଇଁ ଆମେ ଆସାମରେ ଗୌହାଟୀ, ଶିବସାଗର ଆଦି ସ୍ଥାନକୁ ଯାଇଥିଲୁ । ସେଠାରେ ବିଭିନ୍ନ ପ୍ରାକୃତିକ ସ୍ଥାନ, ବ୍ରହ୍ମପୁତ୍ର ଶିବମନ୍ଦିର, କାମାକ୍ଷା ପୀଠ, ବଶିଷ୍ଠାଶ୍ରମ, ସାଙ୍ଗକୁ ଗୌହାଟୀ ବିଶ୍ୱବିଦ୍ୟାଳୟ ଶିବସାଗର ବିଶ୍ୱବିଦ୍ୟାଳୟ ପରିଭ୍ରମଣ ବେଶ୍ ଆନନ୍ଦଦାୟକ ଥିଲା । ବିଶେଷତଃ ଶିବସାଗର କଲେଜ ଅଧ୍ୟକ୍ଷ ପରାଗ ଚାଲିହାଙ୍କ ସଙ୍ଗେ ମିଶିବାଟା ଖୁବ୍ ଉତ୍ସାହପ୍ରଦ ଥିଲା । ସେଠାରେ ଉଭୟ ଭାଷାଭାଷୀ (ଅସମୀୟା ଓ ଓଡ଼ିଆ)ଙ୍କ ଏକ ମିଳିତ ସାଂସ୍କୃତିକ କାର୍ଯ୍ୟାନୁଷ୍ଠାନ କରାଗଲା, ଏଥିରେ ମୁଁ ଏକ ଓଡ଼ିଆ ଏକାଙ୍କିକା "ବାଣ ହରଣ''ର ଶକୁନି ଚରିତ୍ର ଅଭିନୟ କରି ବଳିଷ୍ଠ ସଂଳାପ ମାଧ୍ୟମରେ ବେଶ୍ ଚର୍ଚ୍ଚିତ ହୋଇଥିଲି । ତେବେ ଏଠାରେ ହାସ୍ୟ ରସକୁ ବେଶ୍ ପସନ୍ଦ କରନ୍ତି। ଏହି ଗୌହାଟୀରେ ଥିବା ବେଳେ ଅସମିଆ, ଡ୍ରାମା, ସିନେମା ଆଦି ଦେଖିବା ସାଙ୍ଗକୁ ଅଭିନେତା, ଅଭିନେତ୍ରୀ, ଗାୟକ, ଗାୟିକା, ଲେଖକ ଆଦିଙ୍କ ସଙ୍ଗେ ମୋର ବ୍ୟକ୍ତିଗତ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ଏବେ ବି ଗାୟିକା ଅର୍ଚ୍ଚନା ଦାସ, ଖଗନ ମହନ୍ତ, ଲକ୍ଷହୀରା ଦାସ ଲେଖକ, ଦେବକାନ୍ତ ବରୁଆ, ଲକ୍ଷହୀରା ଦାସଙ୍କ କଥା ମନେ ପଡ଼େ । ବିଶେଷତଃ ୧୯୭୩ର ନୂଆବର୍ଷ ଦିନ ଅର୍ଚ୍ଚନା ଦାସଙ୍କ ଘରକୁ ଯାଇ ତାଙ୍କ ପୁତୁରା, ଝିଆରୀଙ୍କ ଗହଣରେ ସମୟ କାଟିବା ଏବଂ ମୋର ସେତେବେଳେ ଗାଆଁରେ ଥିବା ୩/୪ ବର୍ଷର କୁନି ପୁଅ କଥା ମନେପଡ଼ିଯାଏ । ଏହି ଅଳ୍ପ ବୟସରେ ମୋ ପାଖକୁ ତା କୁନି ହାତରେ ଲେଖିକରି ଦେଇଥିବା ଚିଠି ଏଯାଏ ମୋ ପାଖେ ସାଇତା ଅଛି ।

ଯମରାଜ– ସେତେବେଳରେ ୩/୪ବର୍ଷର କୁନିପୁଅ ଏବେ ତ ବେଶ୍ ବଡ଼ ହୋଇଗଲାଣି ।

ଚିତ୍ରଗୁପ୍ତ– ହଁ ଛାମୁ ଏକମାତ୍ର ପୁତ୍ର ଖୁବ୍ ବୁଦ୍ଧିମାନ, ଯଶସ୍ୱୀ ଏବଂ କର୍ମଠ ।

ଆଗନ୍ତୁକ– ମୁଁ ଛାମୁ ବହୁ କଷ୍ଟରେ ତାକୁ ମଣିଷ କରିଛି । ଜଣେ ସାଧାରଣ ଶିକ୍ଷକର ସୀମିତ ଉପାର୍ଜନ ଭିତରେ ମୁଁ ତାକୁ ଜାଭିୟର ଇନିଷ୍ଟିଚ୍ୟୁଟ୍‌ରେ ବ୍ୟୟ ବହୁଳ ଏମ୍.ବି.ଏ. ଶିକ୍ଷା ପ୍ରଦାନ କରିଛି । ଆଜି ଅବଶ୍ୟ ସେ ଏକ ଯଶସ୍ୱୀ କନ୍‌ସଲଟାଣ୍ଟ ଭାବେ ବିଳାସପୂର୍ଣ୍ଣ ଜୀବନ ବିତାଉଛି ।

ଚିତ୍ରଗୁପ୍ତ– କିନ୍ତୁ ଛାମୁ ! ସବୁଠୁ ଆଶ୍ଚର୍ଯ୍ୟକଥା କ'ଣ ଜାଣନ୍ତି– ଏ ମହାଶୟ ଏବେ ବି ସ୍ୱ ପେନ୍‌ସନ୍ ଓ ସଂଚିତ ଅର୍ଥର ସୁଧରେ ଚଳିଥାନ୍ତି । ପୁଅ ବହୁ ଉଭୟ

ରୋଜଗାରକ୍ଷମ ହେଲେ ବି ସେମାନଙ୍କର କୌଣସି ସାହାଯ୍ୟ ଲୋଡ଼ି ନଥାନ୍ତି । ବରଂ ନିଜର ଶକ୍ତି ସାମର୍ଥ୍ୟ ଅନୁସାରେ ନିଜ ପରିବାରକୁ ଖୁସିରେ ରଖିବା ସମେତ ସାଇପଡ଼ିଶାଙ୍କ ଉପକାର କରିଥାନ୍ତି । ବିଶେଷତଃ ଗରିବ ଝିଅମାନଙ୍କୁ ବିବାହ କରାଇବାରେ ଯଥାଶକ୍ତି ଆର୍ଥିକ ସାହାଯ୍ୟ ଦେବା ଏହାଙ୍କ କର୍ତ୍ତବ୍ୟ ବୋଲି ମନେ କରନ୍ତି । ଦୁଃସ୍ଥ ରୋଗୀଙ୍କ ଚିକିତ୍ସା ପାଇଁ ମଧ୍ୟ ଅର୍ଥ ଦାନ କରନ୍ତି ।

ଯମରାଜ– ସାଧୁ ଆଗନ୍ତୁକ ସାଧୁ ! ତୁମେ ତୁମର ହୃଦୟ ଏହିପରି ଉଦାର ରଖ । ଭଗବାନ ତୁମକୁ ସହଯୋଗ ଦେଇ ଚାଲିବେ ।

ଚିତ୍ରଗୁପ୍ତ– ଆମର ଦୂତମାନେ ଭୁଲରେ ସିନା ଏହାଙ୍କୁ ଏଠାକୁ ନେଇ ଆସିଥିଲେ । ନହେଲେ ଏହାଙ୍କ କଥା ଶୁଣି ଖୁବ୍ ଖୁସି ଲାଗୁଛି । ହଉ ପୁଣି କାଲି ଦେଖା ସାକ୍ଷାତ୍ ।



# ଯମପୁରୀର ଜମାନବନ୍ଦି -୨୭

ଚିତ୍ରଗୁପ୍ତ– ହଁ ଛାମୁ ଏବେ ସିଧାସଳଖ ଡୋଲିପୁର ସେକେଣ୍ଡାରୀ ଟ୍ରେନିଂ ସ୍କୁଲ କଥା କହୁଛି । ଏହି ଅନୁଷ୍ଠାନଟି ଛାୟା ଶୀତଳ ଆମ୍ରକୁଞ୍ଜ ଏବଂ ବ୍ରାହ୍ମଣୀ ଦେବୀ ମନ୍ଦିର ନିକଟରେ ଅବସ୍ଥିତ ।

ଯମରାଜ– ଆଚ୍ଛା ! ସେହି ବ୍ରାହ୍ମଣୀ ଦେବୀ ମନ୍ଦିର ସମ୍ବନ୍ଧରେ ଗୋଟିଏ ସୁନ୍ଦର କିମ୍ବଦନ୍ତୀ ଅଛି ପରା । ସଂକ୍ଷେପରେ ଟିକେ କୁହ ।

ଆଗନ୍ତୁକ– ଯେତିକି ଜାଣିଛି ଝିଅଟିଏ ଶାଶୁଘରକୁ ଯିବା ବାଟରେ ଏଇଠାରେ ଆମ୍ବତୋଟା ଦେଖି ସବାରିଆମାନେ ବିଶ୍ରାମ .ନେଲେ । ମାତ୍ର ଝିଅଟିର ସାବତମାଆ କହିଥିଲା ତୁ ଶ୍ୱଶୁରଘରେ ନ ପହଞ୍ଚିବା ଯାଏ ପଛକୁ ଅନାଇବୁ ନାହିଁ । ମୁଁ ତୋ ଚଳିବା ପାଇଁ ସବୁ ଜିନିଷ ଦେଇଛି । ମାତ୍ର ଝିଅଟିର ବୋଧେ ସାବତ ମାଆ କଥାରେ ବିଶ୍ୱାସ ହେଲାନାହିଁ । ସେ ଟିକେ ପଛକୁ ଅନାଇ ଦେଲା । ତାର ମନକୁ ଆସିଲା କି ତା' ମାଆ କାଳେ ହଳଦି କାଠୁଆ ଦେଇ ନଥିବ । ବାଶ୍ ଏତିକି କଥାରେ ଏଠାରେ ଝିଅ ସହିତ ବରଯାତ୍ରୀ ସମସ୍ତେ ପଥର ପାଲଟି ଗଲେ । ତେବେ କେତେକଙ୍କର ମତ ଏଠାରୁ ପାର୍ବତୀ ରୂପୀ କନ୍ୟା ଯାଜପୁର ନିକଟସ୍ଥ ବେଲେଶ୍ୱର ରୂପୀ ଶିବଙ୍କ ପାଖକୁ ଯାଉଥିଲେ । ବିବାହ ଲଗ୍ନ ଅତିକ୍ରାନ୍ତ ହୋଇଯିବାରୁ ସେ ଏଠାରେ ପଥର ହୋଇଗଲେ । ତେବେ ଏଇ ବ୍ରାହ୍ମଣୀ ଦେବୀ ମନ୍ଦିର ପାଖରେ ଥିବା କୂପଟିର ଜଳ ପ୍ରାୟ ହଳଦୀବର୍ଣ୍ଣ । ଛାମୁ ଏ ବିଷୟରେ ମୁଁ ଅଧିକା କିଛି ଜାଣିନାହିଁ । ଗବେଷକମାନେ ଏ ବିଷୟରେ ଅଧିକ କିଛି କହିପାରିବେ । ତେବେ ମା' ବ୍ରାହ୍ମଣୀ ଦେବୀଙ୍କ କଳାମୁଗୁନି ପଥର ନିର୍ମିତ ମୂର୍ତ୍ତି ଦେଖି ଦର୍ଶକ ନିଶ୍ଚୟ ତାଟକା ହୋଇଯିବ । ଏଠାରେ ପ୍ରତି ରଜ ସଂକ୍ରାନ୍ତିରେ ଆଗରୁ ବଡ଼ ମେଳା ବସୁଥିଲା । ଏବେ ଏଠାରେ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକ ମିଶି ଯଞ୍ଜ କରୁଛନ୍ତି ।

ଯମରାଜ– ବେଶ୍ ବେଶ୍ ଏତିକି ଜାଣି ଖୁସିହେଲି । ଏବେ ତୁମେ ତୁମର ବକ୍ତବ୍ୟ ଆରମ୍ଭ କର ।

ଆଗନ୍ତୁକ– ମଣିମା ଆଜି ଚିତ୍ରଗୁପ୍ତ ଦେଖାନାହାଁନ୍ତି ଯେ ।

ଯମରାଜ– ତୁମେ ତୁମର ବକ୍ତବ୍ୟ ପ୍ରଦାନ କର । ସେ ଏକ ବିଶେଷ କାର୍ଯ୍ୟ ସକାଶେ ମର୍ତ୍ତ୍ୟକୁ ଯାଇଛନ୍ତି । ଏବେ ଫେରୁଥିବେ ।

ଆଗନ୍ତୁକ– ହଉ ଛାମୁ, କହୁଛି । ଏଠାର ମାନେ ଏହି ଟ୍ରେନିଂ ସ୍କୁଲରେ ମୁଁ ତିନିଗୋଟି ପର୍ଯ୍ୟାୟରେ କାର୍ଯ୍ୟ କରିଛି । ପ୍ରଥମେ ସି.ଟି. ସ୍କୁଲରେ ଜଣେ ସହକାରୀ ଶିକ୍ଷକ ଭାବରେ । ପରେ ଡି.ଆଇ.ଇ.ଟି. ହେବାପରେ ଜଣେ ଜୁନିଅର ଟିଚର

ଏଡୁକେଟର ଏବଂ ପରେ ପରେ ସିନିୟର ଟିଚର ଏଡୁକେଟର ଭାବରେ କାର୍ଯ୍ୟ ସମ୍ପାଦନ କରିଛି । ସି.ଟି. ସ୍କୁଲରେ ସହକାରୀ ଶିକ୍ଷକ ଭାବରେ ପ୍ରାୟ ୧୨ବର୍ଷ ରହିଛି । ଏହି ସମୟରେ ପ୍ରଥମ ପାଞ୍ଚବର୍ଷରେ ଗୁରୁ ଛାତ୍ର/ଛାତ୍ରୀମାନଙ୍କ ଭିତରେ ଶୃଙ୍ଖଳାବୋଧ ସାଙ୍ଗକୁ ତାଲିମ୍ ଗ୍ରହଣ ପ୍ରତି ଯେଉଁ ନିଷ୍ଠା ଥିଲା ତାହା ଧୀରେ ଧୀରେ କମିବାକୁ ଲାଗିଲା । ତାଲିମ୍ ପରେ ଚାକିରୀ ପାଇବାର ଅନିଶ୍ଚିତତା ବୋଧେ ଗୁରୁ ଛାତ୍ର/ଛାତ୍ରୀଙ୍କୁ ଅମନଯୋଗୀ ଏବଂ ଅନାଗ୍ରହୀ ହେବାର ଖୋରାକ୍ ଯୋଗାଇଲା ।

ପ୍ରଥମେ ପ୍ରଥମେ ଗୁରୁ ଛାତ୍ର/ଛାତ୍ରୀମାନେ ସ୍ୱ ସ୍ୱ ବିଦ୍ୟାଳୟରୁ ତାଲିମ ପାଇଁ ଆସୁଥିଲେ । ତାଲିମ୍ ଶେଷ ହେବାପରେ ପୁଣି ଯାଇ ନିଜ ନିଜ କାର୍ଯ୍ୟରେ ଯୋଗ ଦେଉଥିଲେ । ଏଣୁ ସେମାନଙ୍କର ଭୟ ଥିଲା ଭକ୍ତି ଥିଲା । ଶିକ୍ଷାୟତନର ଶୃଙ୍ଖଳା ରହୁଥିଲା । ବିଶେଷତଃ ମୁଁ ବିଦ୍ୟାଳୟ ମାନଙ୍କର ଗୁରୁ ଛାତ୍ର/ଛାତ୍ରୀମାନଙ୍କ ଶିକ୍ଷାଦାନ ଶିକ୍ଷାଦେବା ଦାୟିତ୍ୱରେ ଥିଲି । ଏଣୁ ମୋ ପ୍ରତି ସେମାନଙ୍କର ସ୍ୱତନ୍ତ୍ର ଭୟ ଓ ସମ୍ମାନବୋଧ ରହୁଥିଲା । ମୁଁ ମୋର କର୍ତ୍ତବ୍ୟନିଷ୍ଠା ଓ କାର୍ଯ୍ୟଦକ୍ଷତା ପାଇଁ ଛାତ୍ର ମହଲରେ ବେଶ୍ ପ୍ରଶଂସିତ ଥିଲି । ଏହି ସମୟ ମଧ୍ୟରେ ତିନିଚାରିଜଣ ପ୍ରଧାନଶିକ୍ଷକ ଆସିଥିଲେ ଏବଂ ବିଦାୟ ନେଇଥିଲେ । କେତେଜଣ ଏଠାରୁ ମଧ୍ୟ ଅବସର ଗ୍ରହଣ କରିଥିଲେ । ସମସ୍ତେ ପ୍ରାୟତଃ ମୋ ଉପରେ ନିର୍ଭରଶୀଳ ଥିଲେ । ଅବଶ୍ୟ କେହି କେହି ମୋ ଛାତ୍ରବତ୍ସଳତା ପ୍ରତି ଈର୍ଷା ପରାୟଣ ଥିଲେ । ମାତ୍ର ମୁଁ ସ୍ଥାନୀୟ ଲୋକ ହୋଇଥିବା ଯୋଗୁଁ ମୋ ବିରୁଦ୍ଧରେ ଖୋଲାଖୋଲି ଯାଇପାରୁ ନଥିଲେ । ତଥାପି ଜଣେ ପ୍ରଧାନଶିକ୍ଷକ ମୋତେ ବଦଳି କରିବାକୁ ଚେଷ୍ଟାକରି ବିଫଳ ହୋଇଥିଲେ । ଅପଦସ୍ଥ ମଧ୍ୟ ହୋଇ ଥିଲେ । ଜଣେ ପ୍ରଧାନଶିକ୍ଷକ ଛାତ୍ରୀମାନଙ୍କ ପ୍ରତି ଅତ୍ୟନ୍ତ ଆସକ୍ତ ହୋଇ ପଡ଼ିବା ଢଙ୍ଗଟା ମୋତେ ଆଦୌ ଭଲ ଲାଗୁ ନଥିଲା । ଏଣୁ ସେଇ ପ୍ରଧାନ ଶିକ୍ଷକଙ୍କ ସଙ୍ଗେ ମୋର ସମ୍ପର୍କଟା କ୍ରମଶଃ ତିକ୍ତ ହେବାରେ ଲାଗିଲା । ଅବଶ୍ୟ ଉକ୍ତ ପ୍ରଧାନଶିକ୍ଷକ ମଧ୍ୟ ଏଠାରେ ତାଙ୍କର ସମ୍ମାନବୋଧ ହରାଇ ବିଦାୟ ନେଲେ । ପରେ ଜଣାଗଲା ଯେ, ଜଣେ ଛାତ୍ରୀ ମଧ୍ୟ ତାଙ୍କ ସହ ଯାଇ ତାଙ୍କ ପାଖରେ ରହିଲେ । ଦୁନିଆକୁ ସେ ଦୁହେଁ ବାପ ଝିଅର ସମ୍ପର୍କ ଦେଖାଇଲେ ବି ସମସ୍ତଙ୍କ ସନ୍ଦେହ ଦୃଷ୍ଟିରେ ରହିଲେ ।

ତେବେ ଏହି ଅନୁଷ୍ଠାନରେ ମୁଁ ଥିବା ବେଳେ ଶିକ୍ଷାଦାନ ସାଙ୍ଗକୁ ପତ୍ରିକା ପ୍ରକାଶନ ଉଦ୍ୟାନ କର୍ମ, ନାଟକ ଲେଖିବା ଓ ଅଭିନୟ କରିବା, ପରିଭ୍ରମଣ ବ୍ୟବସ୍ଥା କରିବା ଆଦି ସମସ୍ତ ପାଠ ଓ ପାଠ୍ୟୋତ୍ତର ବିଷୟ ଉପରେ ସକ୍ରିୟ ଅଂଶଗ୍ରହଣ କରି ବେଶ୍ ହସଖୁସିରେ ସମୟ କଟିଗଲା ।

ଯମରାଜ– ହଉ– ଆଜି ଏତିକି ଥାଉ । ଆଗାମୀ କାଲି ଡି.ଆଇ.ଇ.ଟି.ରେ ତୁମର ଭୂମିକା ସମ୍ପର୍କରେ କହିବ ।



# ଯମପୁରୀର ଜମାନବନ୍ଦି -୨୭

ଆଗନ୍ତୁକ– ଡୋଲିପୁର ସେକେଣ୍ଡାରୀ ଟ୍ରେନିଂ ସ୍କୁଲ ପ୍ରାରମ୍ଭିକ ଅବସ୍ଥାରେ ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲ ଥିଲା । ପରେ ଏହା ସି.ଟି. ସ୍କୁଲରେ ପରିଣତ ହୋଇ ପରବର୍ତ୍ତୀ ଅବସ୍ଥାରେ D.I.E.T.ରେ ପରିଣତ ହେଲା । ଏଠାରେ ମୋର ଚାକିରୀ ମଧ୍ୟ ତିନୋଟି ପର୍ଯ୍ୟାୟ ।

୧ମ ପର୍ଯ୍ୟାୟ ୧୦।୧୨।୭୧ରୁ ୬।୭।୭୨ । ଏଠାରୁ ରିଲିଭ ହୋଇ ପୂର୍ବାଞ୍ଚଳ ଭାଷା କେନ୍ଦ୍ରକୁ ଗଲି, ସେଠାରୁ ମୋର ପୁଣି ୧।୫।୭୩ରୁ ୧୨।୫।୯୦ ଯାଏ ସହକାରୀ ଶିକ୍ଷକ ଭାବେ ଯୋଗଦେଲି । ଏହା ମୋର ୨ୟ ପର୍ଯ୍ୟାୟ । ୩ୟ ବା ଶେଷ ପର୍ଯ୍ୟାୟରେ ସିନିଅର୍ ଟିଚର ଏଡୁକେଟର ଭାବେ ୧୮।୧୦।୯୬ରୁ ୩।୧୨।୯୭ ଯାଏ D.I.E.T.ରେ କାର୍ଯ୍ୟ କରିଥିଲି ।

ଚିତ୍ରଗୁପ୍ତ– ସେ ସବୁତ ଆମ ପାଞ୍ଜିରେ ଅଛି । ତେବେ ତୁମର ଶେଷ ପର୍ଯ୍ୟାୟ କଥା ବିଶଦ ଭାବରେ ଟିକେ କୁହ । ଏଇ ଛାମୁ ବି ବିଜେ କଲେଣି ।

ଯମରାଜ– ହଁ– ଚିତ୍ରଗୁପ୍ତ ଏହି ଆଗନ୍ତୁକଙ୍କ କଥା ଶୁଣିବାକୁ ଯେତିକି ଭଲ ଲାଗୁଛି ତାଙ୍କ କାର୍ଯ୍ୟଧାରା ମଧ୍ୟ ଜାଣିବାକୁ ସେତିକି ଆଗ୍ରହ ହେଉଛି । ଆଗନ୍ତୁକ ଆଉ କାଳବିଳମ୍ବ ନକରି କହିଯାଅ ।

ଆଗନ୍ତୁକ– ହଁ, ଛାମୁ ମୁଁ ଆରମ୍ଭ କରୁଛି । D.I.E.T.ରେ ସିନିଅର ଟିଚର ଏଡୁକେଟର ଭାବେ ଯୋଗଦେଲି ସିନା ମାତ୍ର ୧ମ ଓ ୨ୟ ପର୍ଯ୍ୟାୟ ସମୟର କାର୍ଯ୍ୟଧାରାଠାରୁ ଏହି D.I.E.T.ର କାର୍ଯ୍ୟଧାରା ସମ୍ପୂର୍ଣ୍ଣ ପୃଥକ୍ ଥିଲା । ଏହି ବିଦ୍ୟାଳୟ C.T. School ପର୍ଯ୍ୟାୟରେ ଥିବାବେଳେ ଏଠାରେ ଯେଉଁ ବ୍ୟସ୍ତ କାର୍ଯ୍ୟବହୁଳ ଜୀବନ ଥିଲା । D.I.E.T. ହେଲା ବେଳକୁ ତାହା ଶିଥିଳ ହୋଇଗଲା । ଅନେକ Staff ଯୋଗଦେଲେ । ହେଲେ ପ୍ରାରମ୍ଭିକ ଅବସ୍ଥା ଥିବାରୁ ଏଠାରେ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଆନୁସଙ୍ଗିକ ବ୍ୟବସ୍ଥା ନଥିବାରୁ ଅଳସୁଆମିରେ ବସି ବସି ସମୟ କଟୁଥିଲା । ସପ୍ତାହରେ ୩/୪ଟି ପିରିୟଡ୍ ପାଠ ପଢ଼ାଇବା ଛଡ଼ା ଆଉ କିଛି ବିଶେଷ କାମ ନଥିଲା ।

ଏହି ସମୟରେ ଘରୋଇ B.Ed. କଲେଜରୁ ଛଟେଇ ହୋଇ କେତେକ ଯୁବଅଧ୍ୟାପକ ଅଧ୍ୟାପିକା ଏଠାକୁ ଆସିଥିଲେ । ସେମାନେ ମହାବିଦ୍ୟାଳୟ ସ୍ତରର ଏବଂ ଆମେ କେଇଜଣ ବିଦ୍ୟାଳୟ ସ୍ତରରୁ ପ୍ରମୋଶନରେ ଆସି ଏଠାରେ ଯୋଗ

ଦେଇଥିଲୁ । ଆମ ଭିତରେ ମାନସିକ ସନ୍ତୁଳନ ଠିକ୍ ନଥିଲା । ବିଶେଷତଃ ଅଧ୍ୟକ୍ଷ ଆମମାନଙ୍କୁ ଟିକେ ହୀନ ଦୃଷ୍ଟିରେ ଦେଖୁଥିଲେ । ଉପାଧ୍ୟକ୍ଷ ଆମ ବିଦ୍ୟାଳୟ ସ୍ତରରୁ ଯାଇଥିଲେ । ଏଣୁ ଅଧ୍ୟକ୍ଷ ଏବଂ ଉପାଧ୍ୟକ୍ଷ ମଧ୍ୟରେ ପ୍ରଶାସନିକ ସମନ୍ୱୟ ରହୁ ନଥିଲା । ମୁଁ ଅଧ୍ୟକ୍ଷ ଉପାଧ୍ୟକ୍ଷ ମଧ୍ୟରେ ଏବଂ ବେଳେବେଳେ ଉପାଧ୍ୟକ୍ଷ ଓ ସହକର୍ମୀମାନଙ୍କ ମଧ୍ୟରେ ମାନସିକ ସନ୍ତୁଳନ ରକ୍ଷା ପାଇଁ ଚେଷ୍ଟାକରି ବିଫଳ ହେଉଥିଲି ।

ଏହି ସମୟରେ ମହିଳା ଛାତ୍ରୀ ନିବାସ ପ୍ରତିଷ୍ଠା ହୋଇଥିବାରୁ ଏବଂ କେତେକ ସୁଶ୍ରୀ ଛାତ୍ରୀ ଉପସ୍ଥିତ ଥିବାରୁ ବେଳେବେଳେ ବାହାର ଯୁବକମାନଙ୍କ କୁଦୃଷ୍ଟି ସେମାନଙ୍କ ଉପରେ ପଡ଼ିଥାଏ  ଏଣୁ ଏ ସମସ୍ୟାରୁ ରକ୍ଷା କରିବାକୁ ବେଳେବେଳେ ମୋତେ କିଛିଟା କାର୍ଯ୍ୟ କରିବା ଦରକାର ପଡ଼ିଥାଏ । ସ୍ଥାନୀୟ ଜନସାଧାରଣ ମୋତେ ସାହାଯ୍ୟ କରିଥାନ୍ତି ।

ତେବେ ବେଳେବେଳେ ଅଧ୍ୟାପକମାନଙ୍କର ଗୋଷ୍ଠୀ ବିବାଦ ଅଧ୍ୟାପକ ଓ ଛାତ୍ରୀମାନଙ୍କ ମଧ୍ୟରେ ପ୍ରେମ ଜନିତ ଘଟଣାକୁ ନେଇ ଅନୁଷ୍ଠାନରେ ବିଶୃଙ୍ଖଳା ସୃଷ୍ଟି ହୋଇଥାଏ । ଏଣୁ ମୋତେ ଏହି ଶେଷ ପର୍ଯ୍ୟାୟରେ ଏଠାରେ କାର୍ଯ୍ୟଶୈଳୀର ଉପଯୁକ୍ତ ବିନିଯୋଗ ମିଳୁନଥିବାରୁ  ଆଦୌ ଭଲ ଲାଗୁ ନଥିଲା ।

ଚିତ୍ରଗୁପ୍ତ– ଆଉ ସେଇଥି ପାଇଁ ତୁମେ ଏଠାରୁ ବଦଳି ହୋଇ ଚାଲିଯିବାକୁ ଚେଷ୍ଟା କଲ ।

ଆଗନ୍ତୁକ– ହଁ, ମନ୍ତ୍ରୀମହାଶୟ । ଆପଣଙ୍କୁ ସମସ୍ତ କଥା ତ ଜଣା । ଆପଣ ଜାଣନ୍ତି ଶିକ୍ଷା ବିଭାଗର ଉପରିସ୍ଥ କର୍ମଚାରୀମାନେ ମୋ ପ୍ରତି ଖୁବ୍ ସନ୍ତୁଷ୍ଟ ଓ ସହାନୁଭୂତିଶୀଳ ଥିଲେ । ଏଣୁ ଏଠାରେ ବଦଳି ହୋଇଯିବାରେ ମୋତେ ବିଶେଷ କଷ୍ଟ ହୋଇ ନଥିଲା । ମୁଁ ୩।୧୨।୯୭ରୁ ଏଠାରୁ ବଦଳି ହୋଇ ଏନ୍.ସି. ହାଇସ୍କୁଲ ଯାଜପୁରରୋଡ଼ରେ ପ୍ରଧାନଶିକ୍ଷକ ଭାବେ ଯୋଗଦେଲି ।

ଯମରାଜ– ତୁମେ ବୋଧେ ଏଇ ହାଇସ୍କୁଲ ଛାତ୍ର ଥିଲ ।

ଆଗନ୍ତୁକ– ହଁ, ଛାମୁଁ ଏହି ଅନୁଷ୍ଠାନରେ ମୁଁ ଚାରିବର୍ଷ ଛାତ୍ର ଥିଲି । ଏବେ ମାଟ୍ରିକ ବା ପ୍ରବେଶିକା ଶିକ୍ଷା, ୮ମ, ୯ମ, ୧୦ମ ଶ୍ରେଣୀରେ ସୀମାବଦ୍ଧ । ହେଲେ ଆମ ସମୟରେ ୮ମରୁ ୧୧ଶ ଯାଏ ଚାରିବର୍ଷ ଶିକ୍ଷା ପ୍ରଦାନ କରାଯାଉଥିଲା । ପୁନଶ୍ଚ ୯ମରୁ ୧୧ଶ ତିନିବର୍ଷର ଶିକ୍ଷାଦାନ ଉପରେ ପ୍ରଶ୍ନ ପଡୁଥିଲା । ଏବେ ତ କେବଳ ୧୦ମ ଶ୍ରେଣୀରେ ଅର୍ଥାତ୍ ଗୋଟିଏ ବର୍ଷର ପାଠ ଉପରେ ପରୀକ୍ଷା ପ୍ରଶ୍ନ ଆସୁଛି । ତଥାପି ପରୀକ୍ଷାରେ ଭୀଷଣ କପି ହେଉଛି । ଏବେ ପରୀକ୍ଷା କେନ୍ଦ୍ରଗୁଡ଼ିକ ତାର ପବିତ୍ରତା ହରାଇ ବସିଛି । ନିରୀକ୍ଷକମାନେ ପରୀକ୍ଷା କେନ୍ଦ୍ରରେ ପିଲାଙ୍କୁ ପ୍ରଶ୍ନର ଉତ୍ତର

ଡାକି ଦେଉଛନ୍ତି । ଏଥିପାଇଁ ଉତ୍କୋଚ ମଧ୍ୟ ଗ୍ରହଣ କରୁଛନ୍ତି । ଏସବୁ ଦେଖି ମୋର ଏଇ ଅବସର ଜୀବନରେ ବଡ଼ ପଶ୍ଚାତାପ ଆସୁଛି ।

ଚିତ୍ରଗୁପ୍ତ– ନିକଟରେ ତୁମ ନାତୁଣି ତ ମେଟ୍ରିକ୍ ପରୀକ୍ଷା ଦେଇଥିଲା । ସବୁ ଭଲଭାବେ ଜାଣିଥିବ । ଚିତ୍ରଗୁପ୍ତ ମହାଶୟ ଆପଣ ଜାଣନ୍ତି କି ନା– ମୁଁ ଜାଣେନା । ଅବସରରେ ମୁଁ ବୋଲେ ହୁଁଟି ନାମକ ଏକ ପଲ୍ଲୀଜୀବନଧର୍ମୀ ପତ୍ରିକା ପ୍ରକାଶ କରୁଛି । ପତ୍ରିକାଟି ପ୍ରତି ତିନିମାସରେ ଥରେ ପ୍ରକାଶ ପାଉଛି ।

ଏଇ ବୋଲେ ହୁଁଟି ପତ୍ରିକା ଭିତରେ ମୁଁ ମୋ ଚାରିପାଖର ସମାଜ ଓ ପରିବେଶକୁ ଦେଖି ଯାହା ମନକୁ ଆସୁଛି ତାହାହିଁ ଲେଖୁଛି । ସେଥିରେ ମୋର କେତେ ପାପ କେତେ ପୁଣ୍ୟ ସେ ବିଚାର ମୁଁ ଆପଣଙ୍କ ଉପରେ ଛାଡ଼ି ଦେଇଛି ।

ଚିତ୍ରଗୁପ୍ତ– ମୁଁ ବରାବର ଲକ୍ଷ୍ୟ କରୁଛି ଆଗନ୍ତୁକ, ପ୍ରତିସଂଖ୍ୟା ମୁଁ ମନଦେଇ ପଢୁଛି । ଏଣୁ ତୁମେ ତୁମର କର୍ତ୍ତବ୍ୟ କରିଯାଅ– ଭଲମନ୍ଦ ବିଚାର କରିବା ଭାର ଆମ ଉପରେ ଛାଡ଼ିଦିଅ । ଯମରାଜ ମଧ୍ୟ ତୁମ ପତ୍ରିକା ସମ୍ବନ୍ଧରେ ଅବଗତ ଅଛନ୍ତି ।

–ସେ ମୋର  ପରମ ସୌଭାଗ୍ୟ ଚିତ୍ରଗୁପ୍ତ ମହାଶୟ ତାହାହେଲେ ଯମରାଜଙ୍କୁ ମୁଁ ଚୁମ୍ବକରେ ବୋଲେ ହୁଁଟି ମାଧ୍ୟମରେ ମୋର ବାର୍ତ୍ତା କହିଦେବାକୁ ଖୁବ୍ ଆଗ୍ରହୀ ।

–ମୁଁ ମଧ୍ୟ ଶୁଣିବାକୁ ଆଗ୍ରହୀ ଆଗନ୍ତୁକ ।

–ପ୍ରଣାମ ଯମରାଜ ।

– କୁହ ଆଗନ୍ତୁକ ମନଖୋଲି କୁହ– ମୁଁ ଚିତ୍ରଗୁପ୍ତଙ୍କଠାରୁ ସଂକ୍ଷିପ୍ତ ସୂଚନା ପାଇସାରିଛି । ତେବେ ତୁମେ ନିସଙ୍କୋଚରେ ତୁମ ବାର୍ତ୍ତା କହିପାର ।



# ଯମପୁରୀର ଜମାନବନ୍ଦି -୨୮

ଆଗନ୍ତୁକ (ମୁଁ)- ହଁ ମନ୍ତ୍ରୀ ମହାଶୟ ! ଗତଥର ମୋ ନାତୁଣୀର ମ୍ୟାଟ୍ରିକ୍ ପାସ୍‌ହେବା କଥା ପଚାରି ଥିଲେ । ସେ ସମ୍ବନ୍ଧରେ ଆପଣ ଜାଣି ଅଜଣାଭାବରେ ପ୍ରଶ୍ନ କରୁଥିବାରୁ ମୋତେ ହସ ଲାଗୁଛି । ତଥାପି କହୁଛି । ୮ମ ଶ୍ରେଣୀରେ ୨ ଜଣ ଶିକ୍ଷକ ଅଙ୍କ ଓ ଇଂରାଜୀରେ ଟ୍ୟୁସନ କଲେ । କିନ୍ତୁ ମୋ ନାତୁଣୀ ଅନ୍ୟ ବିଷୟରେ ଭଲ କଲେବି ଟ୍ୟୁସନ ହେଉଥିବା ସବ୍‌ଜେକ୍ଟ ଅଙ୍କ ଓ ଇଂରାଜୀରେ ସେ ଅତି ଖରାପ ନମ୍ବର ରଖିଲା । ଏଣୁ ଯାଣୁଥିବେ ଟ୍ୟୁସନ୍ କିପରି ହେଉଛି ? ନବମ ଓ ଦଶମ ଶ୍ରେଣୀ ପାଇଁ ଜଣେ ଶିକ୍ଷକ ଟ୍ୟୁସନ୍ କରିବାକୁ ଘରକୁ ଆସୁଥିଲେ । ସେ ନବମ ଶ୍ରେଣୀରେ ଏତେଟା ନିଷ୍ଠାପର ନଥିଲେ ବି ଦଶମ ଶ୍ରେଣୀରେ ଆଗ୍ରହ ଓ ନିଷ୍ଠାର ସହ ପାଠ ପଢ଼ାଉଥିଲେ । ମାତ୍ର ଟେଷ୍ଟପରେ ମୁଁ ନିଜେ ଭଲ ଭାବରେ ନାତୁଣୀର ପଢ଼ାପଢ଼ି ପ୍ରତି ଯତ୍ନବାନ୍, ହୋଇନଥିଲେ ତା'ର ପାଶ୍ କରିବା ବହୁ କଷ୍ଟକର ହୋଇଥାଆନ୍ତା । ତଥାପି ପରୀକ୍ଷା ହଲ୍‌ରେ ସେ ଯେ କପି କରିନଥିବ ଏ ବିଶ୍ୱାସ ମୋର ନାହିଁ ।

ଚିତ୍ରଗୁପ୍ତ   ଏଥିରୁ ବର୍ତ୍ତମାନ ଶିକ୍ଷା ବ୍ୟବସ୍ଥାର ଏକ ସ୍ଥୂଳଚିତ୍ର ନିଶ୍ଚୟ ମିଳିଯାଉଛି ।

ଆଗନ୍ତୁକ   ହଁ ମନ୍ତ୍ରୀ ମହାଶୟ ଏବେ ଶିକ୍ଷକମାନେ ଟ୍ୟୁସନ ନାମରେ କେବଳ ଅର୍ଥ ଶୋଷଣ କରୁଛନ୍ତି । ପରୀକ୍ଷାର କପି କରିବାରେ ସୁଯୋଗ ସୃଷ୍ଟିରେ ସହାୟକ ହେଉଛନ୍ତି ।

ଯମରାଜ   - ମୁଁ ଅନ୍ତରାଳରୁ ସବୁ ଶୁଣିଛି । ତୁମେ ତ ନିଜେ ଏକ ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲ । ସେଠାରେ କିପରି ପରୀକ୍ଷା ପରିଚାଳନା କରୁଥିଲ ?

ଆଗନ୍ତୁକ   ଛାମୁ ଆପଣେ ! ଚିତ୍ରଗୁପ୍ତଙ୍କଠାରୁ ସବୁ ବୁଝିପାରନ୍ତି ।

ଚିତ୍ରଗୁପ୍ତ :- ହଁ ଛାମୁ ! ଇଏ ଖୁବ୍ ନିଷ୍ଠାର ସହ ପରୀକ୍ଷା ପରି ଚାଳନା କରୁଥିଲେ । କପିର ସୁଯୋଗ ଆଦୌ ଦେଉନଥିଲେ । ହେଲେ ଏହି ବିଦ୍ୟାଳୟର ଅନ୍ୟ ଶିକ୍ଷକ / ଶିକ୍ଷୟିତ୍ରୀ ମାନେ ଏହାଙ୍କୁ ଆଦୌ ସହଯୋଗ କରୁନଥିଲେ । ଏହି ବିଦ୍ୟାଳୟର ୪ର୍ଥ ଶ୍ରେଣୀ କର୍ମଚାରୀମାନେ ସବୁଠାରୁ ବେଶୀ ଅସୁବିଧାରେ ପକାଉଥିଲେ ଏହାଙ୍କୁ । ଏମାନେ ଶିକ୍ଷାମଣ୍ଡଳାଧୀଶ ଏବଂ ଏମ୍.ଏଲ୍.ଏ.ଙ୍କୁ ତୋଷା ମଦ କରି ସର୍ବଦା ସନ୍ତୁଷ୍ଟ କରି ରଖନ୍ତି ଏବଂ ପ୍ରଧାନ ଶିକ୍ଷକଙ୍କୁ ଉପେକ୍ଷା କରନ୍ତି ।

ଆଗନ୍ତୁକ     ସବୁଠୁ ଅସୁବିଧା ଏହି ବିଦ୍ୟାଳୟର ଅଧିକାଂଶ ଥିଲେ ଶିକ୍ଷୟିତ୍ରୀ । ଏମାନେ ବିଦ୍ୟାଳୟର କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ମୁଣ୍ଡ ପୂରାଇବାକୁ ଚାହାଁନ୍ତି ନାହିଁ । କେବଳ ହିନ୍ଦି ଶିକ୍ଷୟିତ୍ରୀ ଜଣକ ଏହାର ବ୍ୟତିକ୍ରମ ଥିଲେ । ସେହିପରି କେତେକ ଶିକ୍ଷକ ସ୍ଥାନୀୟ ଲୋକମାନଙ୍କୁ ସନ୍ତୁଷ୍ଟ କରି ପ୍ରଧାନଶିକ୍ଷକଙ୍କୁ ଅସୁବିଧାରେ ପକାଇବା ସଙ୍ଗେ ସଙ୍ଗେ ବିଦ୍ୟାଳୟର କ୍ଷତି କରିବାକୁବି ପଛାନ୍ତି ନାହିଁ ।

ଏହି ବିଦ୍ୟାଳୟରେ ମୁଁ ଛାତ୍ର ଥିଲି ଚାରିବର୍ଷ । ଏଣୁ ଏଠାରେ ପ୍ରଧାନ ଶିକ୍ଷକଭାବରେ ଯୋଗଦେବା ଏହି ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ସକାଶେ ମୁଁ ଆପ୍ରାଣ ଉଦ୍ୟମ କରିଥିଲି । ପୁରସ୍କାର ବିତରଣୀ ଉତ୍ସବ, ପରିଭ୍ରମଣ, ପତ୍ରିକା ପ୍ରକାଶନ ଆଦିପାଇଁ ଉଦ୍ୟମ କରି ସଫଳ ହୋଇଥିଲି । କିନ୍ତୁ ଶିକ୍ଷକ ମାନଙ୍କର ସହଯୋଗ ମିଳିଥିଲେ ଆହୁରି ଅଧିକ କିଛି କାର୍ଯ୍ୟ ମୁଁ କରିପାରି ଥାଆନ୍ତି । ତେବେ ମୋର ପ୍ରଧାନ ଶିକ୍ଷକତ୍ୱ କାଳରେ ବିଦ୍ୟାଳୟରେ ୨୫ ଲକ୍ଷରୁ ଉର୍ଦ୍ଧ୍ୱ ଟଙ୍କା ବ୍ୟୟରେ ବିଭିନ୍ନ ଶ୍ରେଣୀ ପ୍ରକୋଷ୍ଠ ଏବଂ ଛାତ୍ରାବାସ ଆଦି ନିର୍ମାଣ କରାଇ ପାରିଥିବାରୁ ମୁଁ ବହୁତ ଆନନ୍ଦିତ । ଏ ଦିଗରେ ମୋର ଜଣେ ସହପାଠୀ ହଜାରୀ ଅବଦୁଲ୍ଲ ବାରୀଙ୍କ ସହଯୋଗ ମଧ୍ୟ ଭୁଲିବାର କଥା ନୁହେଁ । ମୋର ଜଣେ ଅନ୍ତରଙ୍ଗ ସାଙ୍ଗ ସେ । ସେ ଏହି ସମୟରେ ସୁପରିଟେଣ୍ଡେଣ୍ଟ ଇଞ୍ଜିନିୟରଙ୍କୁ କହି ଆବଶ୍ୟକ ଅର୍ଥ ମଞ୍ଜୁର କରାଇ ଦେଇଥିଲେ । ଏମ୍.ଏଲ୍.ଏ. ଅଶୋକ ଦାସଙ୍କର ମଧ୍ୟ ଅସ୍ତି ସୂଚକ ସ୍ୱୀକୃତି ଉକ୍ତ କାର୍ଯ୍ୟକୁ ଆଗକୁ ଆଗେଇ  ନେଇଥିଲା ।

ତେବେ ସବୁଠାରୁ ଦୁଃଖ ଥିଲା ମୋ ସମୟରେ ଛାତ୍ରାବାସଟିର ଉପଯୁକ୍ତ ବ୍ୟବହାର କରାଯାଇ ପାରିନଥିଲା । ତେବେ ଅବସର ପରେ ପ୍ରାୟ ୫ମ ବର୍ଷର ଶେଷ ଆଡ଼କୁ ଅର୍ଥାତ୍ ୨୦୦୬ ମସିହା ଏପ୍ରିଲ୍ ମାସ ବେଳକୁ ଏହି ଛାତ୍ରାବାସଟି ସରକାରଙ୍କ ଦ୍ୱାରା ଡି.ଆଇ. ଅଫିସ୍ ଭାବରେ ବ୍ୟବହୃତ ହେବାଜାଣି ଆନ୍ଦିତ ହେଲି ।

ଚିତ୍ରଗୁପ୍ତ   - କିନ୍ତୁ ଯେଉଁଦିନ ଡି. ଆଇ. ଅଫିସ୍ ଉଦ୍‌ଘାଟିତ ହେଲା, ସେଦିନ ଆପଣଙ୍କୁ ନିମନ୍ତ୍ରଣଟିଏ ମଧ୍ୟ କରାଯାଇ ନଥିଲା ।

ଯମରାଜ   - ମର୍ତ୍ତ୍ୟଭୂମିରେ ଏବେ ପ୍ରତିଭାର ଆଦର କରାଯାଉ ନାହିଁ, ଏବଂ ରାଜନେତାମାନେ ଭାବନ୍ତି ଏଇ ଆଦର ଅଭ୍ୟର୍ଥନା ସବୁ ସେମାନଙ୍କର ପ୍ରାପ୍ୟ ।

ଆଗନ୍ତୁକ   - ହଁ ଛାମୁ ! ଆପଣ ଠିକ୍ କହିଛନ୍ତି । ରାଜନେତାମାନେ ନିଜର ଭୋଟଖଣ୍ଡିକ ହାତକୁ ଆଣିବା ପାଇଁ କୋଟା ରାଜନୀତି ଆରମ୍ଭ କରି ମେଧାଶକ୍ତିର ବିନିଷ୍ଟପାଇଁ ପଛାଉ ନାହାଁନ୍ତି । ସଂରକ୍ଷଣ ନାମରେ ସମଗ୍ର ସମାଜକୁ ଭାଗ ଭାଗ କରି ଭୋଟ ହାତେଇବା ପାଇଁ ସମ୍ବିଧାନ ସଂଶୋଧନ କରୁଛନ୍ତି । ନିଜ ନିଜର ସୁରକ୍ଷା ପାଇଁ

ଏବଂ ଲାଭପାଇଁ ସାଂସଦ ମାନେ ସଂସଦକୁଅପ ବ୍ୟବହାର କରିଚାଲିଛନ୍ତି ଏବଂ ଲାଭ ଜନକ ପଦବୀକୁ ବୈଧିକରଣ କରିବା ପାଇଁ ନିହାତି ତଳସ୍ତରକୁ ଖସି ଯାଉଛନ୍ତି ।

ଚିତ୍ରଗୁପ୍ତ:- ଏବେ ଭାରତ ବିଶ୍ୱରେ ସର୍ବବୃହତ୍ ଗଣତନ୍ତ୍ର ରାଷ୍ଟ୍ର ବୋଲି ଡିଣ୍ଡିମ୍ ପିଟୁଛି । ହେଲେ ଗଣର ମଙ୍ଗଳ ଅପେକ୍ଷା ବ୍ୟକ୍ତି (ଜଣ) ସ୍ୱାର୍ଥ ପାଇଁ ବିଶେଷ ୠ । ରାଜନେତାମାନେ ଦେଶର ସମସ୍ତ ସୁବିଧା ସୁଯୋଗକୁ ହାତେଇବା ପାଇଁ ସବୁବେଳେ ବ୍ୟସ୍ତ ।

ଆଗନ୍ତୁକ - ହଁ ମନ୍ତ୍ରୀ ମହାଶୟ ଏହା ନିରାଟ ସତ୍ୟ ।



# ଯମପୁରୀର ଜମାନବନ୍ଦି -୭୯

ଯମରାଜ :- ଗତଥର ତୁମେ ଭାରତରେ ଚାଲୁଥିଲା ଅଦ୍ଭୁତ ଧରଣର ଗଣତନ୍ତ୍ର କଥା କହୁଥିଲନା ।

ଆଗନ୍ତୁକ ହଁ ଛାମୁଁ ଚିତ୍ରଗୁପ୍ତ ମହାଶୟଙ୍କୁ ପଚାରନ୍ତୁ ସେ ଏ ବିଷୟ ଉପରେ ସବିଶେଷ ତଥ୍ୟ ଦେବେ ।

ଚିତ୍ରଗୁପ୍ତ :- ମଣିମା ! ମର୍ତ୍ତ୍ୟ ଭୂମିର ଏଇ ଶାସନପଦ୍ଧତି ଆମକୁ ବଡ଼ ଅଡୁଆରେ ପକାଇଲାଣି । ସ୍ୱର୍ଗ ପୁରୀରେ ତ ଇନ୍ଦ୍ର ସମସ୍ତ ସୁଖ ସୁବିଧା ଭୋଗ ବିଳାସର ଅଧିକାରୀ । ସାଗର ମନ୍ଥନ ସମୟରେ ବିଷ୍ଣୁଙ୍କର ପକ୍ଷପାତିତା ଯୋଗୁଁ ଦେବ ଅସୁର ମାନଙ୍କ ଭିତରେ ଏବେ ବି ଶତ୍ରୁତା ଲାଗି ରହିଛି । ଠିକ୍ ସେହିପରି ଶ୍ରେଷ୍ଠ ଗଣତନ୍ତ୍ର ରାଷ୍ଟ୍ରରେ ଏବେ ରାଜନେତା ମାନେ ନିଜର ସୁଖ ସୁବିଧା ତଥା ଭୋଗ ବିଳାସ ଏବଂ ଉଦାରୀକରଣ ସଂରକ୍ଷଣ ସକାଶେ ସମ୍ବିଧାନକୁ ଯେପରି ଭାବରେ ସଂଶୋଧନ କରି ଚାଲିଛନ୍ତି ତାହା ଆଗାମୀ ଦିନପାଇଁ ଏକ ଭୟଙ୍କର ବିପ୍ଳବକୁ ସ୍ୱାଗତ କରିବ । ରାଷ୍ଟ୍ରପତି ମହାଶୟଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ରାଜନେତା ମାନଙ୍କର ଲୋଲୁପତା ଏବଂ କ୍ଷମତା ପ୍ରତି ମୋହ ଗଣସ୍ୱାର୍ଥକୁ ପଣ୍ଡ କରିବାରେ ଲାଗିରହିଛି ।

ଯମରାଜ - ଛାଡ଼ନ୍ତୁ ସେ କଥା ମନ୍ତ୍ରୀ ମହାଶୟ । ତାଙ୍କ କଥା ସେମାନେ ବୁଝିବେ କିମ୍ବା ସୃଷ୍ଟିକର୍ତ୍ତା ବ୍ରହ୍ମା ଅବା ପାଳନକର୍ତ୍ତା ବିଷ୍ଣୁ ବୁଝିବେ । ଆମର ସେଥିରେ ମୁଣ୍ଡ ପୂରାଇବା ଦରକାର ନାହିଁ । ନା' କଣ ଆଗନ୍ତୁକ ।

ଆଗନ୍ତୁକ ନାଇଁ ଛାମୁ ! କଥାଟାକୁ ଆଉ ହାଲ୍କା ଭାବରେ ଗ୍ରହଣ କରିବାର ବେଳ ଚାଲି ଗଲାଣି । ଆପଣ ତ ପାପୀମାନଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା କରିଛନ୍ତି । ତେବେ ଏହି ମହାପାପୀମାନଙ୍କୁ ଦୃଷ୍ଟାନ୍ତ ମୂଳକ ଦଣ୍ଡ ଦେବାର ବ୍ୟବସ୍ଥା କଲେ କେଜାଣି କିଛିଟା ଅଧର୍ମ ଆଉ ଅସତ୍ୟ ମାର୍ଗ ତ୍ୟାଗକରି ଜନସ୍ୱାର୍ଥ ପାଇଁ ଟିକେ ଚିନ୍ତା କରନ୍ତେ ।

ଯମରାଜ ତୁମେ ଜାଣିନାହଁ ଆଗନ୍ତୁକ । ସେ ପୁରୀର କାର୍ଯ୍ୟାବଳୀ ଉପରେ ଆମର ନିୟନ୍ତ୍ରଣ ନାହିଁ ।

ଆଗନ୍ତୁକ - ଜାଣିଛି ଛାମୁ ! ତେବେ ସେ ପୁରିର କାର୍ଯ୍ୟାବଳୀ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ତ ବିଷ୍ଣୁ ଆପଣଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏଣୁ ଯଥାସମୟରେ ବିଷ୍ଣୁଙ୍କ ସହିତ ଆପଣ ପରାମର୍ଶ କରିପାରନ୍ତି ।

ଚିତ୍ରଗୁପ୍ତ   ତୁମର ଇଙ୍ଗିତ ଆମେ ବୁଝୁଛୁ - ଏବେ ତୁମେ ତୁମର ବ୍ୟକ୍ତିଗତ ସୁରକ୍ଷା କଥା ଜଣାଅ ।

ଆଗନ୍ତୁକ   ମନ୍ତ୍ରୀ ମହାଶୟ ! ଆପଣଙ୍କ ଇଙ୍ଗିତ ମୁଁ ମଧ୍ୟ ଠିକ୍ ଭାବେ ବୁଝିପାରିଛି । ଏନ୍.ସି. ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବରେ ହେଉ କିମ୍ବା କୋ   ର ବ୍ଲକ୍‌ରେ ସ୍କୁଲ ସବ୍ ଇନ୍‌ସ୍ପେକ୍ଟର ଭାବରେ ହେଉ ମୁଁ ମୋର କର୍ତ୍ତବ୍ୟ ପାଳନରେ କେବେହେଲେ ଅବହେଳା କରିନାହିଁ । କିନ୍ତୁ ଯେଉଁ ସବୁ କାରଣ ଯୋଗୁଁ ମୋ କର୍ତ୍ତବ୍ୟ ସମ୍ପାଦନରେ ବାଧା ଉପୁଜୁଥିଲା, ତାହାର ନିରାକରଣ ପାଇଁ ପରାମର୍ଶକୁ ମୋ ଉପରିସ୍ଥ କର୍ମଚାରୀ ଆଦୌ ଗୁରୁତ୍ୱ ଦେଲେନାହିଁ । ଏଥିପାଇଁ ମୋତେ ବେଳେ ବେଳେ ମୋ ସହକର୍ମୀ ତଥା ମୋ ଅଧସ୍ତନ କର୍ମଚାରୀମାନଙ୍କ ଦ୍ୱାରା ଉପହାସିତ ହେବାକୁ ପଡୁଥିଲା । ଏହାର ଗୋଟିଏ ଉଦାହରଣ ଦେଉଛି - ଥରେ ମୋ ବିଦ୍ୟାଳୟରେ ଶ୍ରେଣୀଗୃହ ଅପରିଷ୍କାର ରହିବାକଥା ଛାତ୍ରମାନେ ମୋ ଦୃଷ୍ଟି ଆକର୍ଷଣ କଲେ । ସଫେଇ କାର୍ଯ୍ୟପାଇଁ କର୍ମଚାରୀ ଥାଉ ଥାଉ ମୁଁ ଛାତ୍ରମାନଙ୍କୁ ଶ୍ରେଣୀଗୃହ ସଫାକରିବା ପାଇଁ କହିବି କାହିଁକି ? ସଫେଇ କର୍ମ ଚାରୀଟି ମଧ୍ୟ ଶ୍ରେଣୀଗୃହ ସଫା କରିବାପାଇଁ ସଙ୍କୋଚବୋଧ କରୁଥାଏ । ଏଣୁ ମୁଁ ନିଜେ ବିଦ୍ୟାଳୟ ଗୃହ ସଫାକରିବା ସକାଶେ ଝାଡୁଧରି ଚାଲିଲି । ଏହାଦେଖି ମୋ ସହକର୍ମୀ ମାନେ ବେଶ୍ କୌତୁହଳୀ ହୋଇ ପଡ଼ିଥାଆନ୍ତି । ତେବେ ଅନ୍ୟଜଣେ ୪ର୍ଥ ଶ୍ରେଣୀ କର୍ମଚାରୀ ମୋ ହାତରୁ ଝାଡୁଟି ଛଡ଼ାଇନେଇ ଗୃହ ସଫା କରିବା ପାଇଁ ଚାଲିଗଲା ।

ଚିତ୍ରଗୁପ୍ତ   - ସେଇ କର୍ମଚାରୀ ହିଁ ଆପଣଙ୍କ ବିଦ୍ୟାଳୟରେ ନିଷ୍ଠାବାନ୍ କର୍ମଚାରୀ । ଆଉ ସେଇଥି ପାଇଁ ଆପଣ ଥିବା ଅବସ୍ଥାରେ ତାକୁ ତା' ଘର ପାଖକୁ ବଦଳି କରିଦେବା ପାଇଁ ସୁଯୋଗ ସୃଷ୍ଟି କରିଥିଲେ ।

ଆଗନ୍ତୁକ :- ହଁ ମହାଶୟ,   ମୁଁ ଭାବିଲି ଏଠାରେ ସମସ୍ତେ ନିଜ କର୍ତ୍ତବ୍ୟ ସମ୍ପାଦନରେ ବିମୁଖ । ଏଣୁ ଯେଉଁ ଲୋକଟି ନିଜ କତ୍ତବ୍ୟ ପ୍ରତି ନିଷ୍ଠାବାନ୍ । ତାକୁ ମାନସିକ ଶାନ୍ତି  ଦେଲେ ସେ ହୁଏତ ଆହୁରି ନିଷ୍ଠାବାନ୍ ହେବ । ଏହା ଭାବି ମୁଁ ତାକୁ ଗୃହ ପାଖ ଏକ ଅନୁଷ୍ଠାନକୁ ବଦଳି ହୋଇ ଯିବାପାଇଁ ସୁପାରିଶ କରିଥିଲି ।

ଯମରାଜ   -ତୁମେ ଠିକ୍ କରିଛ । ତୁମେ ନିଜେବି ତ ତୁମ ଗୃହ ପାଖରେ ଥିଲବୋଲି ଅନେକ କିଛି ସମସ୍ୟାର ସମ୍ମୁଖୀନ ହୋଇବି ସୁଦ୍ଧା ନିଜର କର୍ତ୍ତବ୍ୟ ସମ୍ପାଦନ ଠିକ୍ ଭାବରେ କରି ଚାଲିଥିଲ ।

ଆଗନ୍ତୁକ   ହଁ ଛାମୁ ! ଆପଣଙ୍କ କଥା ଅକ୍ଷରରେ ଅକ୍ଷରେ ସତ । ପରୀକ୍ଷାରେ କପି କରିବାକୁ ଦେବାପାଇଁ ହେଉ କି ନିଯୁକ୍ତି କ୍ଷେତ୍ରରେ ପାତର ଅନ୍ତର କରିବାପାଇଁ

ହେଉ, ନାନା ପ୍ରକାର ପ୍ରଲୋଭନ ମୋତେ ସଦା ସର୍ବଦା ଆମନ୍ତ୍ରଣ କରୁଥିଲା । ପଞ୍ଚ 'ମ'କାର ମଧ୍ୟ ମୋତେ ଆକର୍ଷଣ କରୁଥିଲା । କିନ୍ତୁ ସୌଭାଗ୍ୟ ବଶତଃ ମୁଁ ସେ ସବୁଠାରୁ ଦୂରରେ ଥାଇ ମୋର କର୍ତ୍ତବ୍ୟ କରୁଥିଲି । ଏଥିପାଇଁ ମୋ ସହକର୍ମୀ ମାନଙ୍କର ବିଷ ଦୃଷ୍ଟିରେ ପଡ଼ିଲେବି ଜନସାଧାରଣଙ୍କ ଠାରୁ ପ୍ରଶଂସିତ ହେଉଥିଲି ।

ବିଶେଷତଃ ବ୍ଲକ୍‌ରେ ଏସ୍. ଆଇ. ଥିବାବେଳେ ଗ୍ରାମସଭାଠାରୁ ଆରମ୍ଭ କରି ବାର୍ଦ୍ଧକ୍ୟଭତ୍ତା ପାଇଁ ହିତାଧିକାରୀ ଚୟନ ପ୍ରକ୍ରିୟାରେ ମୋର ନିଷ୍ଠା ଓ ବିଶ୍ୱାସନୀୟତା ବି.ଡ଼ି.ଓ.ଙ୍କୁ ପ୍ରଭାବିତ କରିଥିଲା, ଗରିବ ଜନ ସାଧରଣ ମଧ୍ୟ ମୋତେ ଖୁବ୍ ଭଲ ଦୃଷ୍ଟିରେ ଗ୍ରହଣ କରିଥିଲେ । ଏହା ହିଁ ମୋର ଆତ୍ମସନ୍ତୋଷ ।



# ଯମପୁରୀର ଜମାନବନ୍ଦି -୩୦

ଆଗନ୍ତୁକ - ଛାମୁ ଗତଥର ଏନ୍.ସି. ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିବା ବେଳରେ ଶ୍ରେଣୀ ଗୃହ ସଫା କରିବା ନେଇ କଥାଟିଏ କହିଥିଲି । ଆଉ କେତେଗୋଟି ଘଟଣା ଏଠାରେ ଉଲ୍ଲେଖ କରିବା ଉଚିତ୍ ମନେ କରୁଛି ।

ଯମରାଜ - ନିଃସଙ୍କୋଚରେ କୁହ ଆଗନ୍ତୁକ । ତୁମ କଥା ସବୁ ଗଳ୍ପ ଏବଂ ଉପନ୍ୟାସ ପଢ଼ିବା ଭଳି ଲାଗୁଛି ।

ଆଗନ୍ତୁକ :- ଛାମୁଁ ଆଗରୁ ତ କହିଛି ସେଇ ବିଦ୍ୟାଳୟରେ ମୁଁ ଆଗରୁ ଛାତ୍ର ଥିଲି । ଚାରିବର୍ଷ ମୁଁ ପାଠ ପଢ଼ିଥିଲି । ଏଣୁ ଭାବିଲି ଏବେ ମୁଁ ତ ପ୍ରଧାନ ଶିକ୍ଷକ ଅଛି । ଏଣୁ ଏଠାରେ ଏକ ପୁରାତନ ଛାତ୍ର ସମ୍ମିଳନୀ କଲେ ଭଲ ହୁଅନ୍ତା । ଅନ୍ତତଃ ମୁଁ ୧୯୫୮ ମସିହାରେ ଏଇ ବିଦ୍ୟାଳୟରୁ ମାଟ୍ରିକ୍ ପାଶ୍ କରିଥିଲି । ଏଣୁ ୧୯୫୮ ମସିହାରେ ବ୍ୟାଚ୍‌କୁ ନେଇ ଏକ ସମ୍ମିଳନୀ କରିବି । ଏଥିପାଇଁ ୧୯୫୮ ମସିହାରେ ପାଶ୍ କରିଥିବା ପିଲାମାନଙ୍କ ଠିକଣା ଜାଣିବା ପାଇଁ ଆଡ଼ମିଶନ୍ ରେଜିଷ୍ଟାରରୁ ଟିପି ମୋତେ ଦେବାକୁ ନିର୍ଦ୍ଦେଶ ଦେଲି ।

ମାତ୍ର ଦୁଃଖର କଥା ବହୁ ଚେଷ୍ଟା ଏବଂ ବାରଂବାର ତାଗିଦା ସତ୍ତ୍ୱେ ଛାତ୍ରମାନଙ୍କ ଠିକଣା ପାଇ ପାରିଲିନାହିଁ ।

ଚିତ୍ରଗୁପ୍ତ ନିଜେ ଆଡ଼ମିସନ୍ ରେଜିଷ୍ଟାରୁତ ଟିପି ପାରିଥା'ନ୍ତ ।

ଆଗନ୍ତୁକ :- ହଁ ମନ୍ତ୍ରୀ ମହାଶୟ ଟିପି ପାରିଥାଆନ୍ତି । କିନ୍ତୁ ମୁଁ ଅନୁଭବ କଲି ଏହି ବିଦ୍ୟାଳୟର କୌଣସି କର୍ମଚାରୀ ଏଥିପାଇଁ ଆଗ୍ରହୀ ନୁହଁନ୍ତି । ଆଉ ଯେଉଁଠି ଆଗ୍ରହ ନାହିଁ ସେଠାରେ କୌଣସି କାର୍ଯ୍ୟ ଶୃଙ୍ଖଳାର ସହିତ ହୋଇପାରିବ ନାହିଁ ।

ଚିତ୍ରଗୁପ୍ତ - ହଁ ତାହା ଠିକ୍ କଥା । ବାଧ୍ୟବାଧକତାରେ କାମଟା କରାଯାଇପାରେ କିନ୍ତୁ ତ୍ରୁଟି ଶୂନ୍ୟ ହୋଇ ନପାରେ ।

ଆଗନ୍ତୁକ :- ଆଉ ଠିକ୍ ସେହି କାରଣରୁ ମୁଁ ଏ ଦିଗରେ ଆଗେଇଲି ନାହିଁ । ମୁଁ ଏଠାରେ ପ୍ରଧାନ ଶିକ୍ଷକ ହୋଇ ଆସିବା ପୂର୍ବରୁ ଏହି ବିଦ୍ୟାଳୟର ପୁରାତନ ଛାତ୍ର ସଂସଦ ଗଢ଼ାଯାଇ ଛାତ୍ର ସମ୍ମେଳନ କରାଯିବା ପାଇଁ ଯୋଜନା ହୋଇ ମଧ୍ୟ ସଫଳ ହୋଇନଥିଲା । ମୁଁ ଆସି ମଧ୍ୟ କିଛି କରିପାରିଲି ନାହିଁ । କାରଣ ନା ଏଥିରେ ସ୍ଥାନୀୟ ଜନ ସାଧାରଣମାନଙ୍କର ଆଗ୍ରହ ଥିଲା ନା ଥିଲା କର୍ମଚାରୀ ମାନଙ୍କର ।

ଚିତ୍ରଗୁପ୍ତ :- ହୁଁଏହା ଠିକ୍ କଥା ।

ଆଗନ୍ତୁକ :- ଆଉ ଏକ ଉଦାହରଣ ଦେଉଛି ଶୁଣନ୍ତୁ । ଥରେ ମୁଁ ଭାବିଲି ଏଠାରେ ସ୍କୁଲ କମ୍ପ୍ଲେକ୍ସଟିଏ ଗଠନ କରିବି । ମୋ ବିଦ୍ୟାଳୟଟି କେନ୍ଦ୍ର ବିଦ୍ୟାଳୟରେ ପରିଣତ ହେବ । ମ୍ୟୁନିସିପାଲିଟିର ଅନ୍ୟାନ୍ୟ ହାଇସ୍କୁଲ ଗୁଡ଼ିକ ଏହା ଅଧୀନରେ ରହି ମିଳିତ ଭାବରେ କାର୍ଯ୍ୟ କରିବ । ଫଳରେ ମ୍ୟୁନିସିପାଲିଟିରେ ଥିବା ହାଇସ୍କୁଲଗୁଡ଼ିକ ମଧ୍ୟରେ ଉତ୍ତମ ସମନ୍ୱୟ ସ୍ଥାପନା ହେବ । ପରସ୍ପର ପରସ୍ପରର ସହଯୋଗ ନେଇ ଉପଯୁକ୍ତ ଶିକ୍ଷାଦାନ, କ୍ରୀଡ଼ା, ପୁରସ୍କାର ବିତରଣୀ ଉତ୍ସବ ଆଦି କରି ହେବ ଏବଂ ସାଂସ୍କୃତିକ ବାତାବରଣ ମଧ୍ୟ ସୃଷ୍ଟି କରିହେବ । ମୁଁ ଏଇ ମର୍ମରେ କେତେଜଣ ପ୍ରଧାନଶିକ୍ଷକଙ୍କ ସହ ବ୍ୟକ୍ତିଗତ ଆଲୋଚନା ମଧ୍ୟ କରିଥିଲି । ମାତ୍ର..... ।

ଚିତ୍ରଗୁପ୍ତ– ମାତ୍ର ଏଥିରେ ବି ବିଫଳ ହେଲେ । କାରଣ ଆପଣ ଲେଖିଥିବା ଚିଠିଗୁଡ଼ିକ ବିଦ୍ୟାଳୟର ପ୍ରଧାନଶିକ୍ଷକଙ୍କର ହସ୍ତଗତ ହୋଇପାରିଲା ନାହିଁ ।

ଆଗନ୍ତୁକ– ଆପଣ ତ ସବୁ ଜାଣିଛନ୍ତି । ଏପରି କାହିଁକି ହେଲା ତାହା ମଧ୍ୟ ଜାଣିଛନ୍ତି ।

ଚିତ୍ରଗୁପ୍ତ– ହଁ, ଆପଣଙ୍କ ବିଦ୍ୟାଳୟର ଜନୈକ ବରିଷ୍ଠ ସହକାରୀ ଶିକ୍ଷକ ଜଣେ ଜଣେ ସହକାରୀ କର୍ମଚାରୀଙ୍କୁ ହାତରେ ରଖି ସର୍ବଦା ଆପଣଙ୍କୁ ହଇରାଣ କରିବା ମତଲବରେ ଥିଲେ ।

ଆଗନ୍ତୁକ– ମୁଁ କିନ୍ତୁ ତାଙ୍କୁ ଜାଣି ଥିଲେ ବି କିଛି କରିପାରୁ ନଥିଲି । କାରଣ ଶିକ୍ଷା ମଣ୍ଡଳାଧୀଶର କର୍ମଚାରୀଙ୍କ ସହ ତାଙ୍କର ଖୁବ୍ ମଧୁର ବ୍ୟବସାୟିକ ସମ୍ପର୍କ ଥିଲା । ତେବେ ସେ ମୋର କିଛି କ୍ଷତି କରିପାରୁ ନଥିଲେ। କାରଣ ମୁଁ ମଧ୍ୟ ସ୍ଥାନୀୟ ବାସିନ୍ଦା ଥିଲି । ତା'ଛଡ଼ା ମୋର କାର୍ଯ୍ୟଧାରା କାହାର କ୍ଷତି କରୁ ନଥିବା ଯୋଗୁଁ ସ୍ଥାନୀୟ ପ୍ରଭାବଶାଳୀ ବ୍ୟକ୍ତି ମୋ ବିରୁଦ୍ଧରେ ଯାଇ ପାରୁନଥିଲେ ।

ଚିତ୍ରଗୁପ୍ତ– ତଥାପି ସହଯୋଗ ମିଳିଥିଲେ ଆପଣ ଆପଣଙ୍କ ବିଦ୍ୟାଳୟରେ କ୍ରୀଡ଼ା ଉତ୍ସବ ପୁରସ୍କାର ବିତରଣୀ ଉତ୍ସବ ସମେତ ଅନ୍ୟାନ୍ୟ କୋ-କରିକୁଲାର କାର୍ଯ୍ୟ ମଧ୍ୟ ଅଧିକ ଭଲ ଭାବରେ କରିପାରିଥାଆନ୍ତେ ।

ଆଗନ୍ତୁକ– ନିଶ୍ଚୟ, ଆପଣ ଯାହାକିଛି କହୁଛନ୍ତି ଠିକ୍ କହୁଛନ୍ତି ।

ଯମରାଜ– ତଥାପି ଏଇ ପ୍ରତିକୂଳ ପରିସ୍ଥିତିରେ ବି ତୁମେ ତୁମର କର୍ତ୍ତବ୍ୟରେ ଅବହେଳା କରିନାହଁ । ଏଥିପାଇଁ ତୁମ ବିଦ୍ୟାଳୟ ମଧ୍ୟ ଆଦର୍ଶ ବିଦ୍ୟାଳୟ ଭାବରେ ଟ୍ରଫି ହାସଲ କରିଥିଲା ।



# ସମ୍ପାଦକୀୟ

"ବୋଲେ ହୁଁଟି'' ଏକ ନିଛକ ପଲ୍ଲୀ ଜୀବନ ଉପରେ ଆଧାରିତ ପତ୍ରିକା । ଆଜି ଯେଉଁମାନେ ସହରରେ ରହି ବେଶ୍ ପ୍ରତିଷ୍ଠିତ ଲେଖକ ବା ଲେଖିକା, ସେମାନଙ୍କ ଭିତରୁ ଅନେକଙ୍କ ବାଲ୍ୟ ଓ କୈଶୋର କଟିଥିବ ଗାଆଁରେ । ଏହିଭଳି ବହୁ ଲେଖକ ଲେଖିକାଙ୍କୁ ମୁଁ ଭଲ ଭାବରେ ଜାଣେ । ସେମାନଙ୍କ ପାଖକୁ ବ୍ୟକ୍ତିଗତ ଭାବେ ଚିଠି ଲେଖି, ଫୋନ୍ କରି ଲେଖାଟିଏ ପାଇପାରିଲି ନାହିଁ । ସେମାନେ ହୁଏତ ନିଜ ଗାଆଁକୁ ଭୁଲିଗଲେଣି କିମ୍ବା ଏପରି ଏକ ନୂଆ ପତ୍ରିକା ଏବଂ ମୁଁ ଜଣେ ଅନାମଧେୟ ସଂପାଦକ ହେବାକୁ ମନବଳେଇଛି, ଏଣୁ ସେମାନେ ସାହାଯ୍ୟର ହାତ ବଢ଼ାଇଲେ ନାହିଁ ।

କିନ୍ତୁ ଯେଉଁ ଲେଖକ ଲେଖିକାଗଣ ମୋତେ ସାହାଯ୍ୟ କରିବା ପାଇଁ ଆଗେଇ ଆସିଛନ୍ତି, ସେମାନଙ୍କ ପାଖରେ ମୁଁ କୃତଜ୍ଞ ।

ସହରୀ ଜୀବନ ଓ ଆଧୁନିକତାକୁ ନେଇ ବହୁ ପତ୍ରପତ୍ରିକା ବାହାରୁଥିବା ବେଳେ ନିଛକ ପଲ୍ଲୀର ଚିତ୍ର ବହନ କରୁଥିବା ଏ ପତ୍ରିକାଟି କେତେଦୂର ପାଠକ ପାଠିକା ପାଖେ ଆଦୃତ ହେବ ତାହା ଦେଖିବାର କଥା କାରଣ ଆମ ରାଜ୍ୟରେ ଗ୍ରାମାଞ୍ଚଳ ଅପେକ୍ଷା ସହରୀ ପାଠକ ପାଠିକା ସଂଖ୍ୟା ବେଶି । ତଥାପି ପରବର୍ତ୍ତୀ ସଂଖ୍ୟା ପାଇଁ ଏ ପତ୍ରିକା ପ୍ରତି ସହଯୋଗରୁ ତାହା ପ୍ରମାଣିତ ହେବ ।

ଜୟହିନ୍ଦ୍

ବି.ଦ୍ର.:- ପ୍ରଥମେ କୋରେଇ ଫୁଲ ନାମରେ ଲେଖା ଆହ୍ୱାନ କରାଯାଇଥିଲା । କିନ୍ତୁ ଦିଲ୍ଲୀରୁ ବିଭାଗୀୟ ଅନୁମତି 'ବୋଲେ ହୁଁଟି' ପାଇଁ ଆସିଥିବାରୁ ପତ୍ରିକାର ନାମକରଣ 'ବୋଲେ ହୁଁଟି' କରାଗଲା ।



# ସମ୍ପାଦକୀୟ

ଆମେ ସମସ୍ତେ ଗାଆଁ ପାଇଁ କୁମ୍ଭୀର କାନ୍ଦଣା କାନ୍ଦୁଛେ । କଥା କଥାକେ କହୁଛେ ଗାଆଁର ଉନ୍ନତି ନହେଲେ ଆମ ରାଜ୍ୟର ଉନ୍ନତି ଅସମ୍ଭବ । ଅଥଚ ଗାଆଁର ବିଦ୍ୟୁତିକରଣ, ଗାଆଁର ଜଳ ପ୍ରକଳ୍ପ ନିର୍ମାଣ, ଗାଆଁର ସଂଯୋଗୀ କରଣ କାର୍ଯ୍ୟରେ ଅବହେଳା ସାଙ୍ଗକୁ ବ୍ୟାପକ ଦୁର୍ନୀତି ପରିଲକ୍ଷିତ ହେଉଛି । ମଞ୍ଜୁରୀ ପ୍ରାପ୍ତ ଟଙ୍କା ଖର୍ଚ୍ଚ ହୋଇ ନପାରି ପଡ଼ି ରହୁଛି ।

ବାତ୍ୟାଗ୍ରସ୍ତ ଅଞ୍ଚଳର ଲୋକଙ୍କ ପାଇଁ ଏଯାଏଁ ଗୃହ ନିର୍ମାଣ ଆଶାନୁରୂପ ହେଲା ନାହିଁ । ଏବେ ବି କେତେକ ସ୍ଥାନରେ ଛାତ୍ରଛାତ୍ରୀ ମୁକ୍ତ ଆକାଶ ତଳେ କିମ୍ବା ବୃକ୍ଷ ମୂଳେ ଶିକ୍ଷା ଗ୍ରହଣ କରୁଛନ୍ତି ।

ନିର୍ମାଣ କାମ ପାଇଁ ଏବେ ସରକାର ଜିଲ୍ଲାପାଳମାନଙ୍କୁ ନୋଡ଼ାଲ ଅଫିସର ଏବଂ ତହସିଲଦାରମାନଙ୍କୁ ପର୍ଯ୍ୟବେକ୍ଷକ/ ପରିଚାଳକ ଭାବେ ଦାୟିତ୍ୱ ଦେଇଛନ୍ତି । ଯେତେ ଯାହା ବ୍ୟବସ୍ଥା କଲେ ବି ଗ୍ରାମାଞ୍ଚଳର ଉନ୍ନତି ପାଇଁ ସହରୀ ବାବୁଭାୟାଙ୍କ ନିଷ୍ଠାର ଅଭାବ ଯୋଗୁ ଗ୍ରାମାଞ୍ଚଳ ପାଇଁ ଉଦ୍ଦିଷ୍ଟ ଯୋଜନା ଠିକ୍ ଭାବେ କାର୍ଯ୍ୟକାରୀ ହେଉନାହିଁ ।

ଗୋଟିଏ ଉଦାହରଣ ଦେଉଛି– ଗଞ୍ଜାମ ଜିଲ୍ଲାର ଖଲିକୋଟ ବ୍ଲକ୍ ଅନ୍ତର୍ଗତ ପେଣ୍ଡାପଲ୍ଲୀ ଗାଆଁର ଲୋକେ ବିଦ୍ୟୁତ୍ ଯୋଗାଣ ପାଇଁ ପନ୍ଦର ବର୍ଷ ତଳୁ ଦେୟ ଦାଖଲ କରିଥିଲେ ବି ଆଜି ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୋଇ ନଥିବା ଶୁଣାଯାଏ ।

ଏଣୁ ହେ ମୋର ବଡ଼ ବଡ଼ କର୍ମଚାରୀ ଭାଇଭଉଣୀମାନେ, ଯିଏ ଯେଉଁ ପଦପଦବୀରେ ଯେଉଁଠି ଥା'ନ୍ତୁ– ଥରେ ଗାଆଁକୁ ଦେଖନ୍ତୁ । ଆପଣଙ୍କ ଭିତରୁ ଶତକଡ଼ା ୯୫ ଭାଗଙ୍କ ଏକ୍ରୁତ୍ରିଶାଳ ନିଶ୍ଚିତ ଭାବେ ଗାଆଁରେ ଥିବ ।

ଜୟହିନ୍ଦ୍- ଜୟ ଉତ୍କଳ- ଜୟ ମୋ ଗାଆଁ



**ସମ୍ପାଦକଙ୍କ କଲମରୁ...**

# 'ପଲ୍ଲୀ କେବେ ମରିପାରେନା'

ସେଦିନ ଡିସେମ୍ବର ଛ'ର ଶୀତ ସକାଳ । ପ୍ରାତଃ ଭ୍ରମଣ ପାଇଁ ବାହାରି ପଡ଼ିଲି । ଦେହରେ ପ୍ରଚୁର ଶୀତବସ୍ତ୍ର ଥିଲେ ବି ମୁହଁରେ ଥଣ୍ଡା ପବନ ଛୁଇଁ ଦେହ ଥରାଇ ଦେଉଥାଏ । ସତେ ଅବା ଜଣାଇ ଦେଉଥାଏ ବାର୍ଦ୍ଧକ୍ୟର ଉପସ୍ଥିତି । ବାର୍ଦ୍ଧକ୍ୟକୁ ଖାତିରି ନକରି ଆଗେଇ ଚାଲିଥାଏ । ପ୍ରାତଃଭ୍ରମଣ ସାଙ୍ଗକୁ କୃଷି କ୍ଷେତ୍ରର ଦୃଶ୍ୟ ଅନୁଭବର ଲୋଭ ବି ଥାଏ । ଖଜୁରୀଆ ବିଲରେ ଧାନକଟା ସରିଛି । ଧାନର ଧାଡ଼ି ଲମ୍ବି ଯାଇଛି କିଆରି ଭିତରେ । ତା' ଉପରେ ବିଛେଇ ପଡ଼ିଛି ମାଇକାକରର ସରୁ ରେଶମି ଚଦର । ସୂର୍ଯ୍ୟଙ୍କର ପହିଲି କିରଣ ପଡ଼ି ଚିକିମିକି ବୁଟିକାମର ଭ୍ରମ ସୃଷ୍ଟି କରୁଛି । ଏ ଦୃଶ୍ୟ ଦେଖି ମୁଁ ବିଭୋର ହୋଇଗଲି । କାକର ଭିଜା ଘାସରେ ଖସଡ଼ା ବାଟ । ଟିକେ ହୁସିଆର ନହେଲେ କଚଡ଼େ ଦି କଚଡ଼ା ଖାଇବାର ଆଶଙ୍କା । ତଥାପି ଖୁବ୍ ହୁସିଆରରେ ଧାନ ଧାଡ଼ିଗୁଡ଼ିକ ଗଣି ଚାଲିଲି... ଏକ... ଦୁଇ... ତିନି... ଚାରି.... । ପ୍ରତି ଶହେବିଡ଼ା ଗଣି ଧାନ ଧାଡ଼ିରୁ ଗୋଟିଏ ଧାନ କେଣ୍ଡା ଆଣି ହାତରେ ଧଇଲି । ଏମିତି ଗଣି ଚାଲିଲି । ପାଞ୍ଚ କିଆରି ବିଲରେ ଧାନ ହୋଇଛି ପ୍ରାୟ ଦୁଇ କାହାଣ । କାହାଣକ ଷୋଳପଣ । ପଣକ କୋଡ଼ିଏ ଗଣ୍ଡା । ଗଣ୍ଡାକ ଚାରି ବିଡ଼ାର ହିସାବ ଏବେ ବି ପଲ୍ଲୀର କୃଷକ ପାଖରେ ରହିଛି ।

ଧାନ ଧାଡ଼ି ଗଣା ସରିବା ପରେ ଚାଲିଲି ଚାରଦା ବାଟ ଦେଇ ଗେଟ୍ ଘର । ଗେଟ୍ ଘର ରେଲ୍‌ଲାଇନ୍ କଡ଼ରେ । ସେଇବାଟ ଦେଇ ପିଚୁ ରାସ୍ତାରେ ମୁଁ ମୋ ଘରକୁ ଫେରିବି । ଦେଖିଲି ସହରି ସଭ୍ୟତାର ଜୟଗାନ କରି ରେଲ୍‌ଲାଇନ୍ ଲମ୍ବି ଯାଇଛି । ତା' ଉପରେ ଛୁକ୍‌ଛୁକ୍ ଧୂଆଁ ଛାଡ଼ି ରେଲ୍ ଗାଡ଼ି ମାନ ଅଣନିଶ୍ୱାସୀ ହୋଇ ଧାଇଁ ଚାଲିଛନ୍ତି । ହେଲେ ସେଇ ରେଲ୍ ଧାରଣା କଡ଼େ କଡ଼େ ନାଗଫେଣିଆ କଣ୍ଟାର ସିଜୁ ଠିଆହୋଇ ପଲ୍ଲୀର ଜୟଗାନ କରୁଛି । ସିଝୁ ଗଛରେ ସରାଗରେ ମାଡ଼ି ରହିଛି ଗୁଂଜ ଲତା । ଗୁଂଜ ଫଳ ପେନ୍ଥି ପେନ୍ଥି ପାଚି ଖିଲି ଖିଲି ହସୁଛି । ଟିକେ ଆଗକୁ ଚାଲିଲି । ଦେଖିଲି କଣ୍ଟିକୋଳି ବୁଦା । ମନେ ପଡ଼ିଗଲା ପିଲାଦିନ କଥା । ଏ ବୁଢ଼ା ବୟସରେ ମଧ୍ୟ ଏପଟସେପଟ ଧାଇଁ କଣ୍ଟିକୋଳି ତୋଳିଲି । ମୋତେ ଦେଖି ଦି'ଚାରିଟା ଏଣୁଅ ଡିଆଁଡେଇଁ କରି ବୁଦାରେ ପଶିଗଲେ । ଗୋଟେ କଜଳପାତି ବୁଦା ଭିତରୁ ବାହାରି ଫୁର୍‌ର କିନା ଉଡ଼ିଗଲା । ଭାରି ଇଚ୍ଛା ହେଉଥିଲା ତା' ପଛରେ ଧାଇଁବାକୁ, ସେ କୁଆଡ଼େ ଗଲା ଉଡ଼ିଉଡ଼ି ତାହା ଲକ୍ଷ୍ୟ କରିବାକୁ ।

ଏତିକିବେଳେ ଟ୍ରେନ୍ ଶବ୍ଦ ଦୂରରୁ ଶୁଭିଲା । ହଠାତ୍ ବୁଦା ପାଖରୁ ତଳକୁ ପୁଣି ଚାଲି ଆସିଲି ଚଲାବାଟକୁ । ଟିକେ ଉପରକୁ ଉଠିଲେ ପଡ଼ିବ ପିଚୁ ରାସ୍ତା । ସହରୀ ସଭ୍ୟତାର ମାଇଲ୍ ଖୁଣ୍ଟ ।

ହେଲେ ପିଚୁ ରାସ୍ତାରେ ଯାଉଯାଉ ଭାବୁଥାଏ– ଏ ଯାନ୍ତ୍ରିକ ସଭ୍ୟତା ଯେତେ ଶକ୍ତିଶାଳୀ ହେଉ, ପଲ୍ଲୀ ପ୍ରକୃତିକୁ କେବେ ମାରି ପାରିବନି । ଏଇଥି ପାଇଁ ତ ଯନ୍ତ୍ର ଦାନବର ପାଖେପାଖେ ଥାଇବି ପ୍ରକୃତି ଖିଲ୍‌ଖିଲ୍ ହୋଇ ହସୁଛି !

ଧନ୍ୟ ମୋ ଗାଆଁ– ଧନ୍ୟ ମୋ ପଲ୍ଲୀର ସୌନ୍ଦର୍ଯ୍ୟ । ସେ ସୌନ୍ଦର୍ଯ୍ୟ କ'ଣ ମିଳିବ କେବେ ସହରୀ ପାର୍କରେ ? ...ନା  କେବେ ନୁହେଁ । ବିଉଟି ପାର୍ଲର୍‌ରୁ ସଦ୍ୟ ଫେରିଥିବା ଲଳନାଠୁ ଅସଜଡ଼ା କେଶବତୀ ପଲ୍ଲୀ ବଧୂ ଖୁବ୍ ସୁନ୍ଦରୀ ନୁହେଁ କି ? ଥରେ ଭାବିଲେ.... ।

ଜୟ ମୋ ମାଆ । ଜୟ ମୋ ଗାଆଁ ।।

## ଅଶ୍ରୁଳ ଅଞ୍ଜଳି

ଓଡ଼ିଶାର ଆଗଧାଡ଼ିର ବ୍ୟଙ୍ଗକାର, ଯାଜପୁର ଜିଲ୍ଲା ଲେଖକ ସମ୍ମେଳନର ଉପ-ସଭାପତି, ତଥା 'ସଂପାଦକ'ର ସଂପାଦକ ଆଡ଼ଭୋକେଟ୍ ଚନ୍ଦ୍ରମଣି ପଣ୍ଡାଙ୍କ ବିୟୋଗରେ ଆମେ ଗଭୀର ମର୍ମାହତ ।

ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ 'ବୋଲେ ହୁଁଟି' ଭକ୍ତିଭୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ତାଙ୍କର ଆବର୍ତ୍ତମାନରେ, ପୂର୍ବରୁ ଆମ ପାଖରେ ଗଚ୍ଛିତ ଥିଲା ତାଙ୍କ କବିତାଟି ଅନ୍ୟତ୍ର ସ୍ଥାନିତ କରୁଛୁ ।

## ଅଭିନନ୍ଦନ

'ବୋଲେ ହୁଁଟି' ପୃଷ୍ଠା ପାଇଁ ନିୟମିତ ଲେଖିଆସୁଥିବା ଶିଶୁ ସାହିତ୍ୟିକ ବଟକୃଷ୍ଣ ସ୍ୱାଇଁ ଏବଂ ସ୍ନେହଲତା ମହାନ୍ତି 'ଓଡ଼ିଶା ସାହିତ୍ୟ ଏକାଡେମୀ' ପୁରସ୍କାର ପ୍ରାପ୍ତ ହୋଇଥିବାରୁ ଏବଂ ଆମ 'ବୋଲେ ହୁଁଟି' ପରିବାରର ସକ୍ରିୟ ସଦସ୍ୟ ଓ ଲେଖକ ଚୈତନ୍ୟ ଚରଣ ଜେନା ଯାଜପୁର ଜିଲ୍ଲା ଲେଖକ ସମ୍ମେଳନ ତରଫରୁ ସମ୍ମାନିତ ହୋଇଥିବାରୁ ଆମେ ସମସ୍ତଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛୁ ।

ମୁଖ୍ୟ ସଂପାଦକ, 'ବୋଲେ ହୁଁ ଟି'



# ବୋଲେ ହୁଁ ଟିର ଅନୁଭବ

ଆମ ଶିକ୍ଷା ବ୍ୟବସ୍ଥାର ସଂସ୍କାର ପାଇଁ ସରକାର ବଡ଼ ଚିନ୍ତାଶୀଳ । ଆମ ଶିକ୍ଷା ପାଇଁ ପିଲାଏ କିଭଳି ଉତ୍ତମ ନାଗରିକ ହେବେ, ସ୍ୱାବଲମ୍ବୀ ହୋଇ ଚାକିରୀ ପଛରେ ଧାଇଁବେ ନାହିଁ, ଏଥିପାଇଁ ଏଥର ସି.ବି.ଏସ୍.ଇ ସ୍ତରରେ ମଧ୍ୟ ଧନ୍ଦାମୂଳକ ପାଠ୍ୟ ଖସଡ଼ା ଅନ୍ତର୍ଭୁକ୍ତ କରିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି ।

ପ୍ରାଥମିକ ସ୍ତରରେ ଛାତ୍ରଛାତ୍ରୀମାନେ କିଭଳି ବିଦ୍ୟାଳୟକୁ ଅଧିକରୁ ଅଧିକ ଆସିବେ ସେଥିପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରାଯାଇଛି । ଝିଅ ପିଲାମାନଙ୍କୁ ଅଧିକ ପ୍ରୋତ୍ସାହନ ଦେବାପାଇଁ ମାଗଣାରେ ପୋଷାକ ବଣ୍ଟନ କରାଯାଉଛି ।

ପୁଣି ଅଷ୍ଟମ ଶ୍ରେଣୀକୁ ପ୍ରାଥମିକ ଶିକ୍ଷାରେ ମିଶ୍ରଣ କରି ମାଧ୍ୟମିକ ଶିକ୍ଷା କେବଳ ନବମ ଓ ଦଶମ ଶ୍ରେଣୀ ଭିତରେ ରଖାଯିବ । ଆଗରୁ ଏକାଦଶ ଶ୍ରେଣୀ ଯାଇ କଲେଜରେ ମିଶି ସାରିଛି । ମୋଟ ଉପରେ ଆମ ଦେଶରେ ଶିକ୍ଷାରେ ସଂସ୍କାର ନାମରେ ଦୀର୍ଘ ୨୦ବର୍ଷ ହେଲା ପ୍ରାୟତଃ ବିଭିନ୍ନ କମିଶନ ନାଆଁରେ ପରୀକ୍ଷା ନିରୀକ୍ଷା ଚାଲିଛି ।

ଆମ ସମ୍ବିଧାନ ୪୫ ଧାରା ଅନୁସାରେ ଛଅବର୍ଷରୁ ଚଉଦ ବର୍ଷ ଯାଏ ପ୍ରତ୍ୟେକ ପିଲା ପ୍ରାଥମିକ ଶିକ୍ଷା ପାଇବା ଯୋଜନା ୧୯୬୦ ସୁଦ୍ଧା ତ ହେଲାନି, ଆଜି ଯାଏ ବି ସଫଳ ହେଲାନି । ଏବେ ଆମର ମହାମହିମ ରାଷ୍ଟ୍ରପତି ମଧ୍ୟ କହିଛନ୍ତି ପାର୍ଲାମେଣ୍ଟରେ ବାଧ୍ୟତାମୂଳକ ଶିକ୍ଷା ଆଇନ୍ ଆଣିବା ପାଇଁ । ୨୦୦୯ ରେ ଏଇ ଆଇନ ଗୃହୀତ ହେବା ସୁଖର କଥା ।

ତେବେ କଥା ହେଉଛି ଆମର ଏକ ଗଣତନ୍ତ୍ର ରାଷ୍ଟ୍ରର ସରକାର ଏଇ ଶିକ୍ଷା ବ୍ୟବସ୍ଥାର ନାନା ପରୀକ୍ଷା ନିରୀକ୍ଷା କରି ଚାଲିଛନ୍ତି । ଫଳ କିନ୍ତୁ ଆଶାନୁରୂପ ମିଳିନାହିଁ । ଜଣେ ସାଧାରଣ ନାଗରିକ ଭାବେ ମୁଁ ଏତିକି କହିବି ରାଜନୈତିକ ଦଳଗୁଡ଼ିକର ଛାତ୍ରଛାତ୍ରୀଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ସ୍ୱାବଲମ୍ବୀ କରାଇବାର ପ୍ରଚେଷ୍ଟା ପଛରେ ଆନ୍ତରିକତା ନାହିଁ । ବରଂ ସଂଖ୍ୟାଲଘୁ ତୁଷ୍ଟିକରଣ ଓ ଭୋଟ ଅର୍ଜନ ଲକ୍ଷ୍ୟ ପୂରିରହିଛି । ଯେଉଁ ଶିକ୍ଷାବିତ୍‌ମାନେ ପାଠ୍ୟକ୍ରମର ବିଷୟବସ୍ତୁ ପ୍ରସ୍ତୁତ କରୁଛନ୍ତି ସେମାନେ ମଧ୍ୟ ରାଜନୈତିକ ପୂର୍ବାଗ୍ରାହରୁ ମୁକ୍ତ ବୋଲି ବିଶ୍ୱାସ ହୁଏନା ।

ମୋଟ ଉପରେ ପାଠ୍ୟକ୍ରମରେ ରାଜନୈତିକ ରଙ୍ଗ ଦେବା ଅଥବା ରାଜନୈତିକ ଦୃଷ୍ଟିକୋଣରୁ ଏହାକୁ ଦୂଷିତ କରିବା ଏକ ବିଡ଼ମ୍ବନା ମାତ୍ର ।



# ସଂପାଦକୀୟ ଭାବନା–

ଗାଁ ଗାଁରେ ଗୀତର ଗୁଞ୍ଜନ.............. ପ୍ରକୃତରେ କ'ଣ ଗାଆଁରେ ଗୀତର ଗୁଞ୍ଜନ ଶୁଭିବ ? କାହିଁକି ଶୁଭିବନି ଯେ.... । ଗାଁର ଆମ୍ବ ତୋଟାରେ କୋଇଲି ଗାଏ କୁହୁ କୁହୁ– ବାଉଁଶ ବୁଦାରେ ଶୁଭେ ଡାହୁକର ଡାକ । ଭରା ବଇଶାଖି ଦ୍ୱିପହରେ କପତୀର ବାହୁନା "ମାଣ ପୂରିଲା ସେର ପୂରିଲା ଉଠରେ ପୁତା"– ସକାଳ ହେବାମାତ୍ରେ କାଉ ଡାକେ କା– କା– । ବର୍ଷା ଆସିଲେ ବେଙ୍ଗୁଲି ରାଣୀର କେଁ କଟର, ଝିଙ୍କାରିର ଝିଂ ଝିଂ ସ୍ୱର । ଝାଉଁ ବଣର ମର୍ମର– ଏଇ ସବୁଥିରେ ତ ପୁରି ରହିଛି ସଙ୍ଗୀତର ଝଙ୍କାର– ଗୀତର ଗୁଞ୍ଜନ ।

ସତରେ କଣ ସବୁ ଗାଁ ହୋଇଯିବ ଗୋପପୁର– ସବୁ ନଈ ପାଲଟିବ ଯମୁନା– ସବୁ ଗାଁ ଦାଣ୍ଡରେ ଶୁଭିଭ କାହ୍ନୁର ବଂଇଶୀ ।

ଆସନା ଆଜି ଏଇ ଅବସରରେ ମନେ ପକାଇବା କେତୋଟି ଗାଁର କଥା । ଏଇ ଯେମିତି ପୋଥି ଚିତ୍ରପଟ ପଟଚିତ୍ର ଗାଁ ଶିଳ୍ପୀ ଗ୍ରାମ ରଘୁରାଜପୁର ଚାନ୍ଦୁଆର ଗାଁ ପିପିଲି । ମୁଗୁନି ପଥର ମୂର୍ତ୍ତି ଗଢୁଥିବା ଗାଁ ବଉଳ ଗଡ଼ିଆ, ବାଦୁଡ଼ିଙ୍କୁ ସୁରକ୍ଷା ଦେଉଥିବା କୁରାଳ ଗାଁ ।

ଏହି ଗାଁକୁ ନେଇ ମଜା କଥାଟିଏ କହୁଛି । ଗାଁଟିର ନାମ ମାଜ୍‌ଗୋଆନା ଆସାମ-ନାଗାଲ୍ୟାଣ୍ଡ ସୀମାନ୍ତବର୍ତ୍ତୀ ଛୋଟ ଗାଁଟିଏ । ଏଇ ଗାଁରେ ରହେ ଝିଅଟିଏ । ନାଁ ତାର ଅନିନ୍ଦିତା ସେ ଏକା ସାଙ୍ଗେ ଅତି ରାଗୁଆ କୋଡ଼ିଏଟି ଲଙ୍କା ମରିଚ ଚିମୁଟେ ଲୁଣ ନେଇ ଚୋବେଇ ଦେଇପାରେ । ଅନିନ୍ଦିତାର ଇଛା ତାର ନାଁ ରହିବ ଗିନିଜ୍ ବୁକ୍ ଅଫ୍ ରେକର୍ଡ଼ରେ । ତାର ଗାଁର ନାମ ରହିବ ଲଙ୍କା ମରିଚ ଗାଁ ।

ଠିକ୍ ସେହିପରି ପୁଣେ ଠାରୁ କୋଡ଼ିଏ କିଲୋମିଟର ଦୂର ଶାୟାଦ୍ରୀ ପର୍ବତ ମାଳାର ପାଦ ଦେଶରେ ଗାଁଟିଏ । ନାଁ ତାର ପିଙ୍ଗୋରି । ଏହି ଗାଁକୁ ପ୍ରବେଶ କଲାମାତ୍ରେ ଆଖି ଆଗରେ ପଡ଼େ ଶତାଧିକ ସହୀଦ ସ୍ମୃତି ସ୍ତମ୍ଭ । ଏ ଗାଁର ପରମ୍ପରା ହେଲା ପ୍ରତ୍ୟେକ ପରିବାରର ବଡ଼ପୁଅ ସୈନ୍ୟବାହିନୀରେ ଯୋଗ ଦେବ । ଏଇଥି ପାଇଁ ପ୍ରତିବର୍ଷ ଏଇ ଗାଁରୁ ଜଣେ ଯୁବକ ସୈନ୍ୟବାହିନୀରେ ଯୋଗ ଦେବାକୁ କୃତକାର୍ଯ୍ୟ ହୁଏ । ସେଦିନ ଏ ଗାଁରେ ଆନନ୍ଦର ଲହରି ଖେଳିଯାଏ ଗାଁରେ ମେଳା ବସେ । ଏ ଗାଁର ପ୍ରତ୍ୟେକ ଅଧିବାସୀ ଭାରତବର୍ଷକୁ ତାର ମାଆ ଭଳି ସମ୍ମାନ

କରେ । ମାଆର ସୁରକ୍ଷା ପାଇଁ ତାର ଜନ୍ମ । ଏହି ଧାରଣା ପାଇଥାଏ ପିଲାବେଳୁ ଏଠି ପ୍ରତ୍ୟେକ ବ୍ୟକ୍ତି ।

ସାରା ଭାରତ ପାଇଁ ପିଙ୍ଗୋରି ଆଜି ହୋଇଉଠିଛି ଦେଶ ପ୍ରୀତିର କର୍ଣ୍ଣଧାର ।

ଧନ୍ୟ ପିଙ୍ଗୋରି

ଧନ୍ୟ ଏହି ଗାଁ

ଧନ୍ୟ ମାଟି ମାଆ– ଜୟହିନ୍ଦ୍ ।



ସଂପାଦକୀୟ...

# ନୂଆବର୍ଷ ଭାବନା

ନୂଆବର୍ଷ ଆସିଛି, ବର୍ଷତଳେ ଆସିଥିଲା । ପୁଣି ବର୍ଷକ ପରେ ଆସିବ । ଏଇ ଯିବାଆସିବା ଲାଗିଛି । ଲାଗିଥିବ ।

ମୋ ଗାଆଁ ମୋ ମାଆ ଏଇମିତି ଦିନ, ମାସ, ବର୍ଷ ଦେଇ ସମୟର ଯା-ଆସ ଦେଖି ଆସିଛି । ସେ ଆଖିରେ କେତେ ସ୍ୱପ୍ନ, ତା ମନରେ କେତେ ଆଶା, ସତେ କଣ ପୂରଣ ହେବ । ପ୍ରଧାନମନ୍ତ୍ରୀଙ୍କ ଗ୍ରାମ୍ୟ ସଡ଼କ ଯୋଜନାରୁ ଆରମ୍ଭ କରି ରାଜୀବ ଗାନ୍ଧୀଙ୍କ ଶୁଦ୍ଧ ପାନୀୟ ଜଳ ଯୋଜନା ଯାଏ ଯେତେସବୁ ସ୍ଲୋଗାନ୍ ସତେକଣ ସତରେ ପରିଣତ ହେବ !

ଗାଆଁରେ ଇନ୍ଦିରା ଆବାସ ହେଉ ଦୁଃଖ ନାହିଁ– କିନ୍ତୁ ଗାଆଁ ପୀଢ଼ାରୁ ଲାଉ, କଖାରୁ, ପୋଇ ଡଙ୍କ ମାଡ଼ିବାର ଦୃଶ୍ୟ ଉଭେଇ ନଯାଉ । ଗାଆଁରେ ମାଇକ୍ ବାଜୁ, ଭି.ଡି.ଓ ସୋ ହେଉ ମନା ନାହିଁ । କିନ୍ତୁ ଗାଆଁ ଠାକୁରାଣୀ ବେଢ଼ାରେ କୀର୍ତ୍ତନ, ଗାଆଁ ମୁଣ୍ଡ ବରଗଛ ତଳେ ଜନ୍ତାଳବନ୍ଦ ନହେଉ । ଗାଆଁରେ କ୍ଲବ୍ ହେଉ– ପାଠାଗାର ହେଉ– ମନା ନାହିଁ କିନ୍ତୁ ଭାଗବତ ଟୁଙ୍ଗିକୁ ଆମେ ଭୁଲି ନଯାଉ ।

ଗୁରୁଜନ ପ୍ରତି ଭକ୍ତି ଓ ଲଘୁଜନ ପ୍ରତି ସ୍ନେହ ଅତୁଟ ରହୁ । ଯାହା ଚିନ୍ତା କରିବା ଖୋଲାମନ, ଖୋଲା ହୃଦୟରେ କରିବା । କୃତ୍ରିମତାର ଆବରଣରୁ ବାହାରିଆସିବା, ଏହାହିଁ ବୋଲେ ହୁଁଟିର ନବବର୍ଷର ଭାବନା ।

× × × ×   × × × ×   × × × ×   × × × ×

ବୋଲେ ହୁଁଟି ତାର ପ୍ରଥମ ବର୍ଷ ପୂର୍ତ୍ତି ଉପଲକ୍ଷେ ଗତ ୨୩।୧୨।୨୦୦୧ରେ କୋରେଇ ମଣ୍ଡଳ ସାହିତ୍ୟ ସଂସଦ ଓ କେନ୍ଦୁଝର ମିଳନି ସାହିତ୍ୟ ସଂସଦ ସହ ମିଳିତ ମହୋତ୍ସବ ପାଳନ କରିସାରିଛି ।

ଏଇ ଅବସରରେ ଆମେ ଦୁଇଜଣ ପ୍ରତିଭାଧାରଙ୍କୁ ସମ୍ମାନିତ କରିଛୁ । ସେ ଦୁଇଜଣ ହେଲେ ନିରଳସ ସାଧକ, ଦୀର୍ଘ ୪୦ବର୍ଷ ଧରି ପଲ୍ଲୀ ଗାଆଁ ଆଉଁରିରୁ ପ୍ରକାଶ କରି ଆସୁଥିବା ପତ୍ରିକା ପଲ୍ଲୀସ୍ୱପ୍ନର ସଂପାଦକ ଭାଗବତ ପ୍ରସାଦ ମହାନ୍ତି ଏବଂ ଅଗଣିତ ଜନମନକୁ ହରଣ କରିଥିବା ପ୍ରଖ୍ୟାତ ବେତାର, ଦୂରଦର୍ଶନ ଓ ଚଳଚ୍ଚିତ୍ର କଣ୍ଠଶିଳ୍ପୀ ମହମ୍ମଦ ସିକନ୍ଦର ଆଲାମ ।

ଆମେ ଉଭୟଙ୍କ ଦୀର୍ଘଜୀବନ କାମନା କରୁଛି ।



ବୋଲେ ହୁଁଟିର ଅନୁଭବ...

# କମିଛି ବଢ଼ିଛି

ଗ୍ରାମାଞ୍ଚଳର ଆୟତନ କ୍ରମଶଃ କମି କମି ଯାଉଛି । ଅନ୍ୟପକ୍ଷରେ ନୂଆ ନୂଆ ସହର ସୃଷ୍ଟି ହୋଇ ସହରାଞ୍ଚଳ କ୍ରମଶଃ ବଢ଼ିଚାଲିଛି ନିଜ ଆୟତନ ବିସ୍ତାର କରି । କଳକାରଖାନା ବଢୁଛି । ଶସ୍ୟ କ୍ଷେତ୍ର କମି କମି ଯାଉଛି । ଜଙ୍ଗଲ ମଧ୍ୟ କମି ଚାଲିଛି । ଏଣୁ ଓଜୋନ୍‌ସ୍ତରରେ ଗର୍ତ୍ତ ବଢ଼ିଚାଲିଛି । ଟିଟିଲାଗଡ଼ର ତାପମାତ୍ରା ୫୦ ଡିଗ୍ରୀକୁ ଟପି ତତଲାଗଡ଼ ପାଲଟିଛି । ତତଲାଗଡ଼ର ନନୀ ପ୍ରାଣ ବିକଳରେ ପାଣିଟୋପେ ପାଇଁ ଘରଛାଡ଼ି ପଳାଇଯାଉଛି ।

ରାଜଧାନୀରେ କଂକ୍ରିଟ୍ ଜଙ୍ଗଲ ବଢ଼ିଚାଲିଛି । ଅଥଚ ସବୁଜିମା କମି କମି ଯାଉଛି । କଳ କାରଖାନା ଧୂଆଁ ବଢ଼ିଚାଲିଛି । କିନ୍ତୁ ବିଶୁଦ୍ଧ ପବନ ଆଉ ପାଣି ମିଳିବା କଷ୍ଟ ହୋଇପଡୁଛି । ମାଟି ଉପରେ ଆବର୍ଜନାର ସ୍ତର ବଢ଼ି ବଢ଼ି ଚାଲିଛି ଅଥଚ ମାଟିତଳର ଜଳସ୍ତର କମି କମି ଯାଉଛି ।

ଗାଆଁ ଗଣ୍ଡାରେ ଗୋହିରୀ ଗୋଦଣ୍ଡା କମି ଚାଲିଛି । ଚାରଣ ଭୂମି କମି ଚାଲିଛି । ଗ୍ରାମର ଗୋ ସଂପଦ ବିପଦର ସମ୍ମୁଖୀନ । ଏଣେ ସରକାରୀ ଜମିର ଜବରଦଖଲ ବଢ଼ି ଚାଲିଛି, ଆର.ଆଇ.ଙ୍କ ଆଖିବୁଜା ଅଭ୍ୟାସ ଯୋଗୁ । ଦୁଗ୍ଧବନ୍ୟାର ପରିକଳ୍ପନା ବଢ଼ିଚାଲିଛି ।

ସଘନ ଚାଷର ଜୋରଦାର ପ୍ରଚାର ଚାଲିଛି । ସାର ଦର ବଢ଼ିଛି । ସାର ପ୍ରୟୋଗ ବଢ଼ିଛି ! ଧାନ ଉତ୍ପାଦନ ବଢ଼ିଛି । କିନ୍ତୁ ଧାନର ଦର କମିଛି । ଅଭାବୀ ଧାନ ବିକ୍ରୀ ସମସ୍ୟା ବଢ଼ିଚାଲିଛି ।

ଋଣ ଗ୍ରହିତାଙ୍କ ସଂଖ୍ୟା ବଢ଼ିଚାଲିଛି । ଋଣର ସତ୍ ଉପଯୋଗ କମିଚାଲିଛି । ବ୍ୟାଙ୍କର ସୁଧହାର କମିଛି । ଏଣୁ ସ୍ୱଳ୍ପ ସଞ୍ଚୟକାରୀଙ୍କ ଦୁର୍ଦ୍ଦଶାବି ବଢ଼ିଚାଲିଛି । ସ୍କୁଲ କଲେଜ ସଂଖ୍ୟା ବଢ଼ିଚାଲିଛି । ବେକାର ସଂଖ୍ୟା ବି ବଢ଼ିଚାଲିଛି । କିନ୍ତୁ ଶିକ୍ଷାର ଗୁଣାତ୍ମକ ମାନ ଖୁବ୍ କମିଛି । ପ୍ରଶ୍ନ ପତ୍ରର ଗୋପନୀୟତା ରକ୍ଷା ପାଇଁ ସରକାରୀ ତହବିଲ୍‌ରୁ ଖର୍ଚ୍ଚ ଯେତେ ବଢ଼ିଚାଲିଛି । ପ୍ରଶ୍ନପତ୍ରର ଚୋରା କାରବାର ମଧ୍ୟ ସେତିକି ବଢ଼ିଚାଲିଛି ।

ସ୍ୱାସ୍ଥ୍ୟ ସେବା ପାଇଁ ଯେତିକି ଯୋଜନା ବଢୁଛି । ରୋଗ ବି ସେତିକି ବଢୁଛି । ସେବାର ନିଷ୍ଠା କିନ୍ତୁ କମିଚାଲିଛି ।

ନଦୀରେ ବଡ଼ ବଡ଼ ଡ୍ୟାମ ସଂଖ୍ୟା ବଢୁଛି । ବିଦ୍ୟୁତ୍ ଉତ୍ପାଦନ ବଢୁଛି । ବିଦ୍ୟୁତ୍ କାଟ ବ୍ୟବସ୍ଥା ମଧ୍ୟ ବଢୁଛି । ରାଜ୍ୟ ରାଜ୍ୟ ମଧ୍ୟରେ ନଦୀ ଜଳକୁ ନେଇ ବିବାଦ ବି ବଢୁଛି । ଅଥଚ ନଦୀ ଶଯ୍ୟାରେ ଜଳପ୍ରବାହ କମିଚାଲିଛି । କୂଳର

ଗ୍ରାମବାସୀ ପାଣିଟୋପେ ବ୍ୟବହାର ପାଇଁ ପାଇପାରୁ ନାହାନ୍ତି । ଯାହା ମିଳୁଛି ତାହା କାରଖାନାର ବର୍ଜ୍ୟବସ୍ତୁରେ ବିଷାକ୍ତ ।

ସଙ୍ଗୀତର କ୍ୟାସେଟ୍ ସଂଖ୍ୟା ବଢ଼ିଚାଲିଛି । ଟି.ଭି. ଚ୍ୟାନେଲ୍ ବଢ଼ିଛି । ଅଥଚ ରୁଚିପୂର୍ଣ୍ଣ ସଙ୍ଗୀତ ବା ସିରିଏଲ୍ କମି କମି ଚାଲିଛି । ଗଣତନ୍ତ୍ର ଶାସନରେ ପାର୍ଟି ସଂଖ୍ୟା ବଢ଼ିଚାଲିଛି । ଅଥଚ ଦଳ ବଦଳ ସଂଖ୍ୟା ବଢ଼ିଚାଲିଛି । ଏଣୁ ଅନୁଶାସନ ଓ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ କମିଛି । ନେତାଙ୍କ ଗସ୍ତ ଖର୍ଚ୍ଚ ବଢ଼ିଛି । ଦରମା ଭତ୍ତା ବଢ଼ିଛି । ଅଥଚ ଖର୍ଚ୍ଚ କାଟର ଦ୍ୱାରା ଶ୍ରମିକ ଛଟେଇ ଚାଲିଛି । ଏପରିକି ଡିଜେଲ ଅଭାବରୁ ଫାୟାର ବ୍ରିଗେଡ଼ ଠିକ୍ ସମୟରେ ଘରପୋଡ଼ି ସ୍ଥାନରେ ପହଞ୍ଚିପାରୁନି ।

ସଂରକ୍ଷଣ ସଂଖ୍ୟା ବଢ଼ିଚାଲିଛି । କିନ୍ତୁ ଚାକିରୀ ନିଯୁକ୍ତି ସଂଖ୍ୟା ବର୍ଷକୁ ବର୍ଷ କମିଚାଲିଛି । ପୁସ୍ତକ ଓ ପ୍ରକାଶନ ଯଥେଷ୍ଟ ବଢ଼ିଛି । ଅଥଚ ତାର ପଠନକ୍ରିୟା କମିଚାଲିଛି । ପୁସ୍ତକର ଦର ବଢୁଛି । ଲେଖକର ରୟାଲଟିରେ ପ୍ରକାଶକଙ୍କ ବଦାନ୍ୟତା କମି ଚାଲିଛି ।

ଭୋଜିଭାତ ବଢ଼ିଛି । ହୋଟେଲ ରେଷ୍ଟୋରା ବଢ଼ିଛି । ଭାରତୀୟ ସାଙ୍ଗକୁ ଚାଇନିଜ୍ ଆଉ କଣ୍ଟିନେଣ୍ଟାଲ୍ ଫୁଡ୍‌ର ଚାହିଦା ବଢୁଛି । ବଢୁଛି ମଧ୍ୟ ଅନାହାର ଜନିତ ମୃତ୍ୟୁ ଆଉ ପିଲା ବିକ୍ରି ସଂଖ୍ୟା । ସଙ୍ଗୀତ ନୃତ୍ୟ ଆସରରେ ବ୍ରେକ୍ ଡ୍ୟାନ୍‌ସ, ଟୁଇଷ୍ଟର ପ୍ରସାର ବଢ଼ିଛି କିନ୍ତୁ ଓଡ଼ିଶୀ ପ୍ରତି ଆଦର କମିଛି ।

ଏପରିକି ସ୍ୱର୍ଗ ଦ୍ୱାରରେ ଶବ ସଂଖ୍ୟା ବଢ଼ିଚାଲିଛି । ବଢୁଚି ମଧ୍ୟ ବେଳାଭୂମିର ପରିବେଶ ସୁରକ୍ଷା ପ୍ରତି ଚିନ୍ତା । ଅଥଚ କମିଯାଇଛି ଶାନ୍ତ ସ୍ନିଗ୍ଧ ସଲୀଳ ରାଶିରେ ଜ୍ୟୋସ୍ନାର ପ୍ରତିଫଳନ ଶୋଭାଦର୍ଶନର କି ବିରୋଧଭାସ ଏ ଜଗତରେ । ଜଗତନାଥ ଏସବୁ ଦେଖୁଛନ୍ତି ସତ । କାହିଁ ? ମୂର୍ତ୍ତି ଚୋରି ଏବଂ ମନ୍ଦିରରୁ ନାଗ ଚୋରି ତ ହେଉଛି ।

## ଅଭିନନ୍ଦନ

ବିଶିଷ୍ଟ କଥାକାର ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ପତିଙ୍କୁ ତାଙ୍କର ସାମଗ୍ରିକ କୃତିର ସ୍ୱୀକୃତି ସ୍ୱରୂପ ଓଡ଼ିଆ ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ସମ୍ମାନ ଜଗନ୍ନାଥ ଦାସ ପୁରସ୍କାର ପ୍ରଦାନ କରିଥିବାରୁ ଏବଂ ଯାଜପୁରର ଶ୍ରୀଯୁକ୍ତ ଗିରିଜା ପ୍ରସାଦ ବସୁଙ୍କୁ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନୀତ କରିଥିବାରୁ ଉଭୟଙ୍କୁ ବୋଲେ ହୁଁଟି ତାର ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ଜୟହିନ୍ଦ– ଜୟ ମୋ ଗାଆଁ ଜୟ ମୋ ମାଆ ।



ବୋଲେ ଢୁଁଟିର ଅନୁଭବ...

# ସଂପାଦନା ଓ ମୁଁ

ମୁଁ ଯେତେବେଳେ ଷଷ୍ଠ ଶ୍ରେଣୀରେ ପଢୁଥିଲି, ଆମ ସ୍କୁଲରେ ପ୍ରତି ଶନିବାର ସାହିତ୍ୟ ଆଲୋଚନା ହୁଏ । କେଉଁ ସପ୍ତାହରେ ତର୍କସଭା ତ କେଉଁ ସପ୍ତାହରେ ଢ଼ଗଢ଼ମାଳି, କେଉଁ ସପ୍ତାହରେ ପ୍ରବନ୍ଧ ଲିଖନ ତ କେଉଁ ସପ୍ତାହରେ କବିତା ପ୍ରତିଯୋଗିତା । ମୁଁ ଏହି ସାରସ୍ୱତ ଆଲୋଚନାରେ ନିଜକୁ ଖୁବ୍ ବୁଡ଼ାଇ ରଖେ । ଏ ଦିଗରେ ଶିକ୍ଷକ ଶ୍ୟାମସୁନ୍ଦର ପାତ୍ର ମୋତେ ଖୁବ୍ ଉତ୍ସାହ ଦେଇଚାଲନ୍ତି । ପରେ ପରେ ହାଇସ୍କୁଲ ସ୍ତରରେ ମୁଁ ଶ୍ରେଣୀର ମନିଟର ହେବା ସଙ୍ଗେ ସଙ୍ଗେ ରିଡ଼ିଂ ରୁମ୍ ଦାୟିତ୍ୱରେ ଥିଲି । ଆମ ଏନ୍.ସି. ହାଇସ୍କୁଲ ଯାଜପୁର ରୋଡ଼କୁ ସେତେବେଳେ ପ୍ରକାଶ ପାଉଥିବା ବିଭିନ୍ନ ପତ୍ରପତ୍ରିକା ଆସେ । ମୁଁ ସେଗୁଡ଼ିକୁ ରିଡ଼ିଂ ରୁମ୍‌ରେ ସଜାଇ ରଖେ । ପିଲାମାନେ ଖେଳଛୁଟିରେ ହେଉ ବା ଖେଳ- ପିରିଅଡ୍‌ରେ ହେଉ ଯିଏ ଇଚ୍ଛା କରନ୍ତି ଯାଇ ପଢ଼ନ୍ତି । ଛୁଟି ହେବାପରେ ପତ୍ରିକାଗୁଡ଼ିକୁ ପୁଣି ସଜାଡ଼ି ଉଦ୍ଦିଷ୍ଟ ଆଲମାରୀରେ ରଖି ଚାବି ପକାଏ । ଚାବିକାଠି ମଧ୍ୟ ମୋ ପାଖରେ ରଖେ । ମୋ ଉପରେ ଦୃଢ଼ ଆସ୍ଥା ରଖିଥାନ୍ତି ଆମ ହାଇସ୍କୁଲର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଉପେନ୍ଦ୍ର ଶତପଥୀ ।

୧୯୬୫ ମସିହାର କଥା । ମୁଁ ରାଧାନାଥ ଟ୍ରେନିଂ କଲେଜରେ ବି.ଇଡି. ଛାତ୍ର । ସେଠାରେ ମଧ୍ୟ ମେଗାଜିନ୍ ''କ୍ଷଣିକା''ର ପ୍ରକାଶନ ଦାୟିତ୍ୱ ମୋରି ଉପରେ ପଡ଼େ । ପ୍ରିନ୍‌ସିପାଲ୍ ବୈଦ୍ୟନାଥ ରଥ ପଚାରନ୍ତି,– ''ସିଂ ! ତୁମର ସଂପାଦନା ଅଭିଜ୍ଞତା ଅଛି ତ ?'' ''ମୁଁ ଉତ୍ତର ଦିଏ''– ନାଇ ସାର ମୁଁ ପତ୍ରିକା ପଢ଼ିବାକୁ ଭଲପାଏ । ଲେଖାଲେଖିକୁ ଭଲପାଏ କିନ୍ତୁ ସମ୍ପାଦନା କରିନି । ପ୍ରିନ୍‌ସିପାଲ୍ ସାଙ୍ଗେ ସାଙ୍ଗେ କହିଲେ– ଏଇଠି ଅଭିଜ୍ଞତା ହେବ । ଅସୁବିଧା କିଛି ନାହିଁ । ଏମ୍.ଇଡି.ର ଛାତ୍ର ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ଓ ଅଧ୍ୟାପକ କିଶୋର ଚନ୍ଦ୍ର ଦାସଙ୍କ ଦିଗ୍‌ଦର୍ଶନ ପାଇ ମୁଁ 'କ୍ଷଣିକା'ର ପ୍ରକାଶନ ଓ ସଂପାଦନାରେ ବେଶ୍ ସଫଳତା ଅର୍ଜନ କଲି ।

ଚାକିରୀ ଜୀବନରେ ଡୋଲିପୁର ସି.ଟି. ଟ୍ରେନିଂ ସ୍କୁଲରେ ମୋର ପ୍ରାୟ ବିଭିନ୍ନ ପର୍ଯ୍ୟାୟରେ ୨୨ ବର୍ଷ କଟିଛି । ଏଠାରେ ଚାକିରୀ କରୁଥିବା ବେଳେ ସିଟି ଟ୍ରେନିଂ ସ୍କୁଲର ମୁଖପତ୍ର ମୋରି ସଂପାଦନାରେ କେତୋଟି ସଂଖ୍ୟା ପ୍ରକାଶ ପାଇଛି । ପୁନଶ୍ଚ ଏନ୍.ସି. ହାଇସ୍କୁଲ, ଯାଜପୁର ରୋଡ଼ରେ ପ୍ରଧାନଶିକ୍ଷକ ହେବା ଅବସରରେ

(୧୯୯୭-୨୦୦୦) ''ବ୍ୟାସ ଦୀପିକା'' ପ୍ରକାଶନର ଗୁରୁଦାୟିତ୍ୱ ମଧ୍ୟ ଗ୍ରହଣ କରିଛି । ମୋରି ଦିଗ୍‌ଦର୍ଶନ ଓ ମୁଖ୍ୟ ସଂପାଦନରେ ଏହା ଆତ୍ମ ପ୍ରକାଶ କରିଥିଲା । ବୋଧହୁଏ ଏହା ବ୍ୟାସ ଦୀପିକାର ୩ୟ ଆତ୍ମପ୍ରକାଶ ।

ଏହାପରେ ଅବସର ଜୀବନ ହେଉ ହେଉ ''ବୋଲେ ହୁଁଟି'' ପତ୍ରିକାର ସଂପାଦନା ଓ ପରିଚାଳନାକୁ ଆପଣେଇ ନେଇଛି । ''ବୋଲେ ହୁଁଟି''ର ୩ ବର୍ଷ ପୂରି ୪ବର୍ଷ ଚାଲିଲା । ଏବେ ଏହାର ପାଠକ ସଂଖ୍ୟା ବଢ଼ିଚାଲିଛି । ଗ୍ରାହକ ସଂଖ୍ୟା ମଧ୍ୟ ମନ୍ଥର ଗତିରେ ବଢ଼ିଚାଲିଛି । କିଛି ସାହିତ୍ୟପ୍ରେମୀ ଆଜୀବନ ସଦସ୍ୟ ଏବଂ କିଛି ବ୍ୟକ୍ତି ପୃଷ୍ଠପୋଷକତା ପାଇଁ ଆଗେଇ ଆସି ମୋତେ ଉତ୍ସାହିତ କରିଚାଲିଛନ୍ତି । ପ୍ରତିଦିନ ପ୍ରାୟତଃ ''ବୋଲେ ହୁଁଟି'' ସମ୍ବନ୍ଧୀୟ ଲେଖା ଓ ଚିଠି ଓଡ଼ିଶାରୁ ଏବଂ ଓଡ଼ିଶା ବାହାରୁ ମୋର ହସ୍ତଗତ ହେଉଛି । ଏସବୁ ମୋତେ ବେଶ୍ ପ୍ରେରଣା ଆଉ ଆନନ୍ଦ ଦେଉଛି । ବିଶେଷତଃ ଶିକ୍ଷକ ଓ ଶିକ୍ଷୟିତ୍ରୀଗଣ ମୋତେ ବେଶ୍ ସାହସ ଉତ୍ସାହ ଓ ସହଯୋଗ ଦେଇଆସୁଛନ୍ତି ।

ଅନେକ ପ୍ରବୀଣ କବି ଲେଖକ ପ୍ରାବନ୍ଧିକ ମୋତେ ଉଦାରତା ସହ ସାରସ୍ୱତ ସହଯୋଗ ଯୋଗାଇ ଆସୁଛନ୍ତି । କେତେକ ମଧ୍ୟ ଏବେବି ମୋର ପତ୍ରିକା ପ୍ରକାଶନ ପଛରେ ଥିବା ନିଷ୍ଠା ଓ ସାଧନାକୁ କଷଟି ପଥରରେ କଷି ଚାଲିଛନ୍ତି ।

ପଲ୍ଲୀ ଜୀବନଧର୍ମୀ ଏଇ ପତ୍ରିକାଟିର ସମୀକ୍ଷା ପାଇଁ କିଛି ସମ୍ବାଦପତ୍ର ଏବେବି ବିମୁଖ । ତାର କାରଣ ହୁଏତ ସେମାନଙ୍କୁ ବେଶ୍ ଜଣାଥିବ ।

ଶେଷରେ ଜଣେ ପାଠକଙ୍କ ଏକ ପତ୍ରକୁ ଆଧାରକରି କଥାଟିଏ କହୁଛି । ସେ ଲେଖିଛନ୍ତି ପତ୍ରିକାର ସମ୍ପାଦକମାନେ ଲେଖକୀୟ କପି ପଠାଇବାକୁ ବଡ଼ କୁଣ୍ଠିତ ହେଉଛନ୍ତି ଫଳରେ ଲେଖକ ତାର ଲେଖାଟି ପ୍ରକାଶ ହେଲେ ବି ତାକୁ ଛପା ଅକ୍ଷରରେ ଦେଖିବାର ସୌଭାଗ୍ୟ ବେଳେବେଳେ ପାଉନି । ଖୋଜାଖୋଜି କରି ପତ୍ରିକାଟି ପାଇ କିମ୍ବା ଷ୍ଟଲ୍‌ରୁ କିଣିଆଣି ତା ଲେଖାଟିକୁ ଦେଖୁଛି ।

ପାଠକଙ୍କର ଅନ୍ତର୍ଦାହ ମୁଁ ବୁଝୁଛି । ସଂପାଦକଙ୍କ ମାନଙ୍କ ଭିତରୁ କିଏ କେମିତି ହୁଏତ ପତ୍ରିକା ପଠାଇ ନଥିବେ, ବେଳେବେଳେ ଡାକ ବିଭାଗରେ ମଧ୍ୟ ତ୍ରୁଟି ଯୋଗୁ ପତ୍ରିକା ଠିକ୍ ଜାଗାରେ ପହଞ୍ଚିପାରେନା ।

ତେବେ ''ବୋଲେ ହୁଁଟି''ର ସଂପାଦକଭାବେ ମୋର ପ୍ରଥମ କର୍ତ୍ତବ୍ୟ ହୁଏ ଲେଖକମାନଙ୍କୁ ସେମାନଙ୍କ ଲେଖକୀୟ କପି ପଠାଇବା ପରେ ପରେ ଗ୍ରାହକମାନଙ୍କୁ କପି ପଠାଇଥାଏ । ଏପରିକି କପି ପାଇଲେ କି ନା– ମୁଁ ପତ୍ର ମାଧ୍ୟମରେ ଅବା ଟେଲିଫୋନ୍‌ରେ ବୁଝିଥାଏ । ଆବଶ୍ୟକ ସ୍ଥଳେ ପୁନର୍ବାର କପି ମଧ୍ୟ ପଠାଇଥାଏ ।

ଭଗବାନଙ୍କ ଆଶୀର୍ବାଦ ହେଲେ ଏବଂ ଗ୍ରାହକ ତଥା ଲେଖକମାନଙ୍କର ଶ୍ରଦ୍ଧା ଥିଲେ ''ବୋଲେ ହୁଁଟି'' ସଂପାଦନାରେ ଅବଶିଷ୍ଟ ଜୀବନତକ ବିନିଯୋଗ ହୋଇପାରିବ ଏଇ ଆଶା ରଖି ରହୁଛି ।

ଶେଷରେ ପଦେ କଥା– ବୋଲେ ହୁଁଟି ପ୍ରତିବର୍ଷ ଜଣେ ବା ିଂଣ ସାହିତ୍ୟିକଙ୍କୁ ସମ୍ବର୍ଦ୍ଧିତ କରିଥାଏ । ୩ୟ ବର୍ଷର ସମ୍ବର୍ଦ୍ଧିତ ପ୍ରତିଭା ହେଉଛନ୍ତି ଧାଲା ରଚୟିତା ତଥା ଶିଶୁ ସାହିତ୍ୟିକ ଚୈତନ୍ୟ ଚରଣ ଜେନା । ତାଙ୍କୁ ବଧେଇ ଜଣାଉଛି ।

ଜୟହିନ୍ଦ୍ ! ଜୟ ମୋ ମାଆ, ଜୟ ମୋ ଗାଆଁ ।



ସଂପାଦକଙ୍କ କଲମରୁ...

# ବୁଢ଼ାକାଳକୁ ଡରିବାନି

କଥାରେ ଅଛି ବାଳ ବୃଦ୍ଧ ସମାନ । ଅର୍ଥାତ୍ ବୁଢ଼ା ବେଳକୁ ପିଲାଙ୍କ ଭଳି ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ପିଲାଟି ଯେପରି ମାଆ ବାପାଙ୍କ ଉପରେ ନିର୍ଭର କରେ, ବୁଢ଼ାବେଳେ ବାପା ମା' ସେହିପରି ନିଜ ପୁଅଝିଅଙ୍କ ଉପରେ ନିର୍ଭର କରିଥାନ୍ତି ।

କିନ୍ତୁ ବୁଢ଼ାକାଳ ମଣିଷ ଜୀବନ ପାଇଁ ମଧ୍ୟ ଦରକାରୀ । କାରଣ ବୁଢ଼ାମାନଙ୍କର ଜୀବନର ଅଭିଜ୍ଞତାକୁ ନେଇ ସମାଜରେ ବହୁତ କାମ କରାଯାଇପାରେ ।

ଦାର୍ଶନିକ ସକ୍ରେଟିସ୍‌ଙ୍କ ଜୀବନୀକୁ ଦେଖାଯାଉ । ସେ ୭୦ ବର୍ଷ ବୟସରେ ନିଜର ଦର୍ଶନ ତତ୍ତ୍ୱ ଲୋକମାନଙ୍କୁ ଜଣାଇଲେ । ଦୀର୍ଘ ୧୦ ବର୍ଷ ଧରି ଅର୍ଥାତ୍ ୮୦ ବର୍ଷ ଯାଏ ସେ ଏହି ଜୀବନଦର୍ଶନକୁ ପ୍ରଚାର କରିଥିଲେ । ଯେତେବେଳେ ସେ ଏହି ଦର୍ଶନ ପାଇଁ ଶାସକଙ୍କ ବିଷ ଦୃଷ୍ଟିରେ ପଡ଼ିଲେ ତାଙ୍କୁ କୁହାଗଲା– ତୁମେ ଦର୍ଶନ ଛାଡ଼ କିମ୍ୱା ବିଷ ଖାଇ ମର ।

ହେଲେ ଯେଉଁଦିନ ସେ ହାମଲୋକ ବିଷ ପିଇ ମରିବା କଥା ଠିକ୍ ତା' ପୂର୍ବଦିନ କଥା । ସେତ ଜେଲ୍‌ରେ ଥାଆନ୍ତି । ଜେଲର ପାଖ କୋଠରୀର ଜଣେ କଏଦୀ ସୁନ୍ଦର ଭାଓଲିନ୍ ବଜାଉ ଥିଲା । ସକ୍ରେଟିସ୍ ଏହି ଭାଓଲିନ୍‌କୁ ଶୁଣି ଖୁବ୍ ଖୁସି ହେଲେ । ଆଉ କଏଦୀ ଜଣକୁ ଭାଓଲିନ୍ ବଜାଇବା ଶିଖାଇ ଦେବାକୁ ଅନୁରୋଧ କଲେ ।

କଏଦୀ ଜଣକ ଆଶ୍ଚର୍ଯ୍ୟ ହୋଇ ପଚାରିଲା– ଭାଇ ତୁମେ ପରା କାଲି ବିଷ ଖାଇ ମରିବ । ଆଜି ଭାଓଲିନ୍ ଶିଖିବାକୁ ଇଚ୍ଛା କରୁଛ କେମିତି !

ସକ୍ରେଟିସ୍ ହସି ହସି କହିଲେ– ମରିବାକୁ ଡରିବା ଠିକ୍ ନୁହେଁ । ତା'ଛଡ଼ା ମରିବାକୁ ତ ମୋର ଗୋଟିଏ ଦିନ ବାକୀ ଅଛି । ଏଣୁ ମରିବା ଆଗରୁ ଭାଓଲିନ୍ ବଜାଇବା ଶିଖିନେଲେ କ୍ଷତି କ'ଣ ?

କଏଦୀ ଜଣକର ମନରେ ମଧ୍ୟ ଖୁବ୍ ଦମ୍ଭ ଆସିଗଲା । ସେ ଜେଲଦଣ୍ଡକୁ ମଧ୍ୟ ଭୁଲିଯାଇ ଆହୁରି ମନ ଲଗାଇ ଭାଓଲିନ୍ ବଜାଇ ବଜାଇ ସକ୍ରେଟିସ୍‌ଙ୍କୁ ଶିଖାଉଥିଲା ।

ସେହିପରି ଗ୍ରୀସ୍‌ର ଜଣେ ବ୍ୟକ୍ତି ସିସେରୋ । ସେ ୬୩ବର୍ଷ ବୟସରେ 'ଟ୍ରିଟିଜ୍ ଅନ୍ ଓଲ୍ଡ ଏଜ୍' ବହି ଲେଖି ୬୪ ବର୍ଷ ବୟସରେ ମରଣ ଲାଭ କରିଥିଲେ ।

ଠିକ୍ ସେହିପରି ବିଶ୍ୱ ପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍, ନାଟ୍ୟକର ବର୍ଣ୍ଣାଡ

ସ, ଟଲଷ୍ଟୟ ଏବଂ ମହାତ୍ମା ଗାନ୍ଧୀ ବୃଦ୍ଧ ଅବସ୍ଥାକୁ ଖାତିର ନକରି ନିଜ ନିଜ ଲକ୍ଷ୍ୟ ପଥରେ ଆଗେଇ ଚାଲିଥିଲେ ।

ଭିକ୍ଟର ହୁଗୋ ୮୩ବର୍ଷ ବୟସ ପର୍ଯ୍ୟନ୍ତ ଲେଖି ଚାଲିଥିଲେ । ରବର୍ଟ ବ୍ରାଉନିଂ ୭୭ବର୍ଷ ବୟସରେ ପ୍ରସିଦ୍ଧ ପୁସ୍ତକ 'ରେଭେରି' ଲେଖିଥିଲେ । ଏଚ୍.ଜି. ୱେଲ୍‌ସ ୭୦ବର୍ଷ ବୟସରେ ମଧ୍ୟ ଦଶ-ବାର ଖଣ୍ଡ ବହି ଲେଖିଥିଲେ ।

ଆଚାର୍ଯ୍ୟ ଭକ୍ତି ବେଦାନ୍ତ ୬୯ ବର୍ଷ ବୟସରେ ଆମେରିକାର ଇସ୍କନ୍ ଆନ୍ଦୋଳନରେ ଯୋଗଦେଇଥିଲେ । ୮୧ବର୍ଷ ବୟସ ବେଳକୁ ସେ ବିଭିନ୍ନ ସ୍ଥାନରେ ୨୧୬ଟି କୃଷ୍ଣ ମନ୍ଦିର ନିର୍ମାଣ କରାଇ ପାରିଥିଲେ । ସେ ମଧ୍ୟ ଏହି ବାରବର୍ଷ ଭିତରେ ଅର୍ଥାତ୍ ବୟସ ୬୯ରୁ ୮୧ ଭିତରେ ୫୦ଖଣ୍ଡ ଧର୍ମଗ୍ରନ୍ଥ ଲେଖି ପାରିଥିଲେ । ଏହା କେତେ କୋଟି ସଂଖ୍ୟାରେ ବିକ୍ରି ହେଲା । ପୁଣି ଏବହିଗୁଡ଼ିକ ୨୪ଟି ବିଭିନ୍ନ ଭାଷାରେ ଅନୁବାଦ କରା ହୋଇଥିଲା ।

ବୃଦ୍ଧ କାଳରେ ମଧ୍ୟ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତା, ମାରାଥନ୍ ଦୌଡ଼ରେ ଭାଗ ନେଉଥିବା ବ୍ୟକ୍ତି ଅଛନ୍ତି ।

ରାଜନୀତି କ୍ଷେତ୍ରରେ ୬୦ ବର୍ଷରୁ ଊର୍ଦ୍ଧ୍ୱ ବହୁବ୍ୟକ୍ତି ନିଜର ବିଚକ୍ଷଣ ବୁଦ୍ଧି ଓ ଶାସନ କୌଶଳ ଦେଖାଇ ପାରିଛନ୍ତି । ଆମର ରାଷ୍ଟ୍ରପତି ୭୦ ବର୍ଷରେ ପଦାର୍ପଣ କଲେ ମଧ୍ୟ ଏବେ ବି ଦକ୍ଷ ଏବଂ କର୍ମଚଞ୍ଚଳ ।

ଏଣୁ ବୁଢ଼ା କାଳକୁ ନଡ଼ରି  ନିଜ ନିଜ ଲକ୍ଷ୍ୟ ପଥରେ ଆଗେଇ ଯିବା ଦରକାର ।

## ଶେଷ ସଂଳାପ

ଫେବୃୟାରୀ ୧୮ ତାରିଖ । ଆକାଶବାଣୀ କଟକର ନିର୍ଦ୍ଦେଶକଙ୍କ ପ୍ରକୋଷ୍ଠ । ମୁଁ ହସି ହସି ପଚାରିଲି ସାର୍ ଭଲ ଅଛନ୍ତି । ସେ ମଧ୍ୟ ହସି ହସି କହିଲେ ଖୁବ୍ ଭଲ ଅଛି । ବାଶ୍ ଏହି ସାମାନ୍ୟ ଅଥଚ ସଂକ୍ଷିପ୍ତ କଥନିକା ଭିତରେ ପରସ୍ପରକୁ ନମସ୍କାର କରିବା ପର୍ବଶେଷ ।

ତାପରେ ପ୍ରଚାରିତ ଗୀତିନାଟ୍ୟ 'ନୀଳଶୈଳ' ଉପରେ ମୋର ମତାମତକୁ ନେଇ କିଛି କଟୁତିକ୍ତ କଷାୟର କଥା କଟାକଟି ।

ପଦେ କଥା ମୋତେ ସେ କହିଥିଲେ– ନନ୍ଦବାବୁ ଆପଣ ମାନେ ଆମ ଯୁବ ପୀଢ଼ିଙ୍କୁ ପଛରୁ ଛୁରା ମାରନ୍ତୁ ନାହିଁ । ଭୂଲ ଦର୍ଶାଇ ଟିକେ ପିଠି ଥାପୁଡ଼ାନ୍ତୁ । ଆଗକୁ ଯିବାପାଇଁ ଆମକୁ ପ୍ରେରଣା ଦିଅନ୍ତୁ ।

ଏଇ କଥା ମୁଁ ଘରକୁ ଆସି ବାରମ୍ବାର ଭାବିଛି । ହେଲେ ଭଗବାନଙ୍କ ଲୀଳା କି ବିଚିତ୍ର । ମାତ୍ର ୩ଟା ମାସ ପରେ ସିଏ ହସିହସି କହୁଥିଲେ ମୁଁ ଖୁବ୍ ଭଲ ଅଛି, ସେ ହସିହସି ବିଦାୟ ନେଇଗଲେ ।

'ଅରୁଣ ରଙ୍ଗର ପକ୍ଷୀ', 'ଦେଖ ବର୍ଷା ଆସୁଛି'ର ନାଟ୍ୟକାର ରତିବାବୁ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ୨୫ଟି ନାଟକର ସ୍ରଷ୍ଟା, ୨୪ଟି ବେତାର ନାଟକର ସ୍ରଷ୍ଟା, 'କଥା କହୁଥିଲେ ସରିବନି'ର ସଫଳ ସଂଳାପ ଲେଖକ, ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ପ୍ରତିଭା ରତିରଞ୍ଜନ ମିଶ୍ର ମାତ୍ର ୫୩ ବର୍ଷ ବୟସରେ ଚାଲିଗଲେ ହସିହସି 'ଆନନ୍ଦ' ଚଳଚ୍ଚିତ୍ରର ନାୟକ ପରି ।

ଭଗବାନ ତାଙ୍କୁ ଆମମାନଙ୍କ ପାଖରୁ ଛଡ଼େଇ ନେଲେ !!

ସତରେ ସେ ଭଗବାନଙ୍କ ପ୍ରିୟ ପୁତ୍ର । ଏଣୁ ଏତେ ଅଳ୍ପ ସମୟ ବ୍ୟବଧାନକୁ ସହି ନପାରି ସେ ଡକାଇ ପଠାଇଲେ । ଆରପାରିର ଡାକରା ପାଇ ସେ ଚାଲିଲେ ସମ୍ଭବତଃ ସୁଧର୍ମା ସଭା ପାଇଁ ନୂତନ ଚିନ୍ତାଧାରାର କିଛି ସାଂସ୍କୃତିକ କାର୍ଯ୍ୟକ୍ରମର ପରିକଳ୍ପନା ଆଉ ପରିବେଷଣରେ ବ୍ୟସ୍ତ ରହିବାକୁ !

ଓଁ ସତ୍‌ସତ୍ ।



ବୋଲେ ହୁଁଟିର ଭାବନା...

# କେବଳ ମହିଳାଙ୍କ ପାଇଁ

ମହିଳା ସଶକ୍ତିକରଣ ବର୍ଷ ପାଳିତ ହେଉଛି । ଉର୍ଜା ନାମରେ ମହିଳା ବିକାଶର ସୁଦୃଶ୍ୟ ବିଜ୍ଞାପନ ମାନ ପ୍ରଦର୍ଶିତ ହେଉଛି । ଭାରତର କେତେଜଣ ଆଦର୍ଶ ମହିଳାଙ୍କ ନାମ ଉଲ୍ଲେଖ କରି ଆମେ ନାରୀ ପ୍ରଗତିର ସ୍ଲୋଗାନ୍ ଦେଇଚାଲିଛେ । ଏଇ ଯେମିତି ଇନ୍ଦିରା ଗାନ୍ଧୀଠୁ ସୁଷମା ସ୍ୱରାଜ, କୁଞ୍ଜରାଣୀଠୁ ସାନିଆ ମିର୍ଜା ଅଥବା ବଛେନ୍ଦ୍ରି ପାଲ୍‌ଠୁ ଆରମ୍ଭ କରି କଳ୍ପନା ଯାଏ ଉଲ୍ଲେଖ କରି ଆମେ ନାରୀ ପ୍ରତିଭାର ଡିଣ୍ଡିମ ପିଟି ଚାଲିଛେ । ଅଥଚ ନାରୀମାନଙ୍କୁ ଉପଯୁକ୍ତ କ୍ଷମତା ଦେବାପାଇଁ ମହିଳା ସଂରକ୍ଷଣ ବିଲ୍‌କୁ ପୁରୁଷ ପ୍ରଧାନ ପାର୍ଲାମେଣ୍ଟ ନାନା ଆଳ ଦେଖାଇ ଗଡ଼ାଇ ଗଡ଼ାଇ ଚାଲିଛି ।

ସେହିପରି ମହିଳା ସାକ୍ଷରତା ନାଆଁରେ କୋଟି କୋଟି ଟଙ୍କା ଖର୍ଚ୍ଚ ଚାଲିଛି । ମହିଳାଙ୍କ ଶିକ୍ଷା ସ୍ୱାସ୍ଥ୍ୟ ବିକାଶ ସାଧନ ପାଇଁ ବହୁ କର୍ମଶାଳା ଆୟୋଜିତ ହେଉଛି । ଅଥଚ ଭାରତର ସାକ୍ଷରତା ହାର ୬୫.୩ ଥିବାବେଳେ ମହିଳା ସାକ୍ଷରତା ହାର ୩୯.୬ । ଶିଶୁ ମୃତ୍ୟୁହାର ହ୍ରାସ କରିବାକୁ ଚେଷ୍ଟା ଚାଲିଥିବା ବେଳେ କନ୍ୟା ଭ୍ରୂଣହତ୍ୟା ଆମେ ବଢ଼େଇ ଚାଲିଛେ । ଫଳରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଆନୁପାତିକ ଭାରସାମ୍ୟ ରହୁନାହିଁ । ସମୟ ଆସିବ ଯୌନସାରି ସଂପ୍ରଦାୟ ପରି ଆମମାନଙ୍କ ପରିବାରରେ ୫ ଭାଇ ପାଇଁ ଗୋଟିଏ ଝିଅ ଯୋଗାଡ଼ କରାଯାଇ ବିବାହ ବ୍ୟବସ୍ଥା ହେବ । ଫଳରେ ମହାଭାରତରେ ଦ୍ରୌପଦୀ ଚରିତ୍ରର ପୁନରାବୃତ୍ତି ଘଟିବ ।

ବିଶ୍ୱର ଜନବହୁଳ ରାଷ୍ଟ୍ର ଚୀନ୍‌ର କଥାକୁ ବିଚାରକୁ ନିଆଯାଉ । ୧୯୮୨ରେ ୧୦୮ଜଣ ପୁଅ ପାଇଁ ୧୦୦ଜଣ ଝିଅ ଥିବା ବେଳେ ୨୦୦୦ ମସିହାରେ ଏହାର ଅନୁପାତ ହେଲା ୧୧୭ ପୁଅକୁ ୧୦୦ ଝିଅ । ଏଣୁ ଲୈଙ୍ଗିକ ଅସନ୍ତୁଳନ ଯୋଗୁଁ ସମାଜରେ ନାନା ପ୍ରକାର ବିଭ୍ରାଟ ଘଟିବାର ସମ୍ଭାବନା ସୃଷ୍ଟି ହେଉଛି ।

ସେହିପରି ଅନ୍ୟ ଏକ ରିପୋର୍ଟରୁ ଜଣାଯାଏ ୟୁରୋପରେ ମହିଳାମାନେ ଆମ ଦେଶ ତୁଳନାରେ କମ୍ ନିର୍ଯ୍ୟାତିତା ନୁହଁନ୍ତି । ସ୍ପେନ୍‌ରେ ବର୍ଷକୁ ୧୦୦ଜଣ ସ୍ତ୍ରୀ ଲୋକ ସ୍ୱାମୀ ବା ପୁରୁଷ ବନ୍ଧୁଙ୍କ ଦ୍ୱାରା ହତ୍ୟାର ଶୀକାର ହୋଇଥାନ୍ତି । ବର୍ଷକୁ ୩୦ହଜାରରୁ ଅଧିକ ମହିଳା ଶାରିରୀକ ଓ ମାନସିକ ନିର୍ଯ୍ୟାତନା ପାଇଥାନ୍ତି । ବୈବାହିକ ବିଶୃଙ୍ଖଳା ଏବେ ପାଶ୍ଚାତ୍ୟ ଜଗତର ଏକ ସାଧାରଣ ଘଟଣା ।

ଏଣୁ ଆମ ଦେଶର ଯୁବତୀମାନେ ଯେଉଁଳି ଭାବେ ପାଶ୍ଚାତ୍ୟ ସଭ୍ୟତାକୁ ଅନୁକରଣ କରିବା ପାଇଁ ଆଗ୍ରହୀ– ତାହା ଆମ ଆଧ୍ୟାତ୍ମିକ ଭିତ୍ତି ଉପରେ ପ୍ରତିଷ୍ଠିତ ପ୍ରାଚ୍ୟ ସଭ୍ୟତା ପ୍ରତି ଏକ ଆହ୍ୱାନ । ଏଣୁ ବେଳରୁ ସାବଧାନ ହୋଇ ଆମ ପୋଷାକ ପରିଚ୍ଛଦ, ନୃତ୍ୟ ସଙ୍ଗୀତ, କଳାସଂସ୍କୃତିର ପାଶ୍ଚାତିକରଣରୁ ନିବୃତ୍ତ ରହିବା ଉଚିତ୍ ହେବ ।

ଜୟହିନ୍ଦ୍..... 'ଜୟ ମୋ ଗାଆଁ ଜୟ ମୋ ମାଆ'



ସଂପାଦକଙ୍କ ପୃଷ୍ଠା...

# ସୁବିଧା ଭୋଗୀ ଓ ସୁବିଧାବାଦ

ସାମ୍ୟବାଦ, ସମାଜବାଦ ପରି ସୁବିଧାବାଦ ମଧ୍ୟ ଆମ ସାମାଜିକ ବ୍ୟବସ୍ଥାର ଏକ ବିଚିତ୍ର ଚିତ୍ର । ତେଲିଆ ମୁଣ୍ଡରେ ତେଲ 'ରୂଢ଼ି'ଟି ବୋଧେ ଏଇ କାରଣରୁ ସୃଷ୍ଟି । ଯିଏ ଭଲରେ ଅଛି ତାକୁ ଅଧିକା ଭଲରେ ରଖିବା ପାଇଁ ସମସ୍ତେ ଲାଗି ପଡ଼ିବାର ବଦ୍‌ଭ୍ୟାସ ଆମ ସମୟରେ ଚଳିଆସିଛି ।

ଶ୍ରେଣୀରେ ଭଲ ପାଠ ପଢୁଥିବା ପିଲାଟିକୁ ପ୍ରଧାନଶିକ୍ଷକଙ୍କଠୁ ପିଅନ ଯାଏ ସମସ୍ତେ ଅଧିକ ନଜର ରଖିଥାନ୍ତି ।

ହସ୍‌ପିଟାଲ୍‌ରେ ମନ୍ତ୍ରୀଙ୍କର ଚିକିତ୍ସା ପାଇଁ ହସ୍‌ପିଟାଲର ଗୋଡ଼ିମାଟି ଯାଏ ତତ୍ପର ହୋଇ ଉଠୁଥିବା ବେଳେ, ଗାଁରୁ ଯାଇଥିବା ସାଧାରଣ ରୋଗୀଟି ବିଛଣାରେ ପଡ଼ି ଛଟପଟ ହୋଇଥାଏ ।

ସେକ୍ରେଟାରୀଏଟ୍‌ର ଚିଫ୍ ସେକ୍ରେଟାରୀଙ୍କ ସ୍ୱତନ୍ତ୍ର ପ୍ରକୋଷ୍ଠର ସାଜସଜ୍ଜା ତୁଳନାରେ ସାଧାରଣ କିରାଣୀମାନଙ୍କ ଖୁନ୍ଦାଖୁନ୍ଦି ହୋଇ ବସିବା ସୁବିଧାବାଦର ସୁସ୍ପଷ୍ଟଚିତ୍ର ପ୍ରତିଭାତ ହୋଇଥାଏ ।

ସେହିପରି ବିଭିନ୍ନ ବ୍ୟାଙ୍କ (ଏଇ ଯେମିତି 'ସାହାରା') ଜନସାଧାରଣଙ୍କୁ ତାଙ୍କ ଜମା ଅର୍ଥର ୧ଭାଗ ସୁଧ ବଢ଼ାଇବାକୁ କୁନ୍ଥାଇ ହେଉଥିବାବେଳେ ଗଚ୍ଛିତ ଅର୍ଥରୁ କୋଟିକୋଟି ଟଙ୍କା କ୍ରିକେଟିୟରଙ୍କୁ ପୁରସ୍କାର ଦେଇଥାଏ ।

ଏଇଠି ଗୋଟେ କଥା ମନକୁ ଆସେ– ଚାଣକ୍ୟ, ମାଆ ମୁରାଙ୍କ କଥା ମାନି ଗୋଟେ କୁଡ଼ିଆ ଘରେ ଥାଇ, ମିଂଜି ମିଂଜି ଜଳୁଥିବା ଦୀପଟିଏ ରଖି ମୌର୍ଯ୍ୟ ସାମ୍ରାଜ୍ୟକୁ ସୁଶାସନରେ ରଖି ପାରିଥିବା ବେଳେ ଆମ ପ୍ରଧାନମନ୍ତ୍ରୀଙ୍କ ଦପ୍ତରଟି ଏତେ ବଡ଼ ହୋଇ ମଧ୍ୟ ଦେଶସାରା ଏତେ ବିଭ୍ରାଟ ବିଶୃଙ୍ଖଳା କାହିଁକି ?

ଏଇଥିପାଇଁ ବୋଧେ ମହାତ୍ମାଗାନ୍ଧୀ ଭାରତ ସ୍ୱାଧୀନ ହେବା ପରେ ଅରାତି ଗୁଳିରେ ଟଳି ପଡ଼ିଥିଲେ । କାରଣ ସ୍ୱାଧୀନତା ସୁଫଳକୁ ସୁବିଧାବାଦୀମାନେ ସୁବିଧାରେ ବାଣ୍ଟିକୁଣ୍ଟି ଖାଇବା ବାଟରେ ବୁଢ଼ାଟା କଣ୍ଟା ହୋଇଥିଲା ।

ଗୋଟିଏ ଛୋଟ ଉଦାହରଣ ଦେଇ ଏ ପ୍ରସଙ୍ଗ ଶେଷ କରିବି । ରାଜଧାନୀରେ ଯେଉଁମାନଙ୍କ ୨/୩ଟା ସୁସଜ୍ଜିତ ପ୍ରାସାଦ ରହିଛି ସେମାନେ ଭି.ଆଇ.ଆର୍. କିମ୍ବା

ଭି.ଆର୍. ସରକାରୀ ଘରେ ରହିବାର ସୁବିଧା ପାଆନ୍ତି । ଅଥଚ ଯାହାର ଗାଁରେ ବା ଚାକିରି ସ୍ଥଳରେ ଘର ଖଣ୍ଡେ ନାହିଁ ସେ ଫୁଟ୍‌ପାଥ୍‌ରେ ବା ପ୍ଲାଟ୍‌ଫର୍ମରେ ରାତି କାଟେ ।

ଏଣୁ ଭଗବାନ ଦୁଷ୍ଟ ଦଳନ ପାଇଁ ତଥାକଥିତ ଅବତାର ଗ୍ରହଣ କରନ୍ତି ବୋଲି ପୁରାଣ କହେ । ସେହି ସର୍ବଶକ୍ତିମାନ ଈଶ୍ୱର କେତେ ଶକ୍ତିହୀନ ସତେ ଏଇ ସୁବିଧାବାଦୀଙ୍କ ସୁବିଧାଭୋଗର ଜାଲରେ ଛନ୍ଦି ହୋଇ !

ସାଧୁ ସାବଧାନ !!



**ବୋଲେ ହୁଁଟିର ଅନୁଭବ...**

# ସଂପାଦକଙ୍କ କଲମରୁ

ଜନ୍ମଦିନ ଭାବନା । (ବୋଲେ ହୁଁଟିର; ଆମ ସମସ୍ତଙ୍କର) ଆମ ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ଅଟେ । ଅଥଚ ଏଠାରେ କୃଷି ପ୍ରତି କୃଷକ କୁଳର ଧୀରେ ଧୀରେ ବିତୃଷ୍ଣା ଜାତ ହେଉଛି । ତାର କାରଣ ଏଠାରେ କୃଷି ଉତ୍ପାଦନ ମୁଖ୍ୟତଃ ବୃଷ୍ଟିଜଳ ଉପରେ ନିର୍ଭରଶୀଳ । ମଜୁରୀ ବୃଦ୍ଧି, ସାର ଦରବୃଦ୍ଧି, ବେଢ଼ିଉପରେ କୋରଡ଼ି ମାଡ଼ପରି ହେଉଛି । ବନ୍ୟା ବା ମରୁଡ଼ି ହେଲେ କୃଷକ ତାର ଖଟାଇଥିବା ପୁଞ୍ଜିତକ ହରାଇ ମୁଣ୍ଡରେ ହାତଦେଇ ବସୁଛି । ଅନ୍ୟ ଦିଗରେ କୃଷକ ତାର ଉତ୍ପାଦିତ ଦ୍ରବ୍ୟକୁ ଉପଯୁକ୍ତ ମୂଲ୍ୟରେ ବିକ୍ରି ମଧ୍ୟ କରିପାରୁନାହିଁ । ତେଣୁ ଧୀରେ ଧୀରେ ଆମ କୃଷକ କୁଳର ଆର୍ଥିକ ଅବସ୍ଥା ଦୁର୍ବଳରୁ ଦୁର୍ବଳତର ହେଉଛି ।

ଅଥଚ ପଡ଼ୋଶୀ ଆନ୍ଧ୍ରକୁ ଦେଖନ୍ତୁ । ସେଠାରୁ ପାଚିଲା କଦଳୀ ଆସିଲେ ଆମର ଏଠି ଠାକୁରଙ୍କ ପାଖରେ ଭୋଗଲାଗେ । ଅଣ୍ଡା ଆସିଲେ ହୋଟେଲରେ ଆମଲେଟ୍ ହୁଏ । ମାଛ ଆସିଲେ ଭୋଜୀଭାତ ହୁଏ । ବାଡ଼ି ଆଳୁ ଆସିଲେ ଘାଣ୍ଟତରକାରୀରେ ପଡ଼େ । ଆମ୍ବ ନ ଆସିଲେ ଆମ ଝିଅଘରକୁ ବୋଝଭାର ରଜ କମେଇଁରେ ଯାଇପାରେନା । ସେହିପରି କଲିକତାରୁ ଫୁଲ ନ ଆସିଲେ ଆମର କନ୍ୟା ବିବାହ ପାଇଁ କାର୍, ମଟର ସଜା ହୋଇପାରେନା ।

ଏଣୁ କେବଳ ପ୍ରକୃତି ଉପରେ ଦୋଷ ଲଦିଦେଇ ଆମେ କୃଷିରୁ ନିବୃତ ରହିବାରୁ ଏ ଅବସ୍ଥା । ଆମର ଶିକ୍ଷିତ ଯୁବକ ଗୋଷ୍ଠୀ ଚାକିରୀ ଖଣ୍ଡେ ପାଇଁ ବିଭିନ୍ନ ଦପ୍ତରକୁ ଧାଇଁ ଧାଇଁ ନୟାନ୍ତ । ସରପଞ୍ଚଙ୍କଠାରୁ ଏମ୍.ଏଲ୍.ଏ., ଏମ୍.ପି.ଯାଏ ଲୋକପ୍ରତିନିଧିଙ୍କଠାରୁ ସୁପାରିଶ ଆଣିବା ପାଇଁ ବ୍ୟସ୍ତ । ଅଥଚ ନିଜର ପୈତୃକ ସ୍ଥାବର ଅସ୍ଥାବର ସଂପତ୍ତିର ଉପଯୁକ୍ତ ବିନିଯୋଗ ନେଇ ପରାଙ୍‌ମୁଖ । ଆମ ଲୋକପ୍ରତିନିଧିମାନେ ଆମ ଯୁବ ଗୋଷ୍ଠୀଙ୍କୁ ଠିକ୍ ବାଟରେ ପରିଚାଳନା ନକରି ନିଜର ଭବିଷ୍ୟତ ନିର୍ବାଚନର କିଛି ଅବୈତନିକ ପ୍ରଚାରକ ସୃଷ୍ଟି କରିବା ମତଲବ ନେଇ ଏମାନଙ୍କୁ କଣ୍ଟ୍ରାକ୍ଟରି, ରୁଣ ପ୍ରଦାନ କରି ଶିଳ୍ପସ୍ଥାପନ ଆଦିର ପ୍ରଲୋଭନ ଦେଖେଇ ହତାଶ କରିବା ସଙ୍ଗେ ସଙ୍ଗେ ପରିଶ୍ରମ କାତର ଆଉ କର୍ମ କୁଣ୍ଠ କରିବାର ସାହାଯ୍ୟ କରିଚାଲିଛନ୍ତି ।

ଏହିଭଳି ଏକ ବିଷ ବଳୟ ଭିତରେ ଆମ ରାଜ୍ୟ ବିଶେଷତଃ ଗ୍ରାମାଞ୍ଚଳ ଘାଣ୍ଟି ହେଉଛି ।

'ବୋଲେ ହୁଁଟି'ର ଜନ୍ମଦିନ ସଂଖ୍ୟା ପ୍ରକାଶନ ଅବସରରେ ଏହାହିଁ ଆଜିର ସବୁଠାରୁ ପରିତାପର ବିଷୟ ଓ ଚିନ୍ତାର ବିଷୟ ।



# ବୋଲେ ହୁଁଟିର କଲମରୁ...

## (ପୂର୍ବତଟ ରେଳବାଇର କାରନାମା)

ଯେଉଁଦିନ ପୂର୍ବତଟ ରେଳବାଇ ପ୍ରତିଷ୍ଠା ଘୋଷଣା ହେଲା; ଆମେ ଓଡ଼ିଶାବାସୀ ଭାବିଲେ ଆମ ଭାଗ୍ୟ ଖୋଲିଗଲା । ସତରେ ଏହା ପୂର୍ବରୁ ଦକ୍ଷିଣପୂର୍ବ ରେଳବାଇର ହେଡ଼କ୍ୱାର୍ଟର ଆମ ଓଡ଼ିଶାକୁ ଉଠେଇ ଆଣିବା ପାଇଁ ଆମ ବୀର ଓଡ଼ିଆମାନେ ଖୁବ୍ ତୁମ୍ବିତୋଫାନ୍ କରି ବିଫଳ ହୋଇଥିଲେ ।

ଏବେ ଦେଖନ୍ତୁନା ପୂର୍ବତଟ ରେଳବାଇର କାରନାମା । ପୁରୀରୁ ଯେଉଁସବୁ ଟ୍ରେନ୍ ବିଭିନ୍ନ ସ୍ଥାନକୁ ଯାଉଛି ସେଥିରୁ ଓଡ଼ିଆ ଭାଷାର ସୂଚନାକୁ ଲିଭେଇ ଦେବାର ପ୍ରଚେଷ୍ଟା ଚାଲିଛି । ଏଥିପାଇଁ ଉତ୍କଳ ସମ୍ମିଳନୀ ମଧ୍ୟ ଧାରଣା ଦେବାଯାଏ କଥା ଗଲାଣି । ହେଲେ ଫଳ କ'ଣ କିଛି ମିଳିବ ? ତା'ଛଡ଼ା ଆମେ ଓଡ଼ିଆମାନେ ଓଡ଼ିଆ ଭାଷା ଛଡ଼ା ଆଉ ଅନ୍ୟ ଭାଷା ବିଶେଷତଃ ଇଂରେଜୀକୁ ତ ଖୁବ୍ ଭଲପାଉ ।

ସେହିପରି ପୂର୍ବତଟ ରେଳବାଇର ଅନ୍ୟ ଏକ କାରନାମା ହେଲା– ଓଡ଼ିଶା ଭିତରେ ଚାଲୁଥିବା ଟ୍ରେନ୍ ଯଥା– ଭଦ୍ରକ-ଖଲ୍ଲିକୋଟ, ଭଦ୍ରକ-ପାରାଦ୍ୱୀପ, ଭଦ୍ରକ-ବ୍ରହ୍ମପୁର ଆଦି ଡି.ଏମ୍.ୟୁ ପାସେଞ୍ଜର ଗୁଡ଼ିକରେ ଶୌଚାଳୟର ବ୍ୟବସ୍ଥା ନାହିଁ । ଏଣୁ ପୂର୍ବତଟ ରେଳବାଇର ଓଡ଼ିଶାର ଯାତ୍ରୀମାନଙ୍କୁ ମଣିଷ ଭାବରେ ନଗଣି ପଶୁବୋଲି ଧରିନେଇଛି । କାରଣ ପଶୁ ଯେପରି ଯେଉଁଠି ଯେଉଁ ଅବସ୍ଥାରେ ଏକ, ଦୁଇ, କରିବାର ବାଧା ନଥାଏ । ସେହିପରି ଏହି ମଣିଷ ଦେହଧାରୀ ପଶୁମାନେ ସେଇ ଡବା ଭିତରେ ନିର୍ଲଜ ଭାବରେ ଏକ ବା ଦୁଇ କରିବାକୁ ବାଧ୍ୟ ହେବେ । ଅବଶ୍ୟ ଯୁବକମାନେ ଗାଡ଼ି ଷ୍ଟେସନ୍‌ରେ ରହଣି ଭିତରେ ଧାଁ-ଧପଡ଼ କରି ଏକ କରନ୍ତି । କେତେକ ମଧ୍ୟ ଦରମୁତା ହୋଇ ଗାଡ଼ି ହର୍ଣ୍ଣ ଶୁଣି ପୁଣି ଧାଇଁ ଆସି ଗାଡ଼ି ଧରନ୍ତି । ମାତ୍ର ବୃଦ୍ଧ-ବୃଦ୍ଧା, ପିଲା ଆଉ ମହିଳାମାନଙ୍କ କଥା ଦୁର୍ଦ୍ଦଶା କହିଲେ ନସରେ ।

ଏ ଦିଗ ପ୍ରତି ଆମ ଓଡ଼ିଆଙ୍କର କ'ଣ କିଛିବି ପ୍ରତିବାଦ ଅଛି । ଏଣୁ ଆମେ ଭାବୁଛୁ ପୂର୍ବତଟ ରେଳବାଇ ଏଣିକି ଏଇ ଟ୍ରେନ୍‌ଗୁଡ଼ିକରେ ନୋଟିସ୍ ଦେଇଦେବେ ଏଇ ଗାଡ଼ିରେ ଡାଇବେଟିସ୍, ଡିସେଣ୍ଟ୍ରି ରୋଗୀ, ବୃଦ୍ଧ-ବୃଦ୍ଧା ମହିଳା ଓ ଶିଶୁମାନେ ଯା-ଆସ କରିବା ମନା ।

ସତରେ ଆମେ ବୀର ଓଡ଼ିଆ । ନହେଲେ ମଳମୂତ୍ର ରୋଧକରି ଆମେ ଏତେବାଟ ଟ୍ରେନ୍ ଯାତ୍ରା କରିବାରେ ଅଭ୍ୟସ୍ତ ହେବାଟା କ'ଣ ଆମ ପାଇଁ ଭାରି ବଡ଼କଥାଟାଏ ।

ଜୟହିନ୍ଦ ! ଜୟ ମୋ ମାଆ, ଜୟ ମୋ ଗାଆଁ ।



ବୋଲେ ହୁଁଟିର ଅନୁଭବ...

# ସଂପାଦକୀୟ

ବଙ୍ଗ ବାଘୁଣି– ବିହାରୀ ହେଟାକୁ ଓଡ଼ିଆ ମେଣ୍ଢା– ଜଣେ ଖାଣ୍ଟି ଓଡ଼ିଆ ଭାବେ ଏକଥା କାହାକୁ ଭଲ ଲାଗିବକି ? ତେବେ ମହାଭାରତୀୟ ଭାବଧାରାରେ ଉବୁଟୁବୁ ହୋଇ ନାତରା କାତରା ହେବା ଅଲଗା କଥା ।

ମୁଁ ଜଣେ ଖାଣ୍ଟି ଓଡ଼ିଆ– ଓଡ଼ିଶାରେ ମୋର ଜନ୍ମ । ଓଡ଼ିଆ ପୁଅ ଧରମା ଦିନେ କୋଣାର୍କର ମୁଣ୍ଡି ମାରିଥିଲା, ମୋ ବାଜିଆ ଫିରିଙ୍ଗ ଫଉଜ ଗୁଳି ଆଗରେ ଛାତି ପତେଇ ଦେଲା । ମୋ ବକ୍‌ସୀ କେତେ ଉଦାର, ମୋ ରାଣୀ ଶୁକଦେଈ କେତେ ସାହସୀ ଏମିତି କେତୋଟି କଥାକୁ ଜପାମାଳିକରି ଆମେ କ'ଣ ଆଜି ଓଡ଼ିଶାର ଗୌରବ ରକ୍ଷା କରିବା ।

ଏବେ ଯୁଗ ବଦଳିଗଲାଣି– ରାଜନୀତି ଏବେ କଳୁଷିତ । ତିନିଶହ ପାଖାପାଖି ଲୋକପ୍ରତିନିଧି ଆଜି କିଛି ନା କିଛି ଦଫାଓ୍ୱାରୀ ଅପରାଧରେ ଅପରାଧୀ । ଦେଶରକ୍ଷା ପାଇଁ ଅସ୍ତ୍ରଶସ୍ତ୍ର କିଣାଠୁଁ ଆରମ୍ଭ କରି, ପେଟ୍ରୋଲିୟମ୍ ପମ୍ପ ବଣ୍ଟନ ବା ଗୋଖାଦ୍ୟ କ୍ରୟ ସବୁଠି ଘୋଟାଲା । ସବୁଠି ଦୁର୍ନୀତିର ଗନ୍ଧ । ଏଭଳି ରାଜନୈତିକ ପଟ୍ଟ ପରିବର୍ତ୍ତନ ସମୟରେ ଆମେ ଓଡ଼ିଆ ହୁଏତ ଚୁପ୍ ହୋଇ ରହିଛନ୍ତି ଅଥବା ଗୋଡ଼ ଟଣାଟଣି ଗୋଛି କଟାକଟି ହେଉଛନ୍ତି । ଅଥବା ଆମେ ଭଲ ତ ଦୁନିଆ ଭଲ ନୀତିରେ ସେଥିରେ ଆମ ଲୋକପ୍ରତିନିଧି ବିଳାସ ଭିତରେ ବୁଡ଼ିରହିଛନ୍ତି ।

ଏଇ କାରଣରୁ ଆମ ପୂର୍ବତଟ ରେଳବାଇ ଜୋନ୍ ପ୍ରତିଷ୍ଠା ପାଇଁ ଆମ କାକୁତି ମିନତି (ଦାବୀ ନୁହେଁ) । ଆମ ଭୁବନେଶ୍ୱରରୁ ହାଇଦ୍ରାବାଦ ଉଡ଼ାଜାହାଜରେ ଯିବାଟା, କଲିକତାଠୁଁ ହାଇଦ୍ରାବାଦ ଯିବାଠାରୁ ଖୁବ୍ ମହଙ୍ଗା । ନାଲ୍‌କୋ ଲାଭରେ ଚାଲୁଥିଲେ ବି ଘରୋଇକରଣ ପାଇଁ ସରକାର (କେନ୍ଦ୍ର)ଙ୍କର ଜିଦ୍ ।

ବୋଧହୁଏ ଆମର ଏଇ ଭୀରୁତା ଆଉ ଆପଣା ଭିତରେ ଛକାଛକିରେ କୁଫଳ ଆମେ ଭୋଗୁଛେ । ବିହାର ୩୧ଜଣ ଏମ୍.ପି.ଙ୍କୁ ଦିଲ୍ଲୀ ପଠେଇ ପାଇଛି ୧୨ଜଣ ମନ୍ତ୍ରୀ, ତାମିଲନାଡୁ ୩୧ଜଣ ପଠେଇ ପାଇଛି ୯ଜଣ ମନ୍ତ୍ରୀ । କିନ୍ତୁ ଆମେ ୨୧ ପଠେଇ ପାଇଛେ କେତେ ?

ଆମ ନେତାଙ୍କୁ କେନ୍ଦ୍ରର ଗୋଟିଏ ଉତ୍ତର– 'ବିଚାର କରି ଦେଖିବା' ସତେ ଯେମିତି ଆମେ କେବଳ ଦୟାର ପାତ୍ର ।

ମୋ ଭାଇଭଉଣୀଏ ! ଆମେ ତ ସେମାନଙ୍କୁ ସଂସଦକୁ ପଠେଇଲେ ସେମାନେ ନିଜ ଭିତରେ ପିଟାପିଟିରେ ମାତିଲେ । ଆମେ ତ ପାଠ ପଢ଼ିଲେ ଚାକିରୀ ନାହିଁ କି ଚାଷ କରିଲେ ବିକିରି ନାହିଁ । କରିବା କ'ଣ ? ଖାଲି କ'ଣ ବଙ୍ଗ ବାଘୁଣୀ ବିହାରୀ ହେଟା ଚିତ୍କାର ଶୁଣୁଥିବା । ଆଉ ଭୋକେ ଓଡ଼ିଆ ନିଦ ଯିବା ନା ବଙ୍କା ଆଙ୍ଗୁଳିରେ ଘିଅ ଉଠିବା କଥାଟା ଚିନ୍ତା କରିବା ।

ଜୟହିନ୍ଦ୍– ଜୟ ମୋ ମାଆ; ଜୟ ମୋ ଗାଆଁ !



# ବୋଲେ ହୁଁଟିର କଲମରୁ...

କିଛିଦିନ ତଳେ ଏକ ସମ୍ବାଦପତ୍ରରୁ ଭଜନରେ ବ୍ୟଭିଚାର ଶିରୋନାମାରେ ଏକ ଆଲୋଚନା ପଢ଼ିବାର ସୁଯୋଗ ମିଳିଥିଲା । ସେଇ ଆଲୋଚନାଟି ପଢ଼ି ବାସ୍ତବିକ ମନରେ ଏକ ଅଦ୍ଭୁତ ଶିହରଣ ଆସିଲା ।

ଏ ଶିହରଣ ଭଗବାନଙ୍କ ପାଇଁ ଭକ୍ତର ନୁହେଁ । ବରଂ ଆମେ ଆଜି ଜଗନ୍ନାଥଙ୍କୁ ନେଇ ଯେଉଁ ବ୍ୟବସାୟ ଚଳାଇଛନ୍ତି ସେଇଥି ପାଇଁ କିଛି କରି ନପାରିବାର ହତାଶା ବୋଧର ନିସ୍ତେଜ ପ୍ରତିକ୍ରିୟା । ଦିନଥିଲା ବନମାଳି, ଦୀନକୃଷ୍ଣ, ସାଲବେଗ ଆଦି ଭକ୍ତଗଣ ଜଗନ୍ନାଥଙ୍କୁ ନିଜଭକ୍ତି ବଳରେ ବାନ୍ଧି ରଖୁଥିଲେ । ଏପରିକି ଏ ଯୁଗର ଲୋକନାଥ ପଟ୍ଟନାୟକ, ଆର୍ତ୍ତବନ୍ଧୁ ଦାଶ, କାଳିଚରଣ ପଟ୍ଟନାୟକ ଆଉ ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ଭଜନ ଭିତରେ ଭରି ରହିଥିଲା ଭକ୍ତିରସ ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ କିମ୍ବା ଜଗନ୍ନାଥ ହେ କିଛି ମାଗୁନାହିଁ ତୋତେ ମାଗୁଛି ଶରଧାବାଲିରୁ ହାତେ ଭଜନ ଶୁଣି ଆମେ ଯେତିକି ଆତ୍ମବିଭୋର ହେଉଥିଲେ ଏଇ ଆଧୁନିକ ଯୁଗର ଗୀତିକବି ନଗେନ୍ଦ୍ର ମହାପାତ୍ରଙ୍କ, ଅଗତିର ଗତି ତୁମେ ଦୀନ ତାରଣ କିମ୍ବା କ୍ଷୀରୋଦ ଚନ୍ଦ୍ର ପୋଥାଳଙ୍କ କୋଠଭୋଗଖିଆ ହେ ଚକା ଆଖିଆ । ଆଉ ନନ୍ଦକିଶୋର ସିଂହଙ୍କ ବଡ଼ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ ମନଦଉଡ଼ ଦାଣ୍ଡେ ବାରେ ଆସ ଜଗନ୍ନାଥ ଆଦି ଗୀତରେ ସେଇ ଭକ୍ତ ଭଗବାନଙ୍କ ମଧରେ ସୁ ସଂପର୍କର ଚିତ୍ର ପ୍ରକଟିତ ହେଉଥିଲା ।

କିନ୍ତୁ ଏବେର କ୍ୟାସେଟ୍ ସନ୍ନିବିଷ୍ଟ ଭଜନରେ "ଜଗନ୍ନାଥ", ''ଚକାଆଖି'' ''କାଳିଆ'' "ବାଙ୍କଚାହାଣି'' ଆଦି କେତୋଟି ଶବ୍ଦକୁ କାଢ଼ିନେଲେ ସମ୍ପୂର୍ଣ୍ଣ ଗୀତଟିରେ କେବଳ ଯୁବକଯୁବତୀର ନୃତ୍ୟ ଆଉ ଅଙ୍ଗଭଙ୍ଗୀକୁ ସୁହାଇବା ଭଳି ଶବ୍ଦ ଯୋଜନା ଦେଖିବାକୁ ମିଳେ । ସେ ଗୀତଗୁଡ଼ିକର ମୁଖ୍ୟ ଲକ୍ଷ୍ୟ ରହିଲା ଟି.ଭି. ପରଦାରେ ଯେଉଁ ଯୁବକ ଯୁବତୀ ଦେଖାଦେବେ ସେମାନେ ଯେତେବେଶୀ ଅଙ୍ଗ ଭଙ୍ଗୀ ଦେଖାଇ ନାଚି ପାରିବେ ତାହାର ବ୍ୟବସ୍ଥା କରିବା । ସଂସ୍କୃତି ନାମରେ ଇୟେ କେବଳ ଅପସଂସ୍କୃତିର ବିସ୍ତାର ସିନା । ଏଇ ଅପସଂସ୍କୃତିର ବିସ୍ତାର ପାଇଁ କ୍ୟାସେଟ୍ କମ୍ପାନୀମାନଙ୍କର ବ୍ୟବସାୟିକ ମନୋବୃତ୍ତି ଯେତିକି ଦାୟୀ ଗୀତିକାର, ଜନସାଧାରଣ ସେତିକି ଦାୟୀ । ଜନସାଧାରଣ ପଢ଼ିଶାଘର ଝିଅ ଯାଉଛି ଶିବମନ୍ଦିର ଅଥବା ବଉଳଲୋ ପାଦ ଚିପି ଚିପି

ଯିବୁ ପରି ଭଜନକୁ ପ୍ରତ୍ୟାକ୍ଷାନ କଲେ ଏଭଳି କ୍ୟାସେଟ୍ ପ୍ରସ୍ତୁତ ହୁଅନ୍ତା ନାହିଁ । ଏଭଳି ଗୀତ ଲେଖାଯାଆନ୍ତା ନାହିଁ ।

ଏଣୁ ବେଳ ଥାଉଁ ଥାଉଁ ସାବଧାନ ହେବା ଶ୍ରେୟସ୍କର । କାରଣ ସ୍ୱୟଂ ଜଗନ୍ନାଥଙ୍କ ସହିବା ସୀମା ଟପି ଯିବାବି ଅସମ୍ଭବ ନୁହେଁ । ଜୟ ଜଗନ୍ନାଥ, ଜୟ ମୋ ମାଆ, ମୋ ଗାଆଁ ।



# ସଂପାଦକଙ୍କ କଲମରୁ...

ଚାଲ ଯିବା ଆମ ପୂଜାପତ୍ରିକା ବଜାର ।

ଏଥର ପୂଜାରେ ଅନ୍ୟାନ୍ୟ ବଜାର ପରି ପତ୍ରିକା ବଜାର ମଧ୍ୟ ବେଶ ଗହଳଚହଳ । ସେ ଗହଳି ଏବେ ବି ରହିଛି– ଯଦିଓ କିଛିଟା କମିଯାଇଛି । ଏଥର ପତ୍ରିକା ବଜାରକୁ ସର୍ବ ପ୍ରଥମେ ଅର୍ଥାତ୍ ଠିକ୍ ଅକ୍ଟୋବର ପହିଲାରେ ପ୍ରବେଶ କରିଛି କାଦମ୍ବିନୀ । ପରେ ପରେ ପ୍ରବେଶ କଲା ଅପୂର୍ବା, ତୀରତରଙ୍ଗ ଓ କଥାକାର । ତାପରେ ଆଗପଛ ହୋଇ ଓଡ଼ିଶାରୁ ସଜବାଜ ହୋଇ ବାହାରି ପଡ଼ିଲେ ସମାରୋହ, ସହକାର, ଝଙ୍କାର, ଅମୃତାୟନ, ସଚିତ୍ର ବିଜୟୀ, ଚିର ସମର୍ଥା, ନବରବି, ସାବିତ୍ରୀ, ସଂପୂର୍ଣ୍ଣା, ଶ୍ୱେତ ସଂକେତ, ଶୋଭନା, ମନୋରମା, ଆଗାମୀ ଶତାବ୍ଦୀ, ସତ୍ୟ ଚେତନା, କବି, କାବ୍ୟାଲୋକ, ଲେଖାଲେଖି, ଜହ୍ନରାତି, ସ୍ୱଶ, ଶତଦ୍ରୁ, ମହଲ ଇତ୍ୟାଦି । ଏଥର ପତ୍ରିକା ଗୁଡ଼ିକର ପ୍ରଚ୍ଛଦପଟଗୁଡ଼ିକ ଯେତିକି ଆକର୍ଷଣୀୟ, ପତ୍ରିକାର ଆଙ୍ଗିକ ବିନ୍ୟାସ ମଧ୍ୟ ଖୁବ୍ ସୁନ୍ଦର । ଏପରିକି ପଡ଼ୋଶୀ ବଙ୍ଗଳା ପତ୍ରିକାରୁ ଆମ ପରିପାଟୀ ଅଧିକ ସୁନ୍ଦର ଆଉ ସୁଶୋଭନ ।

ଏଥର କେବଳ ଯାଜପୁର ଜିଲ୍ଲାରୁ ବାହାରିଥିବା ପତ୍ରିକାଗୁଡ଼ିକ ହେଲା ବର୍ତ୍ତିକା, ଗୋକର୍ଣ୍ଣିକା, ଗଙ୍ଗଶିଉଳି, ବୋଲେ ହୁଁ ଟି, ପ୍ରବାହ, ସାହିତ୍ୟ ଦର୍ପଣ, ଚାହାଣି, ମହାଗିରି, ସ୍ମୃତିଲିପି ଇତ୍ୟାଦି । ଏଗୁଡ଼ିକ ମଧ୍ୟରେ (ଓଡ଼ିଶା ଭିତରେ ମଧ୍ୟ) ସବୁଠାରୁ ଅଧିକ ପୃଷ୍ଠାସଂଖ୍ୟା ବହନ କରିଛି ବର୍ତ୍ତିକା । ଏହାର ପୃଷ୍ଠା ସଂଖ୍ୟା ୧୨୬୪ । ଏଥିରେ ତିନୋଟି ନାଟିକା ସାଙ୍ଗକୁ ଉପନ୍ୟାସ, ଗଳ୍ପ, କବିତା, ଅନୁବାଦ ଏବଂ ଆଠଟି ପୁସ୍ତକରେ ସମୀକ୍ଷା ସାଙ୍ଗକୁ ପ୍ରଯୁକ୍ତି ବିଦ୍ୟା, ଯୋଗ, ଆଦି ନୂଆ ନୂଆ ବିଭାଗ ସ୍ଥାନିତ ।

ସେହିପରି ପଡ଼ୋଶୀ ରାଜ୍ୟରୁ ପ୍ରକାଶ ପାଉଛି ଲେଖା, ଅଭିଯାନ, ପ୍ରତିବେଶୀ । ପ୍ରତିବେଶୀ ପୂର୍ବଭଳି ଲେଖକମାନଙ୍କ ଫଟୋ ଆଲ୍‌ବମ୍ ନହୋଇ ଲେଖାର ଆଲବମ୍ ହୋଇଛି । ଏ କ୍ଷେତ୍ରରେ ହର ପ୍ରସାଦ ଦାସଙ୍କ, ଖୋଲା ଚିଠିର ପ୍ରଭାବ ପଡ଼ିଥିବା ଅନୁଭବ କରିହୁଏ ।

ସମ୍ପୂର୍ଣ୍ଣ ପାରିବାରିକ ପତ୍ରିକାକୁ ଛାଡ଼ି ଶିଶୁ ପତ୍ରିକା ମଧ୍ୟ ନୂଆ ଉତ୍ସାହନେଇ ପ୍ରବେଶ କରିଛି ପୂଜା ବଜାରରେ– ଏଗୁଡ଼ିକ ମଧ୍ୟରେ ଝୁମୁକା, କାଳିଆସୁନା, ମୀନାବଜାର, ବେଲୁନବାଲା, ଫୁଲ ଚାଙ୍ଗୁଡ଼ି, ବାଇ ଚଢ଼େଇ, ମନପବନ ଆଦି ନାମ ଉଲ୍ଲେଖ କରାଯାଇପାରେ । 'ସମ୍ବାଦ' ଫୁଲଝରି ବିଭାଗ ଏଥର ଷୋଳପୃଷ୍ଠା ସମ୍ବଳିତ

ହୋଇ ବେଶ୍ ଆଶା ଆଉ ଆଶ୍ୱାସନା ଆଣିଛି ଶିଶୁ ସାହିତ୍ୟ କ୍ଷେତ୍ରରେ । ତେବେ ପୂଜାକୁ ବି 'ଶିଶୁଲେଖା' ଆସିପାରିଲାନି । ସରକାରୀ ସ୍ତରର ଉଦ୍ୟମ ଥିଲେତ !

ସେହିପରି ହାସ୍ୟରସ ପତ୍ରିକା ଭାବେ ଶ୍ରୀ ହରିବୋଲ ଏବଂ ଟିକେ ହସ ମଧ ପାଠକ ମହଲରେ ହସର ଖୋରାକ ଯୋଗାଇଛନ୍ତି । ଲାଳିକା ଏବଂ ବ୍ୟଙ୍ଗ ରଚନାକୁ ନୂଆ ନୂଆ ରୂପରେ ପ୍ରକାଶ କରୁଛନ୍ତି ।

ତେବେ ସେ ଯା'ହେଉ । ଆମର ପାଠକ ସଂଖ୍ୟା କ୍ରମେ କମି ଯାଉଛି । ଆମ ପତ୍ରିକା କ୍ଷତିରେ ଚାଲୁଛି । ଆମେ ଲେଖକ ଲେଖିକାଙ୍କୁ ପାରିଶ୍ରମିକ ଦେଇ ପାରୁନୁ ବୋଲି ସଂପାଦକମାନେ ମନ୍ତବ୍ୟ ଦେଉଥିବା ବେଳେ ଏତେ ଗୁଡ଼ିଏ ସୁଦୃଶ୍ୟ ପତ୍ରିକା ପ୍ରକାଶନ ପଛରେ ନିଶ୍ଚୟ ବ୍ୟବସାୟିକ ମନୋବୃତ୍ତି ଆପେକ୍ଷା ସାରସ୍ୱତ ବିପ୍ଳବ ମନସ୍କତା ଅନୁଭବ କରିହୁଏ– ଏହା ହିଁ ଆଶ୍ୱାସନାର କଥା ।

ଅବଶ୍ୟ ଅନ୍ୟ ଏକ ଦିଗରୁ ଦେଖିଲେ ଆମେ ସଂପାଦକମାନେ ଅନେକ ସମୟରେ ଲେଖକୀୟ ଉପହାର କପିଟିଏ ପଠାଇବାକୁ ଅବହେଳା ଦେଖାଇଥାଉ । ଏହା ବଡ଼ ଦୁଃଖର କଥା । ଏହି ସଂପାଦକୀୟ ଲେଖା ହେବାଯାଏ– ମୁଁ ନିଜେ ୫/୬ଟି ପତ୍ରିକାର ଗ୍ରାହକ ହୋଇଥିଲେ ବି ଗୋଟିଏ ଦୁଇଟିକୁ ଛାଡ଼ି ଅନ୍ୟାନ୍ୟ ପତ୍ରିକା ଏଯାବତ ପାଇନାହିଁ ।

ଏଣୁ ପାଠକୀୟ ମନସ୍କତା, ସଂପାଦକୀୟ ଉଦାରତା ଓ ନିରପେକ୍ଷତା, ତଥା ବିଜ୍ଞାପନଦାତାଙ୍କ ପ୍ରୋତ୍ସାହନ ଆମ ପତ୍ରିକା ଜଗତକୁ ସମୃଦ୍ଧ କରୁ ଏହା ହିଁ "ବୋଲେ ହୁଁ ଟି''ର କାମନା ।

ଜୟହିନ୍ଦ, ଜୟ ମୋ ମାଆ– ଜୟ ମୋ ଗାଆଁ



# ବୋଲେ ହୁଁଟିର କଲମରୁ...

## ଆଇନ୍ ତା ବାଟରେ ଯାଉଛିତ....

ଅନେକ ସମୟରେ ଖବରକାଗଜ ପୃଷ୍ଠାରୁ, ରେଡ଼ିଓରୁ, ଟି.ଭି.ରୁ ଆମେ ଜାଣୁଛେ ବଡ଼ ବଡ଼ ନେତା କହୁଛନ୍ତି ଆଇନ୍ ତା ବାଟରେ ଯିବ । ହେଲେ ଆମ ଆଖି ଯାହା ଦେଖୁଛି ସେଥିରୁ ମନରେ ବେଳେ ବେଳେ ସନ୍ଦେହ ଉପୁଜୁଛି । ଆଉ ଏକ ଦୀର୍ଘ ପ୍ରଶ୍ନବାଚୀ ଛାଏଁ ଛାଏଁ ଆସିଯାଉଛି– ଆଇନ୍ ତା ବାଟରେ ଯାଉଛି ତ !

ଭାରତୀୟ ଦଣ୍ଡ ସଂହିତା କହୁଛି– ହଜାରେ ଦୋଷୀ ଖସିଯାଆନ୍ତୁ ପଛେ ଜଣେ ନିର୍ଦ୍ଦୋଶ ଦଣ୍ଡିତ ନହେଉ । ଏହା ହେଉଛି କି ?

ଏବେ ଦେଖନ୍ତୁ– ଜଣେ ବ୍ୟକ୍ତି ହାଇକୋର୍ଟ ଦ୍ୱାରା ଖଲାସ ହୋଇଥିଲେ ବି ୮ବର୍ଷ ଅଧିକ ଜେଲଦଣ୍ଡ ଭୋଗିଲା ।

ସେହିପରି ଅନେକ ସମୟରେ ଦେଖାଯାଉଛି ଯେଉଁମାନେ ଉଚ୍ଚପଦାଧିକାରୀ ସେମାନେ ନିଜର ବାହୁବଳ ସାହାଯ୍ୟରେ ଆଇନ୍‌ରେ ଛୁଞ୍ଚ ଯିବାଭଳି ଫାଙ୍କକୁ ଶାବଳ ଯିବାପରି ପ୍ରଶସ୍ତ କରିଦେଉଛନ୍ତି ।

ଏମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଫର୍ମୁଲା କାମକଲା ପରି ମନେହେଉଛି– ଏମାନେ ଦୋଷ କଲେ ସହଜରେ ଧରାପଡ଼ନ୍ତି ନାହିଁ । ସରକାର ଉପରେ ପ୍ରବଳ ଚାପ ପଡ଼ିଲେ ଏମାନେ ଧରାଦିଅନ୍ତି । ମାତ୍ର ଗୋଟେ ରାତି ଜେଲରେ ରହିଲେ ଏମାନଙ୍କ ଶରୀର ଅସୁସ୍ଥ ହୁଏ । ସାଧାରଣ ରୋଗୀ ବେଡ୍ ନପାଇ ବାରଣ୍ଡାରେ ଗଡୁଥିବା ବେଳେ ଏମାନେ ସହଜରେ କେବିନ୍ ପାଇପାରନ୍ତି ଇଣ୍ଟେନ୍‌ସିଭ୍ କେୟାର ୟୁନିଟ୍‌ରେ । ଅର୍ଥବଳରେ ଡାକ୍ତର ରିପୋର୍ଟ ଏମାନଙ୍କୁ ସୁହାଇଲା ପରି ହୁଏ ।

ନିକଟରେ ଜଣେ ଏଲାଇଟ୍ ଜେଲରୁ ଜାମିନ୍ ପାଇ ମୁକ୍ତ ହୋଇ ଆସୁଥିବା ବେଳେ ପୋଲିସ୍‌ମାନେ ଯେପରି କରମର୍ଦ୍ଦନ କଲେ ଆଉ ଆଲିଙ୍ଗନ କଲେ ସେଥିରୁ ଆମେ କ'ଣ ଅନୁମାନ କରିବା– ଆଇନ୍ ଆଖିରେ ସମସ୍ତେ ସମାନ ।

ଆମେ ସଭିଏଁ ସମାନ ଏଇ ବିଷୟରେ ଆୟୋଜିତ ସଭାରେ ସଭାପତି ଆୟୋଜକ, ସଂଯୋଜକ ପରି ସାଧାରଣ ଶ୍ରୋତାଟିଏ କ'ଣ ସମାନ ଧରଣର ସମ୍ମାନ ପାଇଥାଏ ?

ଏଥିପାଇଁ ବେଳେବେଳେ ମନରେ ପ୍ରଶ୍ନଉଠେ ଆମେ ସତରେ ବାସ୍ତବ ଦୁନିଆରେ ଅଛନ୍ତି ନା– ଏକ ଛଳନାର ମାୟା ମଞ୍ଚରେ ଷଠ ଅଭିନେତା ଅଭିନେତ୍ରୀ ସାଜିଛେ !!

ଜୟହିନ୍ଦ୍ କହିବାବେଳେ ସତରେ କ'ଣ ଭାରତମାତା ପ୍ରତି ଆମର ସମ୍ମାନବୋଧ ଜାଗ୍ରତ ହେଉଛି ! ଆସନ୍ତୁ ମୁହୂର୍ତ୍ତକ ପାଇଁ ଏସବୁ ନେଇ ଟିକେ ଭାବିବା ।

ଜୟ ମୋ ମାଆ ଜୟ ମୋ ଗାଆଁ ।



# ବୋଲେ ହୁଁଟିର ନିଜସ୍ୱ ଭାବନା...

## ନୂଆ ପ୍ରକାର ବିଷ

ଜଣେ ହତାଶ ହୋଇଗଲେ ବା ମନକୁ ଖୁବ୍ ବାଧିଲେ, ଲୋକଟି ହାତ ପାଆନ୍ତାରେ ଥିବା କନିଅର ମଞ୍ଜି କିମ୍ବା ମୂଷାମାରି ଶଂଖୁଆ, ବିଷ ଆଦି ଖାଇ ଦେଉଥିଲା । ଏହାଥିଲା ତାର ଜୀବନ ପ୍ରତି ବିତୃଷ୍ଣା ଭାବର ସୂଚନା ।

ବେଳେ ବେଳେ ପାଗଳା କୁକୁର କାମୁଡ଼ିଲେ, ସାପ ଚୋଟ ମାରିଲେ ମଧ୍ୟ ଶରୀରର ବିଷ କ୍ରିୟା ଆରମ୍ଭ ହୋଇଯାଏ । ଜୀବାଣୁ, ଭୂତାଣୁ ଜନିତ ବିଷରୁ ରୋଗ ମଧ୍ୟ ଜାତ ହୋଇଥାଏ । ଏ ସମସ୍ତ ବିଷ ପାଇଁ ପ୍ରତିକାର ନିଶ୍ଚୟ ଅଛି ।

ଏବେ କିନ୍ତୁ ଏକ ନୂଆ ପ୍ରକାର ବିଷ ବାହାରିଛି । ତାହା ହେଉଛି ରାଜନୀତି ମାର୍କା ଗଣତନ୍ତ୍ରୀୟ ବିଷ । ଆମ ବିଚାରରେ ଏ ବିଷର ପ୍ରତିକ୍ରିୟା ସୁଦୂରପ୍ରସାରୀ । ଏହା କେବଳ ବ୍ୟକ୍ତିବିଶେଷରେ ଶରୀର ଓ ମନକୁ କଳୁଷିତ କରେନା ବରଂ ସାରା ମଣିଷ ଜାତିକୁ ଧ୍ୱଂସ ମୁଖକୁ ଟାଣିନିଏ ।

ଏଇ ଗତ ପଞ୍ଚାୟତ ନିର୍ବାଚନ କଥା । ଆପଣମାନେ ନିଜେ ଏହାକୁ ଅଙ୍ଗେ ନିଭେଇଛନ୍ତି । ଗାଆଁ ଗାଆଁ ଭିତରେ ବିବାଦର ଆପୋଷ ବୁଝାମଣା ଭିତରେ ସମାଧାନ କରିବା ପାଇଁ, ଗାଆଁ ଲୋକଙ୍କ ଭିତରେ ଶ୍ରଦ୍ଧା ଓ ସଦ୍‌ଭାବ ତଥା ସଂହତି ରକ୍ଷା କରିବା ପାଇଁ ସର୍ବୋପରି ଗାଆଁର ସର୍ବାଙ୍ଗୀନ ଉନ୍ନତି ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥା କଥା ଚିନ୍ତା କରାଯାଇଥିଲା । ଏହାଥିଲା ଗାନ୍ଧୀଙ୍କ ଦର୍ଶନ । ପ୍ରତି ପଞ୍ଚାୟତ ସ୍ୱାଧୀନ ସଂସ୍ଥା ଭାବେ ଗାଆଁର ମଙ୍ଗଳ ପାଇଁ କାମ କରିବା ପାଇଁ ନିର୍ବାଚିତ ସଭ୍ୟମାନେ ଲାଗି ପଡ଼ିବାର ପରିକଳ୍ପନା ଆଜି କେତେ ଅସାର ପ୍ରମାଣିତ ହୋଇଛି । ନିର୍ବାଚନ ପରେ ପରେ ଗାଆଁ ଗାଆଁ ଭିତରେ ଘର ଘର ଭିତରେ ଦଙ୍ଗାଫସାଦ ମାଡ଼ପିଟ ହାଣକାଟ ଲାଗିଛି ।

ଉପର ସ୍ତରର ନେତାମାନେ ରାଜଧାନୀର ଶୀତତାପ ନିୟନ୍ତ୍ରିତ କକ୍ଷରେ ବସି ଗାଆଁର ପଞ୍ଚାୟତ ନିର୍ବାଚନରେ ପଶାକାଠି ପକେଇ ଚାଲିଛନ୍ତି । ସେମାନଙ୍କ ଏନ୍ତୁନି ସ୍ତରୀୟ ପ୍ରତିନିଧିମାନେ ଗାଆଁ ଗାଆଁରେ ମହାଭାରତ ସୃଷ୍ଟି କରିଚାଲିଛନ୍ତି, ଫଳରେ ଗ୍ରାମସଭା ଗୁଡ଼ିକ କୁରୁସଭାରେ ପରିବର୍ତ୍ତିତ ହୋଇଯାଇଛି । ଗାଆଁର ଭାଇଚାରା, ସରଳତା ଆଜି ନଷ୍ଟଭ୍ରଷ୍ଟ ହୋଇଯାଇଛି । ଦଳଗତ, ଜାତିଗତ, ଗୋଷ୍ଠୀଗତ ବାଦ ବିସମ୍ବାଦରେ ତ୍ରାହି ତ୍ରାହି ଡାକୁଛି ସରଳ ଗ୍ରାମ୍ୟ ଜୀବନ । ନିର୍ବାଚନର ସାଗର ମନ୍ଥନ

ଫଳରେ ଯେଉଁ ଗଣତାନ୍ତ୍ରିକ ହଳାହଳ ସଂଜାତ ହୋଇଛି ତାହାକୁ ପାନ କରି ନୀଳକଣ୍ଠ ହେବାକୁ କିଏ ଆଗୁସାର ହେବ ତାହା ହିଁ ଅସମାହିତ ପ୍ରଶ୍ନ ।

ଏଇ ନିର୍ବାଚନର ଆଢୁଆଳରେ ଯେଉଁ ଭୋଟବ୍ୟାଙ୍କ ସୃଷ୍ଟିର ପରିକଳ୍ପନା ଚାଲିଛି; ତାହାରି ଫଳରେ ଉଗ୍ର ଜାତିଗତ ସମସ୍ୟା ସାଙ୍ଗକୁ ଦେଶରେ କୋଣେ କୋଣେ ମନ୍ଦିର ମସ୍‌ଜିଦ୍‌ର ଝଡ଼ ସୃଷ୍ଟି ହୋଇଛି ।

ଏହାର ସମାଧାନ କଣ ନୀରିହ ଜନସାଧାରଣ କରିପାରିବେ । ସମସ୍ୟା ତ ଏମାନେ ସୃଷ୍ଟି କରୁନାହାନ୍ତି । କରିଛନ୍ତି. ଆମର ରାଜନୀତିର ବଡ଼ପଣ୍ଡାମାନେ !! ଧନ୍ୟ କହିବା ଏହି ତଥାକଥିତ ଗଣତନ୍ତ୍ର ଗଣତନ୍ତ୍ର ବ୍ୟବସ୍ଥାକୁ !!

ଜୟ ଭାରତ ! ଜୟ ଜଗନ୍ନାଥ !!



# ବୋଲେ ହୁଁଟିର କଲମରୁ...

## ରଘୁ ନାଏକ ଯଦି ଓଡ଼ିଆ ହୋଇ ନଥାନ୍ତେ....

ମୋର ସୌଭାଗ୍ୟ ମୁଁ ରାଜକନିକାର ରାଜେନ୍ଦ୍ର ନାରାୟଣ ହାଇସ୍କୁଲର ବିଜ୍ଞାନ ଶିକ୍ଷକ ଭାବେ ଯୋଗଦେଇଥିଲି ସେଠାରେ ରଘୁ ନାଏକଙ୍କ ସଂପର୍କରେ କେତେଥର ଆସିଥିଲି । ତାଙ୍କୁ ପ୍ରତ୍ୟକ୍ଷଭାବରେ ଶୁଣିଥିଲି । ସେ କେମିତି ଯୁବାବସ୍ଥାରେ ମାଳିକାମ କରୁଥିଲେ । ଗାନ୍ଧିଜୀଙ୍କୁ ଖାକଡ଼ା (ଏକପ୍ରକାର ଯଅ ରୁଟି) ଛେଳିକ୍ଷୀରରେ ଭିଜାଇ ଖାଇବାକୁ ଦେଉଥିଲେ । ସେଦିନ ରଘୁନାଏକ ମୋତେ ଯାହା ଶୁଣାଇଥିଲେ -

"ସେଦିନ ପ୍ରାର୍ଥନା ସଭାରେ ସବୁ ଦିନପରି ଗାନ୍ଧିଜୀ ଉପସ୍ଥିତ ଥାଆନ୍ତି । ମୁଁ ମୋର ଖୁରପିରେ ଫୁଲଗଛ ମୂଳରୁ ଘାସ ସଫା କରୁଥାଏ, ହଠାତ୍ ଗୁଳିଫୁଟା ଶବ୍ଦଶୁଣି ମୁଁ କିଛି ବୁଝି ନପାରି ଧାଇଁଗଲି ପ୍ରାର୍ଥନା ସଭା ଯାଗାକୁ । ଗାନ୍ଧିଜୀ ଟଳିପଡ଼ି ଥାଆନ୍ତି, ଗୋଟାଏ ଲୋକ ହାତରେ ପିସ୍ତଲ ଥିଲା । ସେ ପଳାଇ ଆସିବାକୁ ଚେଷ୍ଟା କରୁଥିଲା । ମୁଁ ଧାଇଁଯାଇ ତା ବେକକୁ ମୋ ବାଆଁ ହାତରେ ଚାପିଧରିଲି ଆଉ ଡାହାଣ ହାତରେ ଥିବା ମୋ ଖୁରୁପିରେ ତା ବେଗ ମୂଳକୁ ଦି ଚାରି ଖେଞ୍ଚା ଦେଲି । ସେ କିଛି ସମୟ ଛାଟିପିଟି ହେଲା ମୋ କବଳରୁ ଖସିଯିବା ପାଇଁ । ମାତ୍ର ମୁଁ ସେତେବେଳେ ୨୪/ ୨୫ ବର୍ଷର ଯୁବକ । ଦେହରେ ଅମାପ ବଳ । ଗାନ୍ଧିଜୀଙ୍କୁ ସେ ମାରି ଦେଇଥିବାରୁ ମୋ ଦେହରେ ବୋଧେ ଅସୀମବଳ ଆସିଯାଇଥିଲା ତାକୁ କାବୁ କରିବା ପାଇଁ । ଏହି ସମୟରେ ପୋଲିସ ଆସି  ସେ ଲୋକଟାକୁ ଧରିନେଲେ । ମୁଁ ତଥାପି ତାକୁ ଛାଡୁ ନଥାଏ । ହେଲେ ପୋଲିସ କହିଲେ ତାକୁ ଖୁରୁପିରେ ଆଉ ଛେଚନା । ତାଠୁ ଅନେକ କଥା ଜାଣିବାର ଅଛି । ପରେ ଜାଣିଲି ସେ ଲୋକଟା ନାଥୁରାମ ଗଡ୍‌ସେ ।''

ପୋଲିସ୍‌ର ଟିକେ ବିଳମ୍ବରେ ହୁଏତ ସେଦିନ ରଘୁ ନାଏକ ବାହୁର ଚାପରେ ଗଡ୍‌ସେ ଶ୍ୱାସରୁଦ୍ଧ ହୋଇ ମରିଥାନ୍ତା । ଏ କଥା ସେଦିନ ରାଜକନିକାର ବାନା ନନା ଚାହା ଦୋକାନରେ ବସି ଶୁଣୁଶୁଣୁ ମୁଁ ରୋମାଞ୍ଚିତ ହୋଇଥିଲି । ଭାବିଥିଲି– ରଘୁ ନାଏକ ଓଡ଼ିଆ ନହୋଇଥିଲେ ଆଜି ସେ ଜଣେ କେତେ ବଡ଼ ସମ୍ମାନିତ ବ୍ୟକ୍ତିଭାବେ ପୂଜା ପାଉଥାନ୍ତେ । କାରଣ ଜାତିର ପିତାଙ୍କ ହତ୍ୟାକାରୀକୁ ଧରେଇ ଦେବାର ସଫଳ ବ୍ୟକ୍ତିଟି ଏଇ ରଘୁ– ରଘୁମାଳି । କିନ୍ତୁ ରଘୁଙ୍କର ଦୁର୍ଭାଗ୍ୟ ସେ ଓଡ଼ିଶାରେ ଜନ୍ମ । ଏଥିପାଇଁ ସେ ଅବହେଳିତ ।

ତାଙ୍କର ସେ ସାହାସିକ କାର୍ଯ୍ୟ ପାଇଁ ତତ୍କାଳିନ ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦଙ୍କ ଠାରୁ ସେ ପାଇଥିବା ପ୍ରଶଂସା ପତ୍ରଟି ଆଣି ମୋତେ ଦେଖାଇଥିଲେ । ମୁଁ ତାର ନକଲ ସହ ଏକ ଅନୁରୋଧ ପତ୍ର ଆକାଶବାଣୀ କଟକର ନିର୍ଦ୍ଦେଶକଙ୍କ ପାଖକୁ ପଠାଇଥିଲି । ତତ୍କାଳୀନ ନିର୍ଦ୍ଦେଶକ ରଫିକ୍ ବାବୁ ମୋଠାରୁ ସୂଚନା ପାଇ ଆଠଦିନ ଭିତରେ ରଘୁ ନାଏକଙ୍କୁ ଆକାଶବାଣୀ ଡକାଇ ଏକ ସାକ୍ଷାତକାର ବ୍ୟବସ୍ଥା କରାଇଥିଲେ । ଶିଶୁସଂସାର ବିଭାଗରେ ମଧ୍ୟ ବଡ଼ଭାଇ ନଦୀୟାବିହାରୀ ମହାନ୍ତି ତାଙ୍କର କୁନିକୁନି ପିଲାଙ୍କ ସହ ରଘୁ ଅଜାଙ୍କ ସାକ୍ଷାତକାର ଭାବେ ଏକ ପ୍ରୋଗ୍ରାମ୍ କରାଇଥିଲେ । ଆକାଶବାଣୀ ତରଫରୁ ରଘୁ ନାଏକଙ୍କୁ କଟକ ସହର ସାରା ବୁଲାଇବାର ବ୍ୟବସ୍ଥା ମଧ୍ୟ କରାଇଥିଲେ । ଏସବୁ ୧୯୬୯-୭୦ ମସିହାର କଥା ।

ରଘୁ ନାଏକଙ୍କ ଉପରେ ବିସ୍ତୃତ ବିବରଣୀ ସହ ଏକ ଚିଠି ଓଡ଼ିଶାର ଏକ ପ୍ରମୁଖ ସମ୍ବାଦପତ୍ରକୁ ପ୍ରକାଶ ପାଇଁ ପଠାଇଥିଲି । ମାତ୍ର ଦୁଃଖର କଥା ସଂପାଦକ ମହାଶୟ ତାହା ପ୍ରକାଶ କରିଲେ ନାହିଁ । ସମ୍ଭବତଃ ସେ ଏସବୁ ତଥ୍ୟକୁ କପୋଳକଳ୍ପିତ ବୋଲି ଭାବିଲେ । କିନ୍ତୁ ସୁଖର କଥା ଇଂରେଜୀ ସମ୍ବାଦ 'ବ୍ଲିଜ୍‌ର ସଂପାଦକ ଆଇ.କେ. କରଂଜିଆ 'Raghu the gardener' ଭାବେ ସୂକ୍ଷ୍ମ ଆଲେଖ୍ୟଟିର ବାହାର କରିଥିଲେ ।

ମନ ଦୁଃଖ ମନରେ ଥାଏ । ମୋର ଏକ ପୁସ୍ତକ (ଶିଶୁ ସାହିତ୍ୟ) ରଙ୍ଗବେରଙ୍ଗ ପ୍ରକାଶିତ ହେଲା । ସେଇ ପୁସ୍ତକରେ ମୁଁ ରଘୁ ନାଏକଙ୍କ ସମ୍ବନ୍ଧରେ ଲେଖାଟିଏ ସ୍ଥାନିତ କଲି । ସେଇ କ୍ଷୁଦ୍ର ଲେଖାଟିରେ ଉଭୟ ଛୋଟ ଓ ବଡ଼ଙ୍କ ପାଇଁ ମୂଲ୍ୟବାନ ସୂଚନା ରହିଛି ।

ଏସବୁ କଥା ଅବତାରଣାର ଉଦ୍ଦେଶ୍ୟ ହେଲା ଆମେ ଓଡ଼ିଆ କଙ୍କଡ଼ା ପଣିଆରେ ଧୁରନ୍ଧର । ଗୋଡ଼ ଟଣାଟଣିରେ ବ୍ୟସ୍ତ । ଏଥିପାଇଁ ରଘୁ ନାଏକ ଏକା କାହିଁକି, ବହୁ ପ୍ରତିଭାକୁ ଆମେ ସମ୍ମାନ ଦେବାରେ ବଡ଼ ବୀତସ୍ପୃହ । ଆମ ସରକାର ବିଶେଷଭାବେ ଓଡ଼ିଶା ସରକାର ରାଜନୈତିକ ସ୍ୱାର୍ଥକୁ ଆଖି ଆଗରେ ରଖି ଅନେକ ଭତ୍ତା ପ୍ରଦାନ ବ୍ୟବସ୍ଥା କରୁଥିବା ବେଳେ ରଘୁ ନାଏକ ପରିବାର ଦାରିଦ୍ର୍ୟ କଷାଘାତରେ ଜର୍ଜରିତ । ହଁ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ଏଇ ରାଜ୍ୟରେ 'ଆଜାଦ୍ ହିନ୍ଦ୍ ଫୌଜ୍'ରେ ଥିବା ବ୍ୟକ୍ତି ଭିକମାଗି ଚଳୁଛି । ଆନ୍ତର୍ଜାତିକ ଗୌରବ ଅର୍ଜନ କରିଥିବା କ୍ରୀଡ଼ାବିତ୍ ବେକାର ବୁଲୁଛି ଚାକିରି ଖଣ୍ଡେ ପାଇଁ । କିଏ ପୁଣି ହାଣ୍ଡିଆ ବିକୁଛି । ହାଏରେ ଓଡ଼ିଶା.... !

କିନ୍ତୁ ସୁଖର କଥା, ଆଜି ବିଦେଶୀ କମ୍ପାନୀ ଜର୍ମାନୀର ଏକ ଅଟୋ ମୋବାଇଲ ସଂସ୍ଥା ରଘୁ ନାଏକର ପ୍ରତିଭାକୁ ଉପଲବ୍ଧି କରି ରାଜକନିକା ନିକଟସ୍ଥ ରଘୁ ନାଏକଙ୍କ ଗାଆଁ ଜାଗୁଳେଇ ପଡ଼ାରେ ଗାନ୍ଧିଜୀ ଓ ରଘୁ ନାଏକଙ୍କ ଏକ ଯୁଗଳ ମୂର୍ତ୍ତି ସ୍ଥାପନ କରିଛନ୍ତି । ଯାହା ଓଡ଼ିଶା ସରକାର କି ଭାରତ ସରକାର କରିପାରିଲେନି, ତାହା ଜଣେ ବିଦେଶୀ ଆସି କରି ଦେଖାଇଲେ । କୋଟି କୋଟି ପ୍ରଣାମ ସେଇ ବିଦେଶୀ କଂପାନୀର କର୍ମକର୍ତ୍ତାଙ୍କୁ । ଆଉ ଶତ୍‌ଧିକ୍ ଆମ ସରକାରଙ୍କୁ ।

ଏବେ ଶୁଣାଯାଏ ଆମ ସରକାରଙ୍କ କାଳେ ନିଦ ଭାଙ୍ଗୁଛି । ସେ ଏକ ମୂର୍ତ୍ତି ସ୍ଥାପନ ପାଇଁ ବ୍ୟବସ୍ଥା କରୁଛନ୍ତି । ଏଥିରେ ହୁଏତ ନିଜକୁ ମାଡ଼ିପଡ଼ିବା ଭଳି ବାଧବାଧକତା ରହିଛି । ଆଜି କିନ୍ତୁ ପ୍ରତିଭା ପୂଜାର ସ୍ୱତଃସ୍ଫୁର୍ତ୍ତତା ନାହିଁ ନିଶ୍ଚୟ । ହଁ– ରଘୁ ନାଏକ ଯଦି କୌଣସି ରାଜନୈତିକ ନେତାଙ୍କ ସଂପର୍କୀୟ ହୋଇଥାନ୍ତେ, କଥାଟା ନିଶ୍ଚୟ ଭିନ୍ନ ମୋଡ଼ ବହୁ ଆଗରୁ ନେଇ ସାରନ୍ତାଣି ।

ସେ ଯାହାହେଉ ରାଜକନିକା କିନ୍ତୁ ଜାଗିଛି । ଶୁଭ୍ରାଂଶୁ ବାବୁ ରଘୁ ନାମରେ ଏକ ଇଂରେଜୀ ପୁସ୍ତକ ପ୍ରକାଶ କରିଛନ୍ତି । ପ୍ରତିବର୍ଷ ସେଠାରେ ଗାନ୍ଧିଜୀଙ୍କ ଜୟନ୍ତୀ ଆଉ ଶ୍ରାଦ୍ଧ ବାର୍ଷିକୀ ସଭାରେ ରଘୁ ନାଏକଙ୍କ ସ୍ମୃତିଚାରଣ କରାଯିବା ଗୌରବର କଥା ।

ରେ ଓଡ଼ିଆ ଟିକେ କଙ୍କଡ଼ା ପଣିଆ ଛାଡ଼ । ପ୍ରତିଭାକୁ ଚିହ୍ନ । କେବେ ଏ ସଦ୍‌ବୁଦ୍ଧି ହେବ ! ବୋଲେ ହୁଁ ଟି ବଞ୍ଚି ଥାଉଁ ଥାଉଁ ସେ ଶୁଭଦିନ ଦେଖିପାରିବ ତ !

ଜୟ ହିନ୍ଦ୍– ଜୟ ମୋ ମାଆ– ଜୟେ ମୋ ଗାଆଁ ।

## ସମବେଦନା

ବିଗତ ସୁନାମିରେ ଅଗଣିତ ଜନତା ମୃତ୍ୟୁବରଣ କଲେ ।
ଯେଉଁମାନେ ବଞ୍ଚିଗଲେ ସେମାନେ ବି
କମ୍ ଦୁଃଖରେ କାଳ କାଟୁ ନାହାନ୍ତି !
ବୋଲେ ହୁଁ ଟି ପରିବାର ସମସ୍ତଙ୍କ ପାଇଁ
ଅନ୍ତର୍ଦାହରେ ଦଗ୍ଧିଭୂତ ଏବଂ ବିଶ୍ୱନିୟତାଙ୍କୁ ପ୍ରାର୍ଥନା କରୁଛି
ଏ ଦୁର୍ଦ୍ଦିନ ଆଉ କେବେ ନ ଆସୁ ।



## ସଂପାଦକଙ୍କ କଲମରୁ...

ସୁଖର କଥା ଏଥର ସାଧାରଣତନ୍ତ୍ର ଦିବସରେ ଓଡ଼ିଶା ସରକାରଙ୍କର ପ୍ରଜ୍ଞାପନ ମେଢ଼ରେ ପଟ୍ଟ ଚିତ୍ରର ଗାଆଁ ରଘୁରାଜପୁର ସ୍ଥାନ ପାଇଛି । ସରକାରଙ୍କ ଲୋକସଂପର୍କ ବିଭାଗ ଗ୍ରାମାଭିମୁଖି ହେବା ଏକ ଶୁଭଲକ୍ଷଣ । ତେବେ ସୁନ୍ଦର ଓ ପ୍ରସିଦ୍ଧ ଗ୍ରାମ ଗୁଡ଼ିକୁ ଲୋକଲୋଚନକୁ ଆଣିବାକୁ ଯାଇ ସରକାରଙ୍କ ପର୍ଯ୍ୟଟନ ବିଭାଗ ଯେପରି ଗ୍ରାମର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ନଷ୍ଟ କରି ନଦିଅନ୍ତୁ । ସେଥିପ୍ରତି ଧ୍ୟାନଦେବା ଆବଶ୍ୟକ । ଗାଆଁର ଅଙ୍କାବଙ୍କା ରାସ୍ତା, ଗହଳିଆ ଆମ୍ବତୋଟା, ବୁଦ୍‌ବୁଦୁକୁଆ କରିକିଚି ଆଉ କାଁନକୋଳି କଣ୍ଟାର ଜଙ୍ଗଲ, ନାଲିକଇଁ ଆଉ ପଦ୍ମ ଫୁଟିଥିବା ପୋଖରୀର ସୌନ୍ଦର୍ଯ୍ୟକୁ ଅକ୍ଷୁନ୍ନ ରଖାଯାଉ ।

ଅନ୍ୟକଥାରେ କହିବାକୁ ଗଲେ– କୃତ୍ରିମ ଉପାୟରେ ପ୍ରାକୃତିକ ପରିବେଶ ସୃଷ୍ଟି କଲେ ବରଂ ଭଲ । କିନ୍ତୁ କୃତ୍ରିମ ଉପାୟରେ ତୋଟା ବଦଳରେ ପାର୍କ, ଗାଡ଼ିଆ ବଦଳରେ ସୁଇମିଂ ପୁଲ, ଭାଗବତ ଟୁଙ୍ଗି ବଦଳରେ ରିଂଡିଂରୁମ୍ ଛୋଟ ଛୋଟ ନୂଆଁଣିଆ ଚାଳଘର ପରିବର୍ତ୍ତେ ମାର୍କେଟ କମ୍ପ୍ଲେକ୍ସ କରି ଗାଆଁକୁ ଛୋଟ ସହରରେ ପରିଣତ କରିଦେଲେ ଗାଆଁର ମୌଳିକତା ନଷ୍ଟ ହେବ । ଗାଆଁ ଆଉ ଗାଆଁ ହୋଇ ରହିବ ନାହିଁ ।

× × × ×　　× × × ×　　× × × ×　　× × × ×

ସରକାରଙ୍କ ବିଭିନ୍ନ ପୁରସ୍କାର ଯୋଜନାକୁ ଭଲଭାବେ ନିରୀକ୍ଷଣ କଲେ ଜଣାଯାଏ ଅଧିକାଂଶ ପୁରସ୍କାର ପ୍ରାପ୍ତ ବ୍ୟକ୍ତି ପ୍ରାୟତଃ ସହର ବାସିନ୍ଦା, ଏହାର କାରଣ ହୋଇପାରେ ପୁରସ୍କାର ପ୍ରଦାନ କରୁଥିବା ସଂସ୍ଥାସବୁ ସହରରେ । ପୁରସ୍କାର ପ୍ରତିଭା ଚୟନକାରୀ ଗଣ ସମ୍ଭବତଃ ସହରବାସୀ । ଫଳରେ ତେଲିଆ ମୁଣ୍ଡରେ ତେଲ ପରି ଯେଉଁମାନେ ବହୁ ଆଗରୁ ବହୁ ଭାବରେ ପୁରସ୍କୃତ, ସେଇମାନେ ପୁଣି ଅଧିକରୁ ଅଧିକ ପୁରସ୍କାର ପାଇ ଚାଲିଛନ୍ତି ଫଳରେ ଗୋଟେ ଧାରଣା ଆସୁଛି 'ପ୍ରତିଭା' ବୋଧେ ସହରୀ କୋଠାରେ ରହିବାକୁ ପସନ୍ଦ କରୁଛନ୍ତି । ଗାଆଁର କାଦୁଅ ପଚ ପଚ ରାସ୍ତା ଆଉ ଛପର ଉଡ଼ି ଯାଉଥିବା ଘର ଆଡ଼କୁ ମୁହାଁଉ ନାହାନ୍ତି ।

ବୋଧହୁଏ ଏହି କାରଣରୁ ଗ୍ରାମାଞ୍ଚଳରେ ପ୍ରତିଷ୍ଠିତ ଯାତ୍ରାଦଳ ସହରକୁ ଧାଇଁଲେଣି । ଗାଆଁର ସାପୁଆ କେଳା ପେଡ଼ିଧରି ଆସିଛି ସହରର ଗଳିକନ୍ଦି ବୁଲି ସାପ

ଖେଳ ଦେଖାଇବାକୁ । ବାଉଁଶ ରାଣୀ ଆଉ ଗୋବିନ୍ଦିମୂକ୍ଷା କି ସଖୀ କଣ୍ଢେଇ ନାଚ ଆଉ ଗାଆଁରେ ଦେଖିବାକୁ ମିଳୁନାହିଁ । ଦେଖିବାକୁ ମିଳୁଛି କେବଳ କାଁ ଭାଁ ଟି.ଭି. ପର୍ଦ୍ଦାରେ ।

ଏଣୁ ବିଚାର କରିବାର ବେଳ ଆସିଛି । ଗାଆଁର ମୌଳିକତା ରହିବ ନା ପ୍ରତି ଗାଆଁକୁ ସହର କରିଦେଇ ପୃଥିବୀ ମାନଚିତ୍ରରୁ ଗାଆଁକୁ ହଟେଇ ଦେବା ।

ପାଠକେ ଥରେ ଚିନ୍ତା କରନ୍ତୁ ତ !

ଜୟ ଜଗନ୍ନାଥ, ଜୟ ମୋ ଗାଆଁ ମୋ ମାଆ ।



# ବୋଲେ ହୁଁଟି କଲମରୁ...

ବିନ୍ଦୁସାଗରରେ ବୁଡ଼ଦେଲେ ପୁଣ୍ୟ ହୁଏ । ଏହାର ଚତୁଃପାର୍ଶ୍ୱରେ ଏବେ ନଗର ନିଗମ ସୁନ୍ଦର ପଥରବନ୍ଧ କରୁଛନ୍ତି । ସ୍ଥାନେ ସ୍ଥାନେ ଯାତ୍ରୀମାନଙ୍କୁ ଏହି ପୁଷ୍କରିଣୀର ସୁରକ୍ଷା ପାଇଁ ପରାମର୍ଶପୂର୍ଣ୍ଣ ସୂଚନା ଫଳକ ଦେଇଛନ୍ତି । ମୁଁ ପ୍ରାୟତଃ ଏହି ପୁଷ୍କରିଣୀର କଡ଼ଦେଇ ଯାତାୟାତ କରିଥାଏ । ସେଦିନ ମୁଁ ରହୁଥିବା ଆପାର୍ଟମେଣ୍ଟରେ ଅକସ୍ମାତ୍ ଯାନ୍ତ୍ରିକ ତ୍ରୁଟିଯୋଗୁଁ ଜଳ ସଙ୍କଟ ତ ଦେଖାଗଲା । ଏଣୁ ମୁଁ ସ୍ଥିର କଲି ଆଜି ବାଥ୍‌ରୁମ୍‌ର ସାଓ୍ୟାର ବାଥ୍ ତ କରିହେବନି । ଏଣୁ ବିନ୍ଦୁସାଗରରେ ସ୍ନାନ କରିବା । ବିନ୍ଦୁସାଗରରେ ପ୍ରବେଶ କଲି, ସ୍ନାନ ବି କଲି । ଅର୍ଘ୍ୟ ସୂର୍ଯ୍ୟଦେବଙ୍କୁ ଦେବା ସଙ୍ଗେ ସଙ୍ଗେ ପ୍ରଭୁ ଲିଙ୍ଗରାଜଙ୍କ ଉଦ୍ଦେଶ୍ୟରେ ମଧ୍ୟ ଆଞ୍ଜୁଳାଏ ଜଳ ଅର୍ପଣ କରି ପ୍ରଣାମ ଜଣାଇଲି । କିନ୍ତୁ ଏହା କରିବା ଦ୍ୱାରା ମନରେ ଭକ୍ତିଭାବ ଆସିଲା ନାହିଁ କିମ୍ବା ଶାନ୍ତି ବି ଲାଗିଲା ନାହିଁ । ବରଂ କିମିତି ଯୋଟେ ଦୋଷୀ ଦୋଷୀଭାବ ଜାଗ୍ରତ ହେଲା । ତାର କାରଣ ବିନ୍ଦୁସାଗରର ଜଳରାଶି ଏତେ ଅପରିଷ୍କାର ହୋଇଛି ଯେ ସେଥିରେ ସ୍ନାନ କରିବା ବଡ଼ କଷ୍ଟଦାୟକ । ମୁଁ ଯେତେବେଳେ ସ୍ନାନ କରିବାକୁ ଗଲି ମୋ ଚାରିପାଖରେ ମେଞ୍ଚା ମେଞ୍ଚା ଖଙ୍କାର ଆଉ ଜିଭଛେଲାରୁ କଠିନ ଜିହ୍ୱା ମଳ ଭାସୁଥାଏ । ଏଣୁ ଘୃଣା ଜାତ ହେବା ସ୍ୱାଭାବିକ ।

ଏହି ଜଳରାଶିକୁ କ'ଣ ନିର୍ମଳ ଆଉ ବିଶୁଦ୍ଧ ରଖାଯାଇପାରନ୍ତାନି । ଏହାର କୂଳରେ ପିଣ୍ଡଦାନ ଦେବାବେଳେ ବ୍ରାହ୍ମଣ ତିଳତଣ୍ଡୁଳରରୁ ପ୍ରତୀକ ଭାବେ ମୁଠେ ନିକ୍ଷେପ କରି ଅନ୍ୟାନ୍ୟ ଫଳପୁଷ୍ପ ପତ୍ର ଆଦିକୁ ଅନ୍ୟତ୍ର ପକାଯିବାର ବ୍ୟବସ୍ଥା ହୁଅନ୍ତା ନାହିଁ । ନିକ୍ଷେପିତ ତିଳତଣ୍ଡୁଳକୁ ସହଜରେ ଭୋଜନ କରିପାରୁଥିବା ମତ୍ସ୍ୟମାନେ ଏଠାରେ ପ୍ରତିପାଳିତ ମଧ୍ୟ ହୋଇପାରନ୍ତେ ।

ଏହାର ଜଳକୁ ସମ୍ପୂର୍ଣ୍ଣ ନିଷ୍କାସନ କରି ପୁଣି ନୂତନ ଭାବେ ବିଶୁଦ୍ଧ ପାନୀୟ ଜଳରେ ପୂର୍ଣ୍ଣ କରିଲେ ହୁଏତ ଭଲ ହୁଅନ୍ତା । ମୋଟ ଉପରେ ଏହି ପବିତ୍ର ପୁଷ୍କରିଣୀର ଜଳକୁ ଦେଖିବାମାତ୍ରେ ମନରେ ପବିତ୍ରଭାବ ଆସିବା ଭଳି ଅବସ୍ଥା ସୃଷ୍ଟି ହେବା ଦରକାର ।

ଏଇଠି ସମ୍ଭବତଃ ଫକୀର ମୋହନଙ୍କ ଏକ ବ୍ୟଙ୍ଗୋକ୍ତି ମନେପଡୁଛି । ପୁଷ୍କରିଣୀରୁ ଜଳ ଆଣିବାବେଳେ ମହିଳାମାନେ କିଛି ଜଳ ମଧ୍ୟ ତ୍ୟାଗ କରିଥାନ୍ତି । ଆଜି ବିନ୍ଦୁସାଗରରେ ଏହି ଉକ୍ତି କେବଳ ମହିଳା ନୁହଁ ଆବାଳବୃଦ୍ଧବନିତା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହେଲାଭଳି ମନେହୁଏ ।

ଏଣୁ ଆମର ପୂଣ୍ୟତୀର୍ଥ ଜଳାଶୟ ଗୁଡ଼ିକର ଜଳରାଶିକୁ ନିର୍ମଳ ରଖିବାର ମନସ୍କତା ବୃଦ୍ଧି ପାଉ ଆଉ ସ୍ୱାସ୍ଥ୍ୟ ସଚେତନତା ଜାଗ୍ରତ ହେଉ.... ବୋଲେ ହୁଁଟିର ଏତିକି କାମନା ।

ଜୟହିନ୍ଦ୍ ! ଜୟ ମୋ ଗାଆଁ ଜୟ ମୋ ମାଆ ।

ଚିତ୍ରଗୁପ୍ତ– ଆଗନ୍ତୁକ ମହାଶୟ, ବୋଲେ ହୁଁଟି ମାଧ୍ୟମରେ ତୁମର ବକ୍ତବ୍ୟ ମୁଁ ଓ ଯମରାଜ ଖୁବ୍ ମନଯୋଗ ସହ ଶୁଣିଲୁ । ତୁମେ ଯେ ତୁମର ପ୍ରତିକ୍ରିୟାରେ କୌଣସି କୃତ୍ରିମତା ରଖିନାହିଁ ଏହା ସୁସ୍ପଷ୍ଟ ।

ଆମେ ଜାଣୁ ଅନେକ ସମୟରେ ନିର୍ଭୟରେ ଅପ୍ରିୟ ସତ୍ୟ ପ୍ରକାଶ କରିଛ । ସେଥିପାଇଁ ତୁମେ କେତେଥର ତୁମର ଉଚ୍ଚକର୍ତ୍ତୃପକ୍ଷ ଦ୍ୱାରା ଏବଂ ବେଳେବେଳେ ସହକର୍ମୀଙ୍କ ଦ୍ୱାରା ଅସୁବିଧାରେ ପଡ଼ିଛ । ସମାଜରେ ତୁମର ମଧ୍ୟ କେତେକ ପ୍ରତିଷ୍ଠିତ ବ୍ୟକ୍ତି ତୁମର ଆଦର୍ଶକୁ ପସନ୍ଦ କରିନାହାନ୍ତି । ତେବେ ସୁଖର କଥା ତୁମେ ଯାହା ଉଚିତ ମନେ କରିଛ– ତାହା ହିଁ କରିଛ । ଯାହା ଠିକ୍ ଭାବିଛ ତାହା ହିଁ କରିଛ ।

ଆଗନ୍ତୁକ– ଆପଣଙ୍କ ଅନୁଶୀଳନ ପାଇଁ ଧନ୍ୟବାଦ ।

ଚିତ୍ରଗୁପ୍ତ– କିନ୍ତୁ ତୁମର ସାରସ୍ୱତ ଜୀବନ କଥା ବିଚାରକୁ ନେଲେ ଦେଖାଯାଏ ତୁମେ ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରିଛ ।

ଆଗନ୍ତୁକ– ହଁ, ଚିତ୍ରଗୁପ୍ତ ମହାଶୟ, ମୁଁ ଶିଶୁସାହିତ୍ୟ, ନାଟକ, କବିତା, ଗୀତିକବିତା, ପ୍ରବନ୍ଧ, ରମ୍ୟରଚନା ଏବଂ ଗଳ୍ପ ଆଦି ସବୁ ଦିଗରେ ଲେଖନୀ ଚାଳନା କରିଛି ।

ଚିତ୍ରଗୁପ୍ତ– କିନ୍ତୁ ଗଳ୍ପ କ୍ଷେତ୍ରରେ ତୁମେ ଏତେଟା ପାରଦର୍ଶିତା ଦେଖାଇ ପାରିନାହିଁ ।

ଆଗନ୍ତୁକ– ଆପଣଙ୍କ କଥା ଶତପ୍ରତିଶତ ଠିକ୍ । ମୁଁ ଗଳ୍ପ ଲେଖାରେ ଦୁର୍ବଳ । କିନ୍ତୁ ଶିଶୁମାନଙ୍କ ପାଇଁ ଗଳ୍ପ ଲେଖାରେ ବେଶ୍ ସାବଲୀଳ । ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ ମୁଁ ଶିଶୁସାହିତ୍ୟ ଓ ଗୀତିକବିତାକୁ ଆଧାରକରି ଲେଖିବାରେ ବେଶୀ ଆନନ୍ଦିତ ।

ଚିତ୍ରଗୁପ୍ତ– ତେବେ ତୁମର ଗୀତିକବିତା, ନାଟ୍ୟଜୀବନ ଓ ଶିଶୁ ସାହିତ୍ୟ ଉପରେ ଆଉ ଟିକେ ଅଧିକ ଆଲୋକପାତ କରିବାକୁ ଯମରାଜ ଚାହାନ୍ତି ।

ଆଗନ୍ତୁକ– ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ । ଆପଣଙ୍କ ନିର୍ଦ୍ଦେଶାନୁସାରେ ମୁଁ ମୋର ନାଟ୍ୟଜୀବନ, ଗୀତିକବିତା ଓ ଶିଶୁ ସାହିତ୍ୟ ଉପରେ ବିଶଦ ବିବରଣୀ ପ୍ରଦାନ କରୁଛି ।



ସ୍ମୃତିଚାରଣ

# ମୁଁ ଓ ମୋର ନାଟ୍ୟଜୀବନ

ପ୍ରଥମରୁ କହି ରଖେ ମୁଁ ଜଣେ ସୌଖିନ ନାଟ୍ୟଶିଳ୍ପୀ ତଥା ସୌଖିନ ନାଟ୍ୟକାର । ମୋର ନାଟ୍ୟଜୀବନ ଆରମ୍ଭ ହୁଏ ଷଷ୍ଠଶ୍ରେଣୀରେ ପଢୁଥିବା ବେଳୁ କୋରେଇ ମାଇନର ସ୍କୁଲର ଶିକ୍ଷକ ଶ୍ୟାମସୁନ୍ଦର ପାତ୍ରଙ୍କ ଉଦ୍ୟମରେ ନାଟକ ଅଭିନୀତ ହେବା ସ୍ଥିର ହୋଇଥାଏ । ଶିକ୍ଷକ ଶ୍ୟାମସୁନ୍ଦର ବାବୁ ନିଜେ ବଭ୍ରୁବାହନ ଭୂମିକାରେ ଅଭିନୟ କରୁଥିଲେ ଆଉ ଜଣେ ଛାତ୍ର ପଦ୍ମନାଭ ମହାପାତ୍ର ରେଖା ଭୂମିକାରେ ଅବତୀର୍ଣ୍ଣ ହୋଇଥାନ୍ତି । ଏଇ ନାଟକରେ କୌଣସି ଗୋଟିଏ ଭୂମିକା ପାଇଁ ମୋତେ ଅଭିନୟ କରିବାକୁ କୁହାଗଲା । ମାତ୍ର ମୁଁ ସେଥିରେ ସଫଳ ହେଲିନାହିଁ । ପରେ ସମବେତ ନୃତ୍ୟରେ ମଧ୍ୟ ଭାଗ ନେବାକୁ କୁହାଗଲା । ସେଥିରେ ବି ସଫଳ ହେଲି ନାହିଁ । ଏଣୁ ମାଇନର ସ୍କୁଲରେ ପଢୁଥିବାର ବେଳେ ମୋର ନାଟକ ପ୍ରତି ଏକ ଆକର୍ଷଣ ସୃଷ୍ଟି ହୋଇଥିଲା ଯାହା କି କାର୍ଯ୍ୟରେ ପରିଣତ ହେଲା ହାଇସ୍କୁଲରେ ।

ଏନ୍.ସି. ହାଇସ୍କୁଲ ଯାଜପୁର ରୋଡ଼ରେ ମୁଁ ଥାଏ ଜଣେ କୃତୀ ଛାତ୍ର । ଶ୍ରେଣୀରେ ପ୍ରଥମ ହେଉଥାଏ । ପ୍ରତ୍ୟେକ ବିଷୟରେ ବିଶେଷତଃ ଇଂରେଜୀ ଓଡ଼ିଆ ସଂସ୍କୃତରେ ମୁଁ ଖୁବ୍ ବେଶୀ ନମ୍ବର ରଖୁଥିବାରୁ ଶିକ୍ଷକଗଣ ମୋତେ ଆଦର କରୁଥାନ୍ତି । ଏହି ବିଦ୍ୟାଳୟରେ ସହକାରୀ ପ୍ରଧାନ ଶିକ୍ଷକ ଅଚ୍ୟୁତାନନ୍ଦ ପତି ଜଣେ କଳାପ୍ରେମୀ ବ୍ୟକ୍ତି । ସେ ମଧ୍ୟ ଆମର ଇଂରେଜୀ ପଢ଼ାନ୍ତି । ବିଦ୍ୟାଳୟର ଏକ ଉତ୍ସବରେ ଡକ୍ଟର ହରେକୃଷ୍ଣ ମହତାବ ଯୋଗ ଦେବାର ଥାଏ । ଏହି ଉପଲକ୍ଷେ ଛାତ୍ରଛାତ୍ରୀ ବିଭିନ୍ନ ମନୋରଞ୍ଜନ କାର୍ଯ୍ୟକ୍ରମ ପ୍ରସ୍ତୁତିରେ ଲାଗିପଡ଼ିଥାନ୍ତି । ଅଚ୍ୟୁତାନନ୍ଦ ପତି ଏକାଙ୍କିକା ଗୁଡ଼ିକର ନିର୍ଦ୍ଦେଶନା ଦାୟୀତ୍ୱ ନେଇଥାନ୍ତି । ମୁଁ ଓଡ଼ିଆ, ଇଂରେଜ ଏବଂ ହିନ୍ଦୀ ଏକାକିଙ୍କାରେ ଭାଗ ନେଇଥାଏ । ଓଡ଼ିଆ ଓ ଇଂରେଜୀ ଏକାଙ୍କିକା ନାଆଁ ମନେପଡୁନି କିନ୍ତୁ ହିନ୍ଦୀ ଏକାଙ୍କିକାରେ ମୁଁ ଛତ୍ରପତି ଶିବାଜୀର ଭୂମିକା ନେଇଥାଏ । ସମୟ ଅଭାବରୁ ଓଡ଼ିଆ ଆଉ ହିନ୍ଦୀ ଏକାଙ୍କିକା ମଞ୍ଚସ୍ଥ କରାହୋଇ ପାରିଲାନି । କିନ୍ତୁ ଇଂରେଜି ଏକାଙ୍କିକାଟି ଅଭିନୟ କରିବା ପାଇଁ ପ୍ରସ୍ତୁତି ଚାଲିଲା । ଛତ୍ରପତି ଶିବାଜୀ ଭୂମିକା ନେଇଥିବାରୁ ଲମ୍ବା ଦାଢ଼ିଗୁଡ଼ିକ ଉତ୍ପାଟନ କରି ମୋତେ ପୁଣି ଏକ ଗୋରାସାହେବ ଭୂମିକାରେ ସଜାଗଲା । ନକଲି ଦାଢ଼ିକୁ ପୋଡ଼ିବା ସମୟରେ ଭାରି କଷ୍ଟ ଲାଗୁଥାଏ । ଆଖିରୁ ଲୁହ ବାହାରି ପଡୁଥାଏ । ଯାହେଉ ସେଦିନ ଇଂରେଜୀ ଏକାଙ୍କିକାରେ ଫାଷ୍ଟ

ଜେନ୍‌ଟିଲମ୍ୟାନ୍ ଭୂମିକାରେ ଅଭିନୟ କରି ଖୁବ୍ ପ୍ରଶଂସିତ ହୋଇଥିଲି । ତପନ ସିଂହ ନାମକ ଜଣେ ଛାତ୍ର ମୋର ମେମ୍ ସାହେବ ହେବାକଥା ମନେପଡୁଛି । ବୋଧହୁଏ ମୋ ଅଭିନୟ ଏହି ପ୍ରଥମ ଇଂରେଜୀ ଏକାଙ୍କିକାରୁ ଆରମ୍ଭ ।

କଲେଜ ଜୀବନରେ ମୋର ବିଶେଷ କିଛି ଉଲ୍ଲେଖନୀୟ ଭୂମିକା ନଥିଲା । କାରଣ ଆଇ.ଏସ୍.ସି. ପଢ଼ିଲାବେଳକୁ ମୋର ସାଂସାରିକ ଜୀବନ ଆରମ୍ଭ ହୋଇଯାଇଥାଏ । ମାତ୍ର ୧୬/୧୭ ବର୍ଷ ବୟସରେ ବିବାହ ମୋର ଛାତ୍ର ଜୀବନର ସମସ୍ତ ସୁଖ ଆଉ ସରାଗ ଲୁଣ୍ଠନ କରିନେଇଥାଏ । ଏଣୁ ଭଦ୍ରକ କଲେଜର କୌଣସି ମତେ ପାଠ ପଢ଼ାଟି କରିବା ଛଡ଼ା ଆଉ କୌଣସି Co-curricular activitiesରେ ପ୍ରାୟତଃ ମୁଁ ଭାଗ ନେଇନଥିଲି । ତେବେ ନାଟକ ଓ ସଙ୍ଗୀତ ପ୍ରତି ସେଇ ଆକର୍ଷଣ ମୋତେ ବଡ଼ ଛଟପଟ କରୁଥାଏ । ଏହି ସମୟରେ ଭଦ୍ରକ ହାଇସ୍କୁଲ ପ୍ରାଙ୍ଗଣରେ ଏକ ନୃତ୍ୟ ସଙ୍ଗୀତ ଆସର ହେଉଥାଏ । ମୁଁ ଓ ମୋର ସହପାଠୀ କାଲା (ହଜାରି ଅବଦୁଲ ବାରୀ) ଦେଖିବାକୁ ଯାଇଥାଉ । ନୃତ୍ୟରେ ରାଧାକୃଷ୍ଣ ମିଳନ ନାଟିକାଟିରେ ବିଶିଷ୍ଟ ନୃତ୍ୟଶିଳ୍ପୀ କୁଙ୍କୁମ ମହାନ୍ତି ରାଧା ଭୂମିକାରେ ଏବଂ କୃଷ୍ଣପ୍ରିୟା କୃଷ୍ଣ ଭୂମିକାରେ ଅଭିନୟ କରୁଥିବା ଦୃଶ୍ୟ ଏବେ ବି ମୋ ଆଖି ଆଗରେ ନାଚିଯାଉଛି । ଠିକ ସେହିପରି ସେ ସମୟରେ (୧୯୫୮-୫୯) ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ୍, ରାଧାକୃଷ୍ଣ ଭଞ୍ଜଙ୍କ "ବଗ ଆଉ ବଗୁଲି, ଗଛ ଡାଳୁ ଉଡିଗଲେ ଡାଳଗଲା ଦୋହଲି'' ଗୀତଟି ଏତେ ଭଲ ଲାଗିଥିଲା ଯେ ଆଜି ବି ତାର ସ୍ୱର ମନେପଡ଼ିଯାଉଛି ।

ଆଇ.ଏସ୍.ସି. ପଢ଼ିବା ପରେ ମୁଁ ଆଉ କଲେଜର ଦ୍ୱାର ମାଡ଼ିନାହିଁ । ବିଜ୍ଞାନ ଶିକ୍ଷକ ଭାବେ ରୁଦ୍ରଚରଣ ହାଇସ୍କୁଲ ସୁଜନପୁରରେ ମାତ୍ର ୭୫ ଟଙ୍କା ମାସିକ ଦରମାରେ କାର୍ଯ୍ୟରେ ଯୋଗଦେଲି । ଏହି ବିଦ୍ୟାଳୟରେ ଯୋଗଦେଇ ମୋ କଳାର ପିପାସା ମେଣ୍ଟାଇବାର ବେଶ୍ ସୁଯୋଗ ପାଇଲି । କାରଣ ଏଠାକାର ବିଦ୍ୟାଳୟର ପ୍ରଧାନଶିକ୍ଷକ ସୁରେନ୍ଦ୍ର ନାଥ ରାଉତ ତଥା ପରିଚାଳନା କମିଟି ସଭାପତି ପର୍ଶୁରାମ ମହାନ୍ତି ଉଭୟେ ନାଟ୍ୟପ୍ରେମୀ । କ୍ରାଫଟ୍ ଶିକ୍ଷକ ଶଚୀ ମହାନ୍ତି ଓ ସ୍ଥାନୀୟ କେତେଜଣ ଯୁବକ ମଧ୍ୟ ନାଟ୍ୟପ୍ରେମୀ ଥିଲେ । ଏଣୁ ଏଠାରେ ବର୍ଷରେ ପ୍ରାୟ ୨/୩ ଥର ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଏ । ପ୍ରଧାନ ଶିକ୍ଷକ ନିର୍ଦ୍ଦେଶନା ଦିଅନ୍ତି । ମୁଁ ଏଠାରେ କେତେକ ନାଟକ ନିଜେ ଲେଖି ଛାତ୍ରଛାତ୍ରୀଙ୍କ ଦ୍ୱାରା ଅଭିନୀତ କରାଇଥିଲି । ନାଟକଗୁଡ଼ିକର ପାଣ୍ଡୁଲିପି ଆଉ ମୋ ପାଖରେ ନାହିଁ । ତେବେ ସୁରେନ୍ଦ୍ର ମହାନ୍ତିଙ୍କ ଶ୍ରୀକୃଷ୍ଣଙ୍କ ଶେଷ ହସ ଗପଟିର ନାଟ୍ୟରୂପ ଦେବାକଥା ମନେପଡୁଛି । ଏଥିରେ ମୋର ଛାତ୍ରୀ ପ୍ରମିଳା ମହାନ୍ତିଙ୍କ ଗାନ୍ଧାରୀ ଭୂମିକା ନେବାକଥା ଏବେବି ସଜୀବ ରହିଛି

ମନରେ । ଏହି ବିଦ୍ୟାଳୟରେ ବାଣ ହରଣ (ରଚନା ଗୋପାଳ ଛୋଟରାୟ) ଏକାଙ୍କିକାର ବୋଧେ ମୁଁ ଭୀଷ୍ମ ଭୂମିକାରେ ଅଭିନୟ କରିଥିଲି । ପ୍ରଧାନ ଶିକ୍ଷକ ସୁରବାବୁ ଶକୁନି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ତେବେ ପ୍ରଥମ ପୂର୍ଣ୍ଣାଙ୍ଗ ନାଟକରେ ଅଭିନୟ ଜୀବନ ମୋର ଏଇ ରୁଦ୍ର ଚରଣ ହାଇସ୍କୁଲରେ ହିଁ ଆରମ୍ଭ ।

'ଜନନୀ' ନାଟକ ମଞ୍ଚସ୍ଥ ହେଉଥାଏ । ଏଥିରେ ମୁଁ ରମାନାଥ ଭୂମିକାରେ ଅବତୀର୍ଣ୍ଣ ହୋଇଥାଏ । ଭୟରେ ମୁଁ ଥରୁଥାଏ । ମାତ୍ର ନାଟକର ଚରିତ୍ର ରମାନାଥ ଭୀଷଣ ଜ୍ୱରରେ ପଡ଼ି କମ୍ପୁଥିବାର ଦୃଶ୍ୟଥିବାରୁ ମୋର ଭୟଜନିତ କମ୍ପନ ଅଭିନୟ କ୍ଷେତ୍ରରେ ବେଶ୍ ସହାୟକ ହୋଇଥିଲା । ଏହି ନାଟକର ନିର୍ଦ୍ଦେଶକ ତଥା ପ୍ରଧାନଶିକ୍ଷକ ସୁରବାବୁ ନିଜେ ସୁଧୀର ଭୂମିକାରେ ଅଭିନୟ କରୁଥାନ୍ତି । ସେ ମଧ ମୋର ଅଭିନୟରେ ବେଶ୍ ଆନନ୍ଦିତ ହୋଇଥିଲେ । ପରେ ପରେ ଏହି ବିଦ୍ୟାଳୟରେ ମୁଁ ଅନେକ ଗୁଡ଼ିଏ ମଞ୍ଚ ନାଟକରେ ଅଭିନୟ କରିଥିଲି । ସେଥିମଧ୍ୟରୁ କମଳଲୋଚନ ମହାନ୍ତିଙ୍କ ଡାକବଙ୍ଗଳା, ଆନନ୍ଦଶଙ୍କରଙ୍କର ଚନ୍ଦ୍ରଭାନୁ କଥା ମନେପଡୁଛି । ବିଶେଷତଃ ଚନ୍ଦ୍ରଭାନୁ ନାଟକରେ ମୋର ଚନ୍ଦ୍ର ଭୂମିକା ସାଙ୍ଗକୁ ମୋର ଜଣେ ଛାତ୍ର ହେମେନ୍ଦ୍ରଙ୍କ 'ଭାନୁ' ଭୂମିକାରେ କେତୋଟି ଆକର୍ଷଣୀୟ ଦୃଶ୍ୟ ଏବଂ ସଂଳାପ ମୋର ଏବେବି ମନେପଡୁଛି ।

ହଁ, କହି ରଖେ ଏହି ବିଦ୍ୟାଳୟରେ ଶିକ୍ଷକତା କଲାବେଳେ ମୁଁ ଜଣେ ନାଟ୍ୟକାର, ନାଟ୍ୟଶିଳ୍ପୀ ତଥା ସ୍ମାରକ (prompter) ଏବଂ ନିର୍ଦ୍ଦେଶକ ଭୂମିକା ନିର୍ବାହ କରିବାର ଦକ୍ଷତା ଆହରଣ କରିଥିଲି । ଏଥିପାଇଁ ମୋର ପ୍ରଧାନ ଶିକ୍ଷକ ସୁରବାବୁଙ୍କ ପ୍ରଭାବ ମୋ' ଉପରେ ଯଥେଷ୍ଟ ପଡ଼ିଥିଲା । ସୁରବାବୁ ଜଣେ ବେତାର ନାଟ୍ୟଶିଳ୍ପୀ ଥିଲେ । ବେତାର କେନ୍ଦ୍ରର ସହ ନିର୍ଦ୍ଦେଶକ ସୁରେନ୍ ମହାନ୍ତି ତାଙ୍କ ବେଶ୍ ପ୍ରିୟ ଥିଲେ । ମୁଁ ଜଣେ ବେତାର ନାଟ୍ୟଶିଳ୍ପୀ ହେବାର ସ୍ୱପ୍ନ ଦେଖିଲି ସ୍ୱପ୍ନ ସଫଳ ହେଲା ମଧ । ୧୯୬୨ ମସିହାରେ ମୋର ପ୍ରଥମ ନାଟକ "ଉଲୁପି'' ୧୭.୬.୬୨ରେ ଆକାଶବାଣୀ କଟକର ନାରୀମହଲ କାର୍ଯ୍ୟକ୍ରମରୁ ପ୍ରଚାରିତ ହେଲା । ପରେ ପରେ ମୁଁ ମଧ୍ୟ ଅଡ଼ିସନଦେଇ ପ୍ରଥମ ଥରରେ ହିଁ ଉତ୍ତୀର୍ଣ୍ଣ ହେଲି । ଏହା ବୋଧେ ସେଇ ୧୯୬୨ର ମଇ ମାସର କଥା ।

ବେତାର ନାଟକରେ ମୋର ପ୍ରଥମ ଅଭିନୟ ଥିଲା ଜଣେ ରୋଗୀର ଭୂମିକା । ନାଟକ "ରାମର ସୁମତି''ରେ ଧୀର ବିଶ୍ୱାଳ ଏବଂ ପ୍ରଶାନ୍ତ ନନ୍ଦ ଅଭିନୟ କରୁଥାନ୍ତି । ଧୀର ବାବୁ ମୋତେ ରୋଗୀ ଭୂମିକାଟି କିଭଳି ବେତାରରେ ଜୀବନ୍ତ ହେବ ତାହା ବତାଇ ଦେଇଥିଲେ । ସେଦିନର ସେଇ ପରିଚିତି ମୋତେ ଭବିଷ୍ୟତରେ ଧୀର ବିଶ୍ୱାଳଙ୍କ ପ୍ରଯୋଜିତ ଚଳଚ୍ଚିତ୍ର "ଧରିତ୍ରୀ''ରେ ଗୀତ ଲେଖିବାର ସୁଯୋଗ ଦେଇଥିଲା ।

ମୁଁ ନୃତ୍ୟନାଟିକା ଶକୁନ୍ତଳା ପାଇଁ ଗୀତଟି ଲେଖିଥିଲି - ଗୀତଟିର ପ୍ରଥମ ଧାଡ଼ି ହେଉଛି

"ତୁମେ କି ଜାଣନା ପ୍ରିୟ ମୁଁ ତୁମ ନାୟିକା

ମୁଁ ଯେ ସେଇ ଶକୁନ୍ତଳା କାନନ କଳିକା ।"

ପରେ ପରେ ମୁଁ ଆଉ କେତୋଟି ବେତାର ନାଟକରେ ଅଭିନୟ କରି ି । ସେଗୁଡ଼ିକ ମଧ୍ୟରୁ ଆକବରଙ୍କ ଦରବାର, ତରଙ୍ଗ, ସେଇ ରାତି, "ପୁଅ" ଆଦି ପ୍ରଧାନ । ତେବେ ଗୋପାଳ ଛୋଟରାୟଙ୍କ ପ୍ରଯୋଜିତ ନାଟକ "ଆହୁତି"ରେ କୁନ୍ଦନର ଭୂମିକାଟି ମୋତେ ଖୁବ୍ ଆନନ୍ଦ ଦେଇଥିଲା । ନାଟକ 'ପୁଅ'ରେ ମୋର ଅର୍ଜ୍ଜୁନ ଭୂମିକାଟି ମୋତେ ଖୁବ୍ ଭଲ ଲାଗିଥିଲା । କିନ୍ତୁ ପ୍ରଯୋଜକ ଶେଷବେଳକୁ ଏଇ ଭୂମିକାଟିକୁ କାଟଛାଣ୍ଟ କରି ଗୁରୁତ୍ୱହୀନ କରିଦେଲେ । ଏହାର ଯଥାର୍ଥତା କିଛି ନଥିଲା । କିନ୍ତୁ ସ୍ୱର୍ଗକୁ ନିଶୁଣି ନାହିଁ, ନ୍ୟାୟରେ ମୁଁ ଚୁପ୍ ରହି ଯାଇତାଇ ଅଭିନୟ କରି ମୋର ପାଉଣାଟକ ଧରି ଚାଲିଆସିଥିଲି । କିନ୍ତୁ ମନେ ମନେ ଗାଳି ଦେଇଥିଲି ସେଇ ସ୍ୱାର୍ଥପର ଈର୍ଷାଳୁ ପ୍ରଯୋଜକଙ୍କୁ । ସମ୍ଭବତଃ ମୋର ଅଭିନୟ ଦକ୍ଷତା ଦେଖି ସେ ଈର୍ଷାପରାୟଣ ହୋଇ ଏଭଳି ଏକ ପଦକ୍ଷେପ ନେଲେ ଆଉ ଚରିତ୍ରକୁ ବିକଳାଙ୍ଗ କରିଦେଲେ ।

ତେବେ ବେତାର ନାଟ୍ୟଶିଳ୍ପୀ ଭାବେ ଦକ୍ଷତା ପ୍ରତିପାଦନ କରିବାର ସୁଯୋଗ ମୋତେ ବେଶୀ ମିଳିଲା ନାହିଁ । କିନ୍ତୁ ବେତାର ନାଟ୍ୟକାରଭାବେ ମୋର କିଛିଟା ଆତ୍ମସନ୍ତୋଷ ମିଳିଛି । ୧୭.୬.୬୨ ରୁ ପ୍ରଚାରିତ ଉଲୁପିଠାରୁ ଆରମ୍ଭ କରି ୧୯.୯.୨୦୦୮ "ପୁନଶ୍ଚ ପ୍ରିୟବାବୁ" ଯାଏ ପ୍ରାୟ ୩୦ରୁ ଊର୍ଦ୍ଧ୍ୱ ନାଟିକା ଆକାଶବାଣୀରୁ ପ୍ରଚାରିତ ହୋଇସାରିଛି । ଏଗୁଡ଼ିକ ମଧ୍ୟରେ ଅଷ୍ଟବକ୍ର ଅମୃତ ପିପାସା (ପୌରାଣିକ) ମାନସୀ ଗବେଷଣାର (ବିଜ୍ଞାନତଥ୍ୟ ସମ୍ବନ୍ଧିତ) ପ୍ରିୟବାବୁ ଓ ଷଡ଼ବିକାର (ହାସ୍ୟ ରସାତ୍ମକ) ସେ ଆସୁଛନ୍ତି (ରାଜନୈତିକ ବ୍ୟଙ୍ଗ) ଅଦେଖା ନିଆଁର ଦାହ (ମନସ୍ତାତ୍ତ୍ୱିକ) ଆଦି ନାଟକଗୁଡ଼ିକ ପ୍ରଚାରିତ ହୋଇ ମୋତେ ବେଶ୍ ଆତ୍ମସନ୍ତୋଷ ଦେଇଛି । ବିଶେଷତଃ ସଙ୍ଗୀତ ରୂପକ "ଜେବୁନ୍ନିସା ନାରୀ ବନ୍ଦନୀୟା" ଏବଂ ଅପେରା "ଅଥନାରଦଉବାଚ" ବେଶ୍ ଆଦୃତ ହୋଇଛି ଶ୍ରୋତା ମହଲରେ ।

ମୋର ପ୍ରଚାରିତ ନାଟିକା, ସଙ୍ଗୀତ ରୂପକ ଆଦିର ବିଶଦ ତାଲିକା "ନନ୍ଦିକିଶୋର ପରିକ୍ରମା" ପୁସ୍ତକରେ ସ୍ଥାନିତ କରାଇବାର ଲୋଭ ମୁଁ ସମ୍ବରଣ କରିପାରି ନାହିଁ । ତାର କାରଣ ହେଲା ବେତାର ନାଟକ ରଚନାକୁ ନେଇ ମୋର ଜୀବନଶୈଳୀ ଏକ ସ୍ୱତନ୍ତ୍ର ଧାରାରେ ପରିଚାଳିତ । ବେତାର ନାଟକ ରଚନା ମୋ ପଛରେ ଏକ ବଳିଷ୍ଠ ପ୍ରେରଣାଦାୟକ ଭୂମିକା ନିଭାଇ ଆସିଛି ।

ହଁ, ମୁଁ ପୁଣି ଫେରିଆସେ ପୂର୍ବ ପ୍ରସଙ୍ଗକୁ । ରୁଦ୍ରଚରଣ ହାଇସ୍କୁଲରେ ଶିକ୍ଷକତା କରୁଥିବାବେଳେ ମୁଁ ୧୯୬୫ ମସିହାରେ ରାଧାନାଥ ଟ୍ରେନିଂ କଲେଜକୁ ବି.ଇଡ଼ି ପଢ଼ିବାକୁ ଗଲି । ଏଠାରେ ତାଲିମ ନେବା ସମୟରେ ମଧ୍ୟ ମୁଁ ବେତାର ନାଟକରେ ଅଭିନୟ ସାଙ୍ଗକୁ ବେତାର ରୂପକଗୁଡ଼ିକୁ ଅନୁବାଦ କାମରେ ବ୍ୟସ୍ତ ରହିଲି । ମୋର ଶୁଭେଚ୍ଛୁଗୋପାଳ ଛୋଟରାୟ ଓ ନାଟ୍ୟ ପ୍ରଯୋଜକ ମନୋରଞ୍ଜନ ଦାସ ମୋତେ ଏଇ ସୁଯୋଗ ଦେଇଥିଲେ । ତେବେ ରୂପକଗୁଡ଼ିକ ଅନୁବାଦ କରିବା ପରିବର୍ତ୍ତେ ମୁଁ ନାଟ୍ୟଶିଳ୍ପୀ ଭାବେ ଅଭିନୟ କରିଥିଲେ ଅଧିକ ସନ୍ତୋଷ ଲାଭ କରିଥାନ୍ତି ।

ଏଥର ମଞ୍ଚ ନାଟକ କ୍ଷେତ୍ରକୁ ପୁଣି ଆସିବା । ମୁଁ ମଧ୍ୟ ଜଣେ ସୌଖିନ ନାଟ୍ୟ ଶିଳ୍ପୀଭାବେ ଅଭିନୟ କରିବା ବେଳେ କେତୋଟି ଘଟଣାର ସ୍ମୃତି ଉଲ୍ଲେଖ ନକରି ରହିପାରୁନି । ରାଜକନିକା ରାଜେନ୍ଦ୍ର ନାରାୟଣ ହାଇସ୍କୁଲରେ ଶିକ୍ଷକତା କରୁଥିବାବେଳେ ମୁଁ ସୈତାନ କହୁଚି ନାଟକଟି ମଞ୍ଚସ୍ଥ ହେଉଥିବାବେଳେ ମୁଁ ଥିଲି ସ୍ମାରକ ଓ ଘୋଷକ । ତେବେ ନାଟକଟି ଅଭିନୟର ପରଦିନ ମୋର ଘୋଷଣା ସବୁଠୁ ଆକର୍ଷଣୀୟ ଥିଲାବୋଲି ସମସ୍ତଙ୍କ ମୁଖରୁ ଶୁଣିଥିଲି । ସେହିପରି ବାଳିକା ହାଇସ୍କୁଲରେ ମୁଁ ମଧ୍ୟ ନାଟ୍ୟ ନିର୍ଦ୍ଦେଶନା ଦେଇ ସୁଖ ଅନୁଭବ କରିଥିଲି ।

ମୋ ରଚିତ ନାଟକ ଲହୁ-ଲୁହ ଓ ଚାଣକ୍ୟ କୋରେଇ ବ୍ଲକ୍ ପଡ଼ିଆ ପାଖରେ ତିନିଦିନ ଧରି ଅଭିନୀତ ହୋଇଥିଲା । ଏହାର ନିର୍ଦ୍ଦେଶନା ଦେଇଥିଲେ ତତ୍‌କାଳୀନ ପୋଲିସ୍ ସବ୍‌ଇନ୍‌ସପେକ୍ଟର ବଙ୍କିମ ଚନ୍ଦ୍ର ମହାନ୍ତି । ଏହି ନାଟକରେ ଅଭିନୟ କରିଥିବା ମୋର ବନ୍ଧୁ ମହେଶ୍ୱର ବାବୁ, ଅସଦୁର ଭାଇ, ବିଜୟ ଦାସଙ୍କ ବଳିଷ୍ଠ ଅଭିନୟ ସାଙ୍ଗକୁ ପେଷାଦାର ଅଭିନେତ୍ରୀ ତୃପ୍ତିରାଣୀ ସ୍ନିହାଙ୍କ ଅଭିନୟ ଏବେ ବି ମୋ ଆଖିଆଗରେ ନାଚି ଉଠୁଛି ।

ଏଇଠି ଗୋଟିଏ ମଜା କଥା କହୁଚି । ନାଟକ ସମାଧି ମଞ୍ଚସ୍ଥ କୋରେଇରେ ହୋଇଥାଏ । ମୁଁ ରଜତ ଭୂମିକାରେ ଅଭିନୟ କରୁଥାଏ । ଗୋଟିଏ ଦୃଶ୍ୟରେ ପାଗଳ ରଜତ ଭାଉଜଙ୍କ କୋଳରେ ମୁଣ୍ଡ ରଖି ଶୋଇବାର କଥା । ମୁଁ କୋଳରେ ଶୋଇଥିବାଯାଏ ପେଷାଦାର ଅଭିନେତ୍ରୀ ସଂଭ୍ରମରେ କହିଦେଲେ ଆସ ରଜତ ମୋ ମୁଣ୍ଡରେ ତୁମ କୋଳ ରଖି ଶୁଅ । ଏପରି ଭୁଲକୁ ମୁଁ ଅବଶ୍ୟ ପାଗଳ ଭାବେ ବେଶ୍ ସହଜରେ ଚଳେଇଥିଲି । କିନ୍ତୁ ଅଭିନେତ୍ରୀ ଜଣକ ଦୃଶ୍ୟ ଶେଷ ପରେ ଆସି କାନ୍ଦି କାନ୍ଦି କହିଲେ "ସାର୍, ମୋତେ କ୍ଷମା କରନ୍ତୁ । ଆପଣ ଆଗରୁ ରିହରସାଲ୍ ବେଳେ ମୋ କୋଳରେ ମୁଣ୍ଡ ରଖି ଶୋଇ ନଥିବାରୁ ଭୟରେ ମୋର ଏ ଭୂଲ ହୋଇଗଲା ।" ତେବେ ସବୁଠୁ ଦୁର୍ଭାଗ୍ୟର କଥା ହେଲା ଏ ଦୃଶ୍ୟ ଦେଖି ଦର୍ଶକ ମଣ୍ଡଳୀରେ ବସିଥିବା

ମୋର ସ୍ତ୍ରୀ ତାର ମସ୍ତିଷ୍କର ଭାରସାମ୍ୟ ହରାଇ ଦେଲା । ବୋଧହୁଏ ସେଇଦିନରୁ ମୁଁ ମଞ୍ଚ ଅଭିନୟଠୁ ପ୍ରାୟ ବିଦାୟ ନେଇଛି । ସେ ୧୯୮୨ ମସିହା କଥା ।

ଅବଶ୍ୟ ଜଣେ ସୌଖିନ୍ ନାଟ୍ୟକାର ନାଟ୍ୟ ଶିଳ୍ପୀ ଭାବେ ମୋ କୋରେଇର ନାରାୟଣ ଚନ୍ଦ୍ର ମହାନ୍ତିଙ୍କ ପ୍ରତିଷ୍ଠିତ ଯୁଗଜ୍ୟୋତି କ୍ଲବ୍ ମାଧ୍ୟମରେ ମୋର ରଚିତ ନାଟିକା ଶବ୍‌ଦର ହତ୍ୟା ଅନ୍ନପୂର୍ଣ୍ଣା 'ବି'ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଏ ନାଟିକାର ବିଜୟ କୁମାର ଦାସଙ୍କ ସମ୍ବିତ୍ ଭୂମିକାରେ ବଳିଷ୍ଠ ଅଭିନୟ ସାଙ୍ଗକୁ ମୁଁ ନିଜେ ଜେଲର ଭାବେ ସାବଲୀଳ ଅଭିନୟ କରି ବେଶ୍ ପ୍ରଶଂସିତ ହୋଇଥିଲୁ । ଏହା ବୋଧେ ୧୯୮୩ ମସିହାର କଥା ।

ସେହିପରି ମୋ ରଚିତ ଶିଶୁ ଉପଯୋଗୀ ନାଟିକା ଉକ୍ତ କବୀର ହଳଦିଗଡ଼ିଆ ମଦନମୋହନ ବିଦ୍ୟାପୀଠ ଛାତ୍ରଛାତ୍ରୀଙ୍କ ଦ୍ୱାରା ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ମଞ୍ଚରେ ପ୍ରତିଯୋଗିତାରେ ଭାଗନେଇ ପୁରସ୍କୃତ ହୋଇଥିଲା । ଏ ନାଟିକାର ନିର୍ଦ୍ଦେଶନା ଦେଇଥିଲେ ଧନେଶ୍ୱରର ଶ୍ରୀ ବିଜୟ କୁମାର ଦାସ (ବିଜୁ ସାର୍)

ସେହିପରି କଳାବିକାଶ କେନ୍ଦ୍ର କଟକରେ ମୋ ଗାଆଁରେ ପ୍ରତିଷ୍ଠିତ କୁମାରେଶ୍ୱର କିଶୋର ଶ୍ରୋତା ଚକ୍ର ତରଫରୁ ମୋ ଶିକ୍ଷକ ନୀଳମଣି ସାହୁଙ୍କ ରଚିତ ନୀଳକଣ୍ଠ ଦାସଙ୍କ ଉପରେ ଦାସକାଠିଆ ପରିବେଷଣବେଳେ ମୋର ସକ୍ରିୟ ଭୂମିକା କଥାଟି ଏବେ ବି ମନେପଡ଼ି ଶିହରଣ ଜାଗୁଛି ହୃଦୟରେ ।

ରାଧାନାଥ ଟ୍ରେନିଂ କଲେଜରେ ବି.ଇଡ଼ି ପଢୁଥିବାବେଳେ ମୋର ରଚିତ ଏକାଙ୍କିକା ଅଭିନୀତ ହୋଇ ପ୍ରଶଂସିତ ହୋଇଥିଲା । ଏ ନାଟକର ମୁଁ ନାଟ୍ୟକାର ହୋଇଥିବାରୁ ଅଭିନୟ କରିବାର ସୁଯୋଗ ପାଇ ନଥିଲି । କିନ୍ତୁ ପରବର୍ତ୍ତୀ ସମୟରେ ମୋର ସହପାଠୀ ମଧୁସୂଦନ ଦାସଙ୍କ ରଚିତ ଏକାଙ୍କିକାରେ ମୁଁ ଜଣେ ଆଡ଼ଭୋକେଟ ଭାବେ ଏତେ ଜୀବନ୍ତ ଅଭିନୟ କରିଥିଲି ଯେ ମୋର ବାକ୍‌ଦତ୍ତା ଭୂମିକାରେ ଅଭିନୟ କରୁଥିବା ଯୁବତୀ ଜଣକ ମୋ ସହ ବିବାହ ପ୍ରସ୍ତାବ ତାଙ୍କ ଘରେ ଦେଇଥିଲେ । ମୋତେ ମଧ୍ୟ ତାଙ୍କ ଘରକୁ ଯିବାପାଇଁ ନିମନ୍ତ୍ରଣ ବାରମ୍ବାର ଆସୁଥିଲା କିନ୍ତୁ ବି.ଇଡ଼ି ଯିବାବେଳେକୁ ମୁଁ ଯେ ବହୁ ଆଗରୁ ସଂସାରୀ ପାଲଟି ଯାଇଥିଲି ଏ କଥା ସେ ଯୁବତୀ ଜାଣି ମନେ ମନେ ହତାଶାରେ ନୀରବରେ ଅଶ୍ରୁବର୍ଷଣ କରିଥିଲେ ।

ଏଥର ଆସିବା ଯାତ୍ରା ଜଗତକୁ । ଆମ ଅଞ୍ଚଳର ଏକ ଯାତ୍ରା (ନାଟ୍ୟସଂସ୍ଥା) ମୋତେ ତାଙ୍କର ନାଟକ ମଞ୍ଚସ୍ଥ ହେବାକୁ ଥିବା 'ଜଅନ୍ତା ଶବ' ପାଇଁ ଗୀତ ଲେଖିବାକୁ ନିମନ୍ତ୍ରଣ କରିଥିଲେ । ମୁଁ ଗଲି ଗୀତ ଲେଖିବାକୁ । ମାତ୍ର ସେଠାକାର ପରିବେଶ ମୋତେ ଭଲ ଲାଗିଲାନାହିଁ । ଏଣୁ ଗୀତ ନ ଲେଖି ଚାଲିଆସିଲି ଶିଶୁପାଳ

ପରି । ତେବେ ଯାତ୍ରାଦେଖିବାରେ ମୋର ପ୍ରଚୁର ସଉକ । ବିଶେଷତଃ ରଣପୁର ଯାତ୍ରାପାଟିର ଦାନବୀର ହରିଶ୍ଚନ୍ଦ୍ର କଥା ଏବେବି ମନେପଡ଼େ । ରାଢ଼ଙ୍କ ପାଟିର ପାହାଡ଼ୀ ଝିଅ କଥା ଭୁଲିହୁଏନା, ସୁପ୍ରତିଷ୍ଠିତ ଚଳଚ୍ଚିତ୍ର ପ୍ରଯୋଜକ ପ୍ରଶାନ୍ତ ନନ୍ଦ ଯାଜପୁର ରୋଡ଼ ମାଇନିଂ ଗେଷ୍ଟ ହାଇସ୍‌ରେ ଗୋଟେ ଫିଲ୍ମ ପାଇଁ ସ୍କ୍ରିପ୍ଟ ଲେଖୁଥାନ୍ତି । ମୁଁ ଡକରା ପାଇ ସେଠାକୁ ଯାଇଥାଏ । ଗୀତ ଲେଖିବାର ସିକ୍ୟୁଏନ୍‌ସ ବୁଝିଲି । ଗୀତ ବି ଲେଖିଲି ତେବେ ଅଧିକ ଲୋଭ କରି ସେ ଫିଲ୍ମରେ ଅଭିନୟ କରିବାର ପ୍ରତିଶ୍ରୁତି ପାଇଥିଲି । ହେଲେ ସେ ଯୋଜନାଟି ସଫଳ ହେଲାନାହିଁ । ଏଣୁ ଫିଲ୍ମରେ ଅଭିନୟ କରିବା ଆଶ ଆଶାରେ ରହିଗଲା । ସେହିପରି ଦୂରଦର୍ଶନରେ ସୌଖୀନ ନାଟ୍ୟଶିଳ୍ପୀଭାବେ ଅଡ଼ିସନ୍ ଦେଲି । ମାତ୍ର ଡାଇଲଗ୍ ଗୁଡ଼ିକ ଭଲଭାବେ ମନେରଖିବା ମୋ ଦ୍ୱାରା ସମ୍ଭବ ହେଲାନାହିଁ । ତେବେ ଅଫ୍ ସ୍କ୍ରିନ୍ ଭଏସ୍ ଭାବେ ଅନେକଗୁଡ଼ିଏ ଏପିସୋଡ଼ରେ ମୁଁ ଅଭିନୟ କରି ଆତ୍ମସନ୍ତୋଷ ଲାଭ କରିଛି ।

ଆଜି ପରିଣତ ବୟସ ମୋର । ଜନ୍ମରୁ ଏ ଯାଏଁ ଇତିମଧ୍ୟରେ ସତୁରୀ ବିତିଗଲାଣି । ତଥାପି ନାଟକ ପ୍ରତି ମୋର ମୋହ ପ୍ରବଳ ରହିଛି । ଏହି କାରଣରୁ ପତ୍ରପତ୍ରିକାରେ ମୁଁ ନାଟକ ପଢ଼ିବାକୁ ଭଲପାଏ । ପତ୍ରପତ୍ରିକା ଯଥା - ଝଙ୍କାର, ଜୀବନରଙ୍ଗ, ଚିରସମର୍ଥା, ବର୍ତ୍ତିକା ଆଦିରେ ମୋର ପ୍ରାୟତଃ ଏକାଙ୍କିକା ପ୍ରକାଶ ପାଇ ଆସୁଛି ।

ଛୋଟ ଛୋଟପିଲାଙ୍କୁ ନେଇ ବେତାରରେ ଆକାଶବାଣୀ କଟକରେ, ଛୋଟ ଛୋଟ ନାଟିକା ଓ ରୂପକ କରେଇବାରେ ମୋର ଯଥେଷ୍ଟ ରୁଚି ଥିଲା । ଏଇ ଛୋଟ ଛୋଟ ପିଲାଙ୍କ ଭିତରୁ ମୋ ପୁଅ ଅଶୋକ, ଝିଅ ସୁଜାତା, ସୂର୍ଯ୍ୟମଣି ଖୁଣ୍ଟିଆଙ୍କ ପୁଅ ଅମିତାଭ, ଅଶୋକ ନନ୍ଦାଙ୍କ ଭଉଣୀ ଶିଲା, ବିଡ଼ିଓ ବିରେନ୍ଦ୍ର ଭୂୟାଁଙ୍କ ଝିଅ ପଦ୍ମଜା, ବଙ୍କିମବାବୁଙ୍କ ପୁଅ ବାବୁ ଏବଂ ଝିଅ ମାମା ତଥା ଧନେଶ୍ୱରର ନମିତା କଥା ଏବେମନେ ପଡୁଛି । ଏପରିକି ମୋର ରଚିତ ନାଟକ ରୂପକରେ ବେତାର ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମରେ ମୋ ସହ ବିଜୟ କୁମାର ଦାସ, ସୂର୍ଯ୍ୟମଣି ଖୁଣ୍ଟିଆ, ବିରଞ୍ଚି ମହାନ୍ତି ଆଦି ଅଭିନୟ କରି ମୋତେ ଅନୁଗୃହୀତ କରିଛନ୍ତି ।

କାରଣ ଏହି ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମରେ ମୋ ରଚିତ ଆଉ ଅଭିନୀତ ନାଟକ ମଧ୍ୟରୁ ପ୍ରକୃତ ବନ୍ଧୁ, ଛ' ବୋକା, ମୋଗଲାଇ ମହାଭାରତ, ଶୀତମାଉସୀ, ସୁନାଚକ୍ଷମା ଆଦି ବେଶ ପ୍ରଶଂସିତ ହୋଇଛି । ସେହିପରି ଆକାଶବାଣୀ କାର୍ଯ୍ୟକ୍ରମରେ ପ୍ରଶଂସିତ ରୂପକ ଅଜାଙ୍କ ବୈଠକଖାନା, କଥାରେ ପେଞ୍ଚ ଅଛି, ଚାରିସଙ୍ଗାତ କଥା ମୋତେ ବେଶ୍ ପ୍ରଶଂସା ଆଣି ଦେଇଛି । ବିଜ୍ଞାନ ତଥ୍ୟ ଭିତ୍ତିକ ରୂପକ ଶୁଷ୍କ ଫସିଲ

ଜାତୀୟ ସ୍ତର ବେତାର ପ୍ରତିଯୋଗିତାରେ ସାମିଲ ହେବା ମୋ ପାଇଁ ଗର୍ବ ଓ ଗୌରବର କଥା ।

ଦୂରଦର୍ଶନ ମଧ୍ୟ ମୋତେ ଏ ଦିଗରୁ ନିରାଶ କରିନାହିଁ । ମୋ ରଚିତ ଧାରାବାହିକ ବେଙ୍ଗ କହେ ବେଙ୍ଗୁଲି ଲୋ ରୂପକଟି ସଂପ୍ରସାରିତ ହୋଇ ମୋତେ ଜଣେ ଦୂରଦର୍ଶନ ନାଟ୍ୟକାର ଭାବେ ସ୍ୱୀକୃତି ଦେଇଛି । ପ୍ରଯୋଜକ ପ୍ରଫୁଲ୍ଲ ମହାନ୍ତିଙ୍କ ସହଯୋଗ ଏ କ୍ଷେତ୍ରରେ ମୋର ସ୍ମରଣକୁ ଆସୁଛି ।

ମୋଟ ଉପରେ ବେତାର, ଦୂରଦର୍ଶନ ଓ ମଞ୍ଚରେ ଜଣେ ନାଟ୍ୟକାର, ନାଟ୍ୟଶିଳ୍ପୀ ଭାବେ ସୁଯୋଗ ପାଇଥିଲେ ହେଁ ଚଳଚ୍ଚିତ୍ରରେ ଜଣେ ଶିଳ୍ପୀଭାବେ ଅଭିନୟ କରିବାର ଆଶା ଆଶାରେ ବୋଧେ ରହିଗଲା ।

ଚାକିରିରେ ହିଙ୍ଗୁଳା ହାଇସ୍କୁଲ ଶଙ୍ଖଚିଲାରେ ମୋର ମାତ୍ର ୨୦/୨୧ ମାସ ଅବସ୍ଥାନ । ଏହି ସମୟରେ ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ହୋଇଥିଲା ସେଥିରେ ଶିକ୍ଷକ ଭରତଚନ୍ଦ୍ର ମଲ୍ଲିକ ଓ ମୁଁ ମିଶି କାର୍ଯ୍ୟକ୍ରମକୁ ସଫଳ କରିଥିଲୁ । ଏଠାରେ ମୋ ରଚିତ "ବସନ୍ତ'' ନୃତ୍ୟ ନାଟିକାଟି ମଞ୍ଚସ୍ଥ ହୋଇ ବେଶ୍ ଜନାଦୃତ ହୋଇଥିଲା । ପ୍ରଧାନ ଶିକ୍ଷକ ନିମାଇଁ ବଲ୍ଲଭ ରାୟଙ୍କ ମୋ ପ୍ରତି ଶ୍ରଦ୍ଧା ଓ ବିଶ୍ୱସନୀୟତା ହିଁ ମୋତେ ଏ ଦିଗରେ ପ୍ରେରଣା ଯୋଗାଇଥିଲା ।

ସେହିପରି ଡୋଲିପୁର ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ଅବସ୍ଥାନ କାଳରେ ମୁଁ ମଧ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିଥିଲି । ଏଠାରେ ମୋ ରଚିତ ନାଟକ ଲହୁ-ଲୁହ ଅଭିନୀତ ହୋଇଥିଲା । ଏଥିରେ ମୋର ଗୁରୁ-ଛାତ୍ର ସୁରେନ୍ଦ୍ର ନାଥ ଚାନ୍ଦର ସହଯୋଗ ଆଉ ଗୁରୁ ଛାତ୍ରଛାତ୍ରୀଙ୍କ ଅକ୍ଳାନ୍ତ ପରିଶ୍ରମ ମୋତେ ଯଶ ଆଉ ଖ୍ୟାତି ଆଣି ଦେଇଥିଲା । ଏଠାରେ ମଧ୍ୟ କେତୋଟି ଏକାଙ୍କିକା ମଞ୍ଚସ୍ଥ ହେବାରେ ମୁଁ ଦିଗ୍‌ଦର୍ଶନ ଦେଇଥିଲି ।

ଏହିଠାରେ ଚାକିରି କାଳ ଭିତରେ ମୁଁ ସ୍ଥାନୀୟ ଯୁବଗୋଷ୍ଠୀଙ୍କ ସହଯୋଗରେ ବ୍ରାହ୍ମଣଦେବୀ ପୀଠରେ କେତୋଟି ମଞ୍ଚ ନାଟକ ମଞ୍ଚସ୍ଥରେ ସହଯୋଗୀ ଥିଲି । ସେଥିମଧ୍ୟରୁ ଗୋଟିଏ ନାଟକ ସାମାଜିକ ଓ ଅନ୍ୟଟି କୁରୁକ୍ଷେତ୍ର । ବୋଧହୁଏ ବୈଷ୍ଣବ ମହାନ୍ତିଙ୍କ ରଚିତ କୁରୁକ୍ଷେତ୍ର ନାଟକର ମୁଁ ନିର୍ଦ୍ଦେଶନା ଦାୟିତ୍ୱ ନେଇଥିଲି । ଏଥିରେ ଏ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତି ନାଟ୍ୟପ୍ରେମୀ ହୃଷିକେଶ ପାତ୍ର ଏବଂ ପାଣ୍ଡବ ରାଉତ ସମେତ ବର୍ତ୍ତମାନର ସାଂସଦ ରାମଚନ୍ଦ୍ର ଖୁଣ୍ଟିଆଙ୍କ ଅବଦାନ ଯଥେଷ୍ଟ । ଏହି ନାଟକରେ ମୋର ସହକର୍ମୀ କାର୍ତ୍ତିକ ଚନ୍ଦ୍ର ଓଝା ଏବଂ ଦ୍ରୌପଦୀ ଭୂମିକାରେ ନିରୁପମା ମହାରଣାଙ୍କ କଥା ମନେପଡ଼େ । ନିରୁପମା ପରେ କାର୍ତ୍ତିକ ଓଝାଙ୍କ ସହଧର୍ମିଣୀ ହୋଇଥିଲେ । ପ୍ରଫୁଲ୍ଲ ପାତ୍ରଙ୍କ ଦୁଃଶାସନ

ଭୂମିକାରେ ଦ୍ରୌପଦୀଙ୍କ ବସ୍ତ୍ରହରଣ କଥା ଏବେ ବି ଟି.ଭି.ରେ ବସ୍ତ୍ରହରଣ ଦୃଶ୍ୟବେଳେ ବେଶ୍ ମନେ ପଡ଼ିଯାଏ ।

୧୯୭୨-୭୩ରେ ଆଞ୍ଚଳିକ କେନ୍ଦ୍ର ଭୁବନେଶ୍ୱରରେ ଅସମୀୟା ଭାଷାର ଶିକ୍ଷାର୍ଥୀ ଭାବେ ଶିକ୍ଷାମୂଳକ ଭ୍ରମଣରେ ସୁଦୂର ଗୌହାଟୀ ଶିବସାଗର ଯାଇଥିଲୁ । ସାଙ୍ଗ ସାଥିରେ ସେଇ ପ୍ରିୟ ବନ୍ଧୁ କାଳୀପ୍ରସନ୍ନ, ଅଶୋକ ଶାନ୍ତିପ୍ରଭା, ସୁଭାଷିନୀ ଇତ୍ୟାଦି ଶିବସାଗରଗଲୁ । କଲେଜର ଅଧ୍ୟକ୍ଷ ଥାଆନ୍ତି ପରାଗ ଚାଲିହା । ଅଧ୍ୟକ୍ଷଙ୍କ ପରାମର୍ଶ କ୍ରମେ ଉଭୟ ଓଡ଼ିଆ ଅସମୀୟାଭାଷାର ଏକ ସାଂସ୍କୃତିକ ବିଚିତ୍ରା-କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ସେହି ଶିବସାଗର କଲେଜ ରଙ୍ଗମଞ୍ଚରେ ମୋର ଏକ ଅସମୀୟାଭାଷାର ରଚିତ ଏକାଙ୍କିକା ଅଭିନୀତ ହୋଇଥିଲା । ନିଜେ ବାଣ ହରଣର ଶକୁନିର ସଂଳାପକୁ ଅସମୀୟା ଭାଷାରେ ରୂପାନ୍ତରିତ କରି ଅଭିନୟ କରିଥିଲି । ମୋର ଅଟ୍ଟହାସ୍ୟକୁ ଶିବସାଗର ବାସୀ ଘନ ଘନ କରତାଳି ଦେଇ ସ୍ୱାଗତ କରିଥିଲେ । ଅନୁରୂପ ଭାବେ ଗୌହାଟୀର କଟନ ହାଇସ୍କୁଲ ରଙ୍ଗମଞ୍ଚରେ ମଧ ସେଦିନର ସେଇ ସାଂସ୍କୃତିକ ବାତାବରଣ ଭିତରେ ମୁଁ ଉମେଶ ମହାପାତ୍ର, ଲକ୍ଷ୍ମୀଧର ମିଶ୍ର ଆଦି ଏକତ୍ର ହାସ୍ୟରସର ବେଶ୍ ଖୋରାକ୍ ଯୋଗାଇଥିଲୁ ଅଭିନୟ ମାଧ୍ୟମରେ । ସବୁଠୁ ଉତ୍ତମ ହାସ୍ୟରସ ପରିବେଷଣ କରିପାରିଥିଲି ରୁଦ୍ରଚରଣ ହାଇସ୍କୁଲ ସୁଜନପୁରରେ ଇଂରେଜୀ ନାଟିକା Uncle Tom ଭୂମିକାରେ ।

ଏ ସମସ୍ତ ଅଭିନୟ ଜନିତ ଘଟଣା ସାଙ୍ଗକୁ ସବୁଠୁ ଅଧିକସୁଖଦ ମୁହୂର୍ତ୍ତ ଗୁଡ଼ିକୁ ସ୍ମରଣ କରିବାକୁ ପଡୁଛି । ବାଲ୍ୟକାଳର ଆଉ କୈଶୋର ଜୀବନରେ ବୈଶାଖ ମାସର ଉଦଉଦିଆ ଖରାବେଳେ ମିଛିମିଛିକା ଶୋଇବାର ଅଭିନୟ ଆଉ ଗାଆଁଦାଣ୍ଡରେ ଧୂଳି ବରକୋଳି, ତେନ୍ତୁଳି ଛେଲି ନେଇ ମିଛି ମିଛିକା ଦୋକାନ କରିବାର ଅଭିନୟ କଥା ଆଜି ବି ମନେପଡ଼ି ବେଶ୍ ଆନନ୍ଦ ଦେଉଛି । ଏଇସବୁ ଘଟଣାକୁ ନେଇ ମୀନା ବଜାରରେ ମୋହନୀ ଦୋକାନୀ ଟିକି କବିତା ପ୍ରକାଶିତ ହେବାର ନିର୍ମଳ ଆନନ୍ଦ ଆଜି ଏଇ ପରିଣତ ବୟସରେ ସତରେ ଆଉ ମିଳିବନି ।

ଆଜି ତ ମଣିଷ ଈର୍ଷା ଦ୍ୱେଷ ପରଶ୍ରୀକାତରତା ଭିତରେ ରୁନ୍ଧି ହୋଇଯାଇଛି । ସଙ୍ଗୀତ ନାଟକ ଏକାଡ଼େମୀ କୁହ କି ସାହିତ୍ୟ ଏକାଡ଼େମୀ କୁହ ଏ ସଂସ୍ଥାରୁ ସମ୍ମାନିତ ହେବାରୁ ବନ୍ଧୁ ମହଲ ଭିତରୁ ଅନେକ ଲୋକ ଦେଖାଣିଆ ଶୁଭେଚ୍ଛା ବାର୍ତ୍ତା କିମ୍ବା ଅଭିନନ୍ଦନ ସିନା ପଠାଇଛନ୍ତି । ହେଲେ ଅନେକ ହୋଇ ଉଠିଛନ୍ତି ଈର୍ଷାପରାୟଣ । ସତେଯେପରି ସେମାନଙ୍କ ପ୍ରାପ୍ୟକୁ ମୁଁ ଛଡ଼ାଇ ଆଣିଛି ।

ଏ ଦୁନିଆ ତ ଏକ ରଙ୍ଗମଞ୍ଚ । ଆମର ପ୍ରତ୍ୟେକ କ୍ରିୟାକଳାପ ଆମ ଜୀବନର ଅଭିନୟ ପରି । ଜନ୍ମଠାରୁ ମୃତ୍ୟୁ ଏନ୍ତୁଡ଼ିଶାଳାରୁ ଶ୍ମଶାନର ଚିତା ନଳଯାଏ ଜୀବନ ନାଟକର ଗୋଟିଏ ଗୋଟିଏ ଦୃଶ୍ୟ ଆମେ ପରିବେଷଣ କରି ଚାଲିଛେ । ସେଥିରେ ସହଯୋଗୀ ଭାବେ ପାତ୍ରପାତ୍ରୀ ଭୂମିକା ନିଭାଇ ଚାଲିଛନ୍ତି ସ୍ତ୍ରୀ, ପୁତ୍ର, କନ୍ୟା, ପୁତ୍ରବଧୂ, ଭଣଜା, ଭଣଜାବୋହୂ, ନାତିନାତୁଣୀ ଇତ୍ୟାଦି ।

ଏ ଅଭିନୟର ଶେଷ ଦୃଶ୍ୟ ମୋର ଆଗତପ୍ରାୟ । ତେବେ ଶରଶଯ୍ୟାରେ ଭୀଷ୍ମ ଥାଇ ମାତା ଗଙ୍ଗା ଆଉ ଭଗବାନ କୃଷ୍ଣଙ୍କୁ ଦର୍ଶନ କଲାଭଳି ମୋର କ'ଣ ଭାଗ୍ୟ ହେବ ଭଗବତ୍ ଦର୍ଶନ । ମୋ ଜନନୀ କୋଳକୁ ମୁଁ ସତରେ ହସିହସି ଫେରିଯିବି ।



ସ୍ମୃତିଚାରଣ

# ମୁଁ ଓ ମୋ ଗୀତି କବିତା

(ସୂଚନା ଗତ ଥର "ମୁଁ ଓ ମୋ ନାଟ୍ୟ ଜୀବନ'' ବୋଲେ ହୁଁଟିରେ ପଢ଼ି ସାରିବା ପରେ କେତେକ ବନ୍ଧୁ ମୋର ଗୀତି କବିତା ଓ ଶିଶୁ ସାହିତ୍ୟ ଉପରେ ସ୍ମୃତିଚାରଣ କରିବାକୁ ପରାମର୍ଶ ଦେଇଛନ୍ତି । କେତେକ ଫୋନ୍‌ରେ ଅନୁରୋଧ ମଧ୍ୟ କରିଛନ୍ତି । ଆଜି ସେମାନଙ୍କ ଅନୁରୋଧକୁ ଏଡ଼େଇ ନ ଦେଇ ଗୀତିକବିତା ସମ୍ବନ୍ଧରେ କିଛିଟା ଝଲକ ଝଲସେଇବାର ପ୍ରୟାସ କରିଛି ମାତ୍ର ।)

ଷଷ୍ଠ ଶ୍ରେଣୀ ପଢ଼ିବା ବେଳର କଥା । ବୋଧେ ୧୯୫୦-୫୧ ମସିହା । ସକାଳ, ସଂଜ, ବଗିଚା, ମୋ ଗାଆଁ ଏଇ ଶୀର୍ଷକରେ କେତୋଟି ଛନ୍ଦ କବିତା ଲେଖୁଥିଲି । ଏଥିପାଇଁ ପ୍ରେରଣା ଯୋଗାଉଥିଲେ ମୋର ଶିକ୍ଷକ ଶ୍ୟାମସୁନ୍ଦର ପାତ୍ର ।

ପରେ ପରେ ହାଇସ୍କୁଲ୍‌ରେ ପଢୁଥିବା ବେଳେ କବିତା, ଗଳ୍ପ ଲେଖାର ପ୍ରେରଣାଦାତା ଥିଲେ (ଏବେବି ଅଛନ୍ତି) ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ ଗାଳ୍ପିକ ଅଚ୍ୟୁତାନନ୍ଦ ପତି ।

ସୁଜନପୁର ରୁଦ୍ରଚରଣ ହାଇସ୍କୁଲ୍‌ରେ ଚାକିରୀ କଲାବେଳେ ବେତାରରେ ଗୀତ ଲେଖା ପାଇଁ ମନ ବଳାଇଲି । ପ୍ରେରଣା ଯୋଗାଉଥିଲେ ପ୍ରଧାନଶିକ୍ଷକ ସୁରେନ୍ଦ୍ର ନାଥ ରାଉତ । ଗୀତ ଲେଖିଲି । ବେତାରକେନ୍ଦ୍ର କଟକକୁ ପଠାଇଲି । ଏମିତି ପଠାଏ ଆଉ ଅମନୋନୀତ ହୋଇ ଫେରି ପାଏ । ବାର ବାର ଅମନୋନୀତ ହେଲେବି ଶେଷ ପ୍ରଚେଷ୍ଟାର ଶେଷ ହୁଏନା । ଲେଖିଚାଲେ । ଶେଷରେ ସଫଳ ହୁଏ ୧୯୬୩ ମସିହାରେ । ଆକାଶବାଣୀ କଟକରୁ ସ୍ୱୀକୃତିପାଏ ଜଣେ ଗୀତିକାର ଭାବେ ୧୧.୩.୬୩ ମସିହାରେ ।

ତା ପରେ ପଛକୁ ଫେରି ଚାହିଁନି । ବନ୍ଧୁମାନଙ୍କ ଥଟ୍ଟାତାମସା ଉକ୍ରୋଚ ଦେଇ ଗୀତିକାର ହୋଇଛି ବୋଲି ବ୍ୟଙ୍ଗୋକ୍ତିକୁ ସହିଯାଇଛି । ଲେଖି ଚାଲିଛି । ଆକାଶବାଣୀରେ ମୋ ଗୀତ ପ୍ରଚାର ହେବାର ବିଶେଷ ଶ୍ରେୟ ଦେଉଛି ସ୍ୱର୍ଗତ ବାଳକୃଷ୍ଣ ଦାଶ ଏବଂ ପ୍ରସିଦ୍ଧ ସୁରକାର ବେହେଲା ବାଦକ ଭୁବନେଶ୍ୱର ମିଶ୍ରଙ୍କୁ । ଉଭୟଙ୍କ ସାହାଯ୍ୟ ଓ ସହାନୁଭୂତି ମୋତେ ଏ କ୍ଷେତ୍ରରେ ଅନେକ ଦୂର ଆଗେଇ ନେଇଛି ।

ମହମ୍ମଦ ସିକନ୍ଦର ଆଲାମ ମୋର ଅନେକ ଗୀତ ସ୍ୱକଣ୍ଠରେ ଝଙ୍କୃତ କରିଛନ୍ତି ଆକାଶବାଣୀ, ଦୂରଦର୍ଶନରେ । ଅନେକ ଗୀତ ଗ୍ରାମୋଫୋନ୍ ରେକର୍ଡ଼ ଓ କ୍ୟାସେଟ୍ କରିଛନ୍ତି । ତାଙ୍କୁ ମୋର କୃତଜ୍ଞତା ଜଣାଉଛି । ଏତଦ୍‌ବ୍ୟତୀତ ରଘୁନାଥ ପାଣିଗ୍ରାହୀ, ଧନଞ୍ଜୟ ଶତପଥି, ଅକ୍ଷୟ ମହାନ୍ତି, ଭିକାରୀ ବଳ, ତୃପ୍ତି ଦାସ, ଅନିମା କର,

ଚିତ୍ତରଞ୍ଜନ ଜେନା, ଆରତୀ ମିଶ୍ର, ଇନ୍ଦ୍ରାଣୀ ମିଶ୍ର, ମିତାଲି ଚିନାରା, କଲ୍ୟାଣୀ ମୁଖାର୍ଜୀ, ଶ୍ୟାମାମଣି ଦେବୀ, ଶେଖର ଘୋଷ ସମସ୍ତେ ପ୍ରାୟ ଓଡ଼ିଶାର ପ୍ରତ୍ୟେକ ଶିଳ୍ପୀ ମୋତେ ଅନୁଗୃହୀତ କରିଛନ୍ତି । ମୋର ପ୍ରଥମ ବେତାର ଗାୟକ ଡଃ ମନୋରଞ୍ଜନ ପୃଷ୍ଟି ଏବଂ ପ୍ରଥମ ଗାୟୀକା ପଦ୍ମାଳୟା ଗରାବଡୁଙ୍କୁ ମୁଁ ଆଦୌ ଭୁଲିପାରିବି ନାହିଁ । ଏଠାରେ ଉଲ୍ଲେଖ କରିବାରେ ଦ୍ୱିଧା ନାହିଁ ମୋ ରଚିତ ପୁସ୍ତକ ଝଲକ ଜୀବନର ସୃଜନର ଓ ନନ୍ଦକିଶୋର ପରିକ୍ରମାରେ ମୋର ବେତାର, ଦୂରଦର୍ଶନ, ଚଳଚ୍ଚିତ୍ର ଆଦିରେ ପ୍ରଚାରିତ ଗୀତ ଓ ଗାୟକ ଗାୟିକାଙ୍କ ନାମର ଏକ ବିଶଦ ଚିତ୍ର ରହିଛି ।

ଆଜି ବି ମୋର ଦୈନନ୍ଦିନ ସାଂସାରିକ ଜୀବନରେ ଗୀତି ମୋର ସହଚରୀଭାବେ ମୋ ଚଲାବାଟରେ ଆଗେଇ ନେଇଛି । ଦୂରଦର୍ଶନ ଓ ଇଣ୍ଟରନେଟ୍ ଯୁଗରେ ଏବେ ବି ରେଡ଼ିଓଟି ମୋର ସାଥି । ପ୍ରଭାତ ୬ଟାରୁ ୬ଟା ୩୦ ଯାଏ ବନ୍ଦନା ନଶୁଣି ମୁଁ ବିଛଣାରୁ ଉଠେ ନାହିଁ । ଏହା ବ୍ୟତୀତ ଆକାଶବାଣୀର ପ୍ରତ୍ୟେକଟି ସଙ୍ଗୀତ କାର୍ଯ୍ୟକ୍ରମକୁ ମୁଁ ମନଦେଇ ଶୁଣୁଥାଏ । ବିଶେଷ ସଙ୍ଗୀତ କାର୍ଯ୍ୟକ୍ରମର ଗୀତର ପ୍ରଥମ ଧାଡ଼ି, ଶିଳ୍ପୀ, ଗୀତିକାର ଓ ସଙ୍ଗୀତକାରଙ୍କ ନାମ ମୋ ଡାଏରୀ ପୃଷ୍ଠାରେ ଲିପିବଦ୍ଧ ହୋଇଆସୁଛି । ଏହାର ଏକ ବିଶଦ ତାଲିକା ପରବର୍ତ୍ତୀ କୌଣସି ଏକ ସଂଖ୍ୟାରେ ସ୍ଥାନିତ କରିବା ବାସନା ରହିଲା । ତେବେ ହଁ ମୋର ଏହି ଗୀତି କବିତା ଦୁନିଆରେ ମୋର ଚାରିଗୋଟି ଗୀତିପୁସ୍ତକ ଏଯାବତ୍ ଚଳପ୍ରଚଳ ହେଉଛନ୍ତି । ଏଇ ପୁସ୍ତକଗୁଡ଼ିକ ହେଉଛି ଗୀତିଗୁଚ୍ଛ, ଗୀତି ଓ ଗଜଲ, ଇଚ୍ଛାବତୀ ନଦୀ ଏବଂ ନନ୍ଦକିଶୋର ଗୀତି ବିଚିତ୍ରା ।

ନନ୍ଦକିଶୋର ଗୀତି ବିଚିତ୍ରା ପୁସ୍ତକ ମୋତେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୧ ପାଇଁ ଆଣି ଦେଇଛି ଗୀତିକବିତା କ୍ଷେତ୍ରରେ ସଫଳତା । ସେଇ ଚାରିଗୋଟି ପୁସ୍ତକରେ ଥିବା ଗୀତଗୁଡ଼ିକ ଭିତରୁ କିଛି କିଛି ଝଲକ ଦେବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ତେବେ ମୋର ଶ୍ରେଷ୍ଠ ୧୦୧ଟି ଗୀତକୁ ନେଇ ଏକ ସଂକଳନର ପାଣ୍ଡୁଲିପି ପ୍ରସ୍ତୁତି ପର୍ବ ଆରମ୍ଭ କରିଛି । ମା' ବୀଣାପାଣିଙ୍କ କରୁଣାରୁ ମୋ ଲେଖନୀ ଏବେ ବି ଚଳଚଞ୍ଚଳ ରହିଛି । ସ୍ମୃତି ସତେଜ ରହିଛି । ଏବେ ଚାଲନ୍ତୁ ଚାରିଗୋଟି ପୁସ୍ତକ ଆଡ଼କୁ ଆଖି ବୁଲେଇବା ।

## ପୁସ୍ତକ : ଗୀତିଗୁଚ୍ଛ

ରଚନା– ନନ୍ଦକିଶୋର ସିଂହ, ପ୍ରକାଶକ ବୈତରଣୀ ଆର୍ଟ ପ୍ରେସ୍, ଚାନ୍ଦବାଲି, ବାଲେଶ୍ୱର । ପ୍ରଥମ ପ୍ରକାଶ ୧୩୭୮ ସାଲ ଶୁଭ ସୁନିଆଁ ତା୨।୯।୭୦ । ଏଥିରେ ଯୁଗଳ କିଶୋର ରାୟଙ୍କ ମୁଖବନ୍ଧଟି ପ୍ରଣିଧାନଯୋଗ୍ୟ । ୯୮ଗୋଟି ଆଧୁନିକ

ଗୀତରେ ସମୃଦ୍ଧ ଏହି ଗୀତିଗୁଚ୍ଛ ପୁସ୍ତକ । ଗୀତଗୁଡ଼ିକ ମୁଖ୍ୟତଃ ରୋମାଣ୍ଟିକ୍ ଚେତନା ପ୍ରସୂତ । ପ୍ରୀତି-ପ୍ରଣୟ-ପ୍ରିୟାର ବିରହ ମିଳନ, ସ୍ୱପ୍ନ, ଜ୍ୟୋସ୍ନା, ଚନ୍ଦ୍ର ଚକୋର, ଫୁଲ ଭଅଁର ଆଦିକୁ ନେଇ ଗୀତଗୁଡ଼ିକ ରସୋତ୍ତୀର୍ଣ୍ଣ ।

ପ୍ରମୁଖ ଗୀତଗୁଡ଼ିକ ହେଲା–

୧) ଜହ୍ନତ ଦେଇଛି ଚିଠି କୁନି କୁନି ଜୋଛନା ହାତରେ
ସେ ଚିଠି ଲୁଚାଇ ପଢ଼େ କଇଁଫୁଲ ଲାଜୁକୀ ଆଖିରେ

୨) ନନ୍ଦନ ବନର ପାରିଜାତ ତୁମେ ମୁଁ ମାଟିର ଘାସ ଫୁଲ
ତୁମ ସୁରଭିର ମଦୀର ନିଶାରେ ମୁଁ କାହିଁ ହୋଇବି ତୁଲ

୩) ବସନ୍ତ ଲେଖିଛି ଚିଠି ଗୋଲାପି ଗୋଲାପି
ଫୁଲ ଲଫାପାରେ ଭରି ପାଖୁଡ଼ା କେତୋଟି ।।
ମଳୟ ସାଜିଛି ଆଜି ତାର ଡାକ ବାଲା
କୋଇଲି ସୁରରେ ଡାକେ ଚିଠି ନିଅ ଭଲା
ଗୋପନ ଚିଟାଉ ଉଠେ ମହକି ମହକି

୪) ଯଉବନ ଏକ ଲତା ଲାଜ ତାର ଏକ କଳି
ସ୍ୱପ୍ନ ତାର ପଦ୍ମ ମଧୁ ଲୁଟିଯାଏ ମନ ଅଳି
ବେପଥୁ ମଳୟ ତାର ଉଡ଼ାଏ ଗୋ ଫୁଲ ରେଣୁ
ଅନୁରାଗ କାକ ଜ୍ୟୋସ୍ନା ଶିହରାଇ ତାର ତନୁ
ମିଳନ କୋଇଲି ଗାଏ ପୀରତି ପିୟୁଷ ଭରି

୫) ସୂର୍ଯ୍ୟ ଉଠିଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁ ଆଡ଼େ
ଜହ୍ନ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଝରକାରେ ।
ଆଷାଢ଼ ଆସିଲେ ପ୍ରଥମେ ଚାହିଁବ ମୋ ପ୍ରିୟାର କୁନ୍ତଳକୁ
ଫଗୁଣ ଆସିଲେ ପ୍ରଥମେ ଦେଖିବ ମୋ ପ୍ରିୟାର ଅଧରକୁ
ବିହଙ୍ଗ କାକଳି ପ୍ରଥମ ଝରିବ ମୋ ପ୍ରିୟାର କଣ୍ଠସୁରେ ।

୬) ଅନେକ ଫଗୁଣ ଆସିବ ଜୀବନେ
ମନେରଖ କିଆଁ ଏକଇ ଫଗୁଣେ
ଅନେକ ରାତିରେ ଝରିଛି ଜୋଛନା
କଇଁ ମନ ତୁମ ହୋଇଛି ଉନ୍ମନା
ଆଜି କିଆଁ ଖୋଜେ ସେ ଏକ ସପନେ
ଯାଇଛି ଯେ ଯାଇ ହଜି ସେ ଗୋପନେ ।

୭) ତମ ମନ ଗୀତ ଖାତା ପଢ଼ିବାକୁ ଦେଲନି
ମନ ବଗିଚାରୁ ତୁମ ଫୁଲଟିଏ ଦେଲନି

ମୋ ଜୀବନ ଖାତା ତୁମେ ଖୋଲି କରି ପଢ଼ିଲ
ତାକୁ ପୁଣି ସୁର ଦେଇ ଗୀତ ତମେ ଲେଖିଲ
ମୋତେ କିନ୍ତୁ ଗୀତଟିଏ ଗାଇବାକୁ ଦେଲନି ।

## ପୁସ୍ତକ : ଗୀତି ଓ ଗଜଲ

ରଚନା– ନନ୍ଦକିଶୋର ସିଂହ, ପ୍ରକାଶକ– ଗ୍ରନ୍ଥ ମନ୍ଦିର, କଟକ । ପ୍ରକାଶକାଳ ୧୯୭୭ । ଏଥିରେ ସନ୍ନିବିଷ୍ଟ ଗୀତଗୁଡ଼ିକ ମଧ୍ୟରୁ ଆଧୁନିକ ୩୧ଟି ପଲ୍ଲୀ ୨୨ଟି ଭଜନ, ୭ଟି ଗଜଲ ୩୭ଟି ରହିଛି । ଗୀତଗୁଡ଼ିକ ମଧ୍ୟରୁ କେତେକ ଆକାଶବାଣୀରୁ ପ୍ରସାରିତ । କେତେକ ମଧ୍ୟ ପତ୍ରପତ୍ରିକାରେ ପ୍ରକାଶିତ । ପତ୍ରିକାଗୁଡ଼ିକ ମଧ୍ୟରୁ ଉଲ୍ଲେଖଯୋଗ୍ୟ– 'ଝଙ୍କାର', 'ସୌରଭ', 'ଜୀବନରଙ୍ଗ' ଇତ୍ୟାଦି

**ପ୍ରମୁଖ ଗୀତ କେତୋଟିର ଝଲକ ନିମ୍ନରେ ପ୍ରଦାନ କରାଗଲା–**

**ଆଧୁନିକ :**

୧) ସୁଷମା ଗୋ ତୁମ ଅଙ୍ଗେ ଭରା ମଧୁ ଜୋଛନା
ନୟନେ ତୁମର ବନ ହରିଣୀର ଚଞ୍ଚଳ ଆଖିର ନୀଳିମା ।
(ଗୀତଟି ରଘୁନାଥ ପାଣିଗ୍ରାହୀଙ୍କ କଣ୍ଠରେ ଗ୍ରାମୋଫୋନ୍ ଜରିଆରେ ରେକର୍ଡ଼ ମଧ୍ୟ କରାଯାଇଛି । ଆକାଶବାଣୀରେ ମଧ୍ୟ ଏହି ଗୀତ ରଘୁନାଥ ପାଣିଗ୍ରାହୀଙ୍କ କଣ୍ଠରେ ପ୍ରସାରିତ ହୋଇଛି ।)

୨) ମନେ ପଡ଼େ କଇଁ ଫୁଲ ପ୍ରଥମ ସକାଳ
ମନେ ପଡ଼େ ହସଢ଼ଳା ମିଠା ଖରାବେଳ
ମନେ ପଡ଼େ ପ୍ରଜାପତି ଦେହର ବଗିଚା
ମନେ ପଡ଼େ ହୀରାମୋତି ରୂପର ଗାଲିଚା
ମନେ ପଡ଼େ ଭାବଦିଆ ଆମ୍ବର ବଉଳ
ମନେ ପଡ଼େ ଚୋରି ଚୋରି ପ୍ରୀତି ନଈର କୂଳ (ଗାୟକ ସିକନ୍ଦର ଆଲାମ୍)

୩) ଏଇ ମୋର ବୁକେ ଚନ୍ଦ୍ର କେତେ ସ୍ୱପ୍ନ ପୁଲକ ଦିଏ ବୁଣି
ଏଇ ମୋର କୋଳେ ସୂର୍ଯ୍ୟ କେତେ ରଙ୍ଗ ପରାଗ ବୋଳେ ଆଣି ।
(ଗାୟକ ବାଳକୃଷ୍ଣ ଦାଶ, 'ସଜଫୁଲ', ୧୯୬୪)

## ପଲ୍ଲୀ

୧) ମୁଁ ପୋଷିଲି ଶୁଆ ଗୋରୀ ତୁ ପୋଷିଲୁ ଶାରୀ
ଆମ ଦୁହିଁଙ୍କର ସଖି ଏକଇ ପଞ୍ଜୁରୀ (ଗାୟକ ଅକ୍ଷୟ ମହାନ୍ତି)

୨) ସଙ୍ଗାତରେ ଖୋଜିଦେ ମୋ ପାଇଁ ଶଶୁର ଘର
ହେଉ ପଛେ ବହୁ ଦୂର ସମ୍ବଲପୁର (ଗାୟକ ଅକ୍ଷୟ ମହାନ୍ତି)

୩) ପାକଲା ଗାମୁଛା କାନ୍ଧରେ ପକାଇ ଗୋଡ଼ କାଢ଼ିଲି ମୁଁ ହାଟକୁ
ପଛରୁ ଥାଇକି ବିଲେଇ ଛିକିଲା ଅନୁକୂଳ ଗଲା ଚୁଲିକୁ
(ଗାୟକ ଅତୀଶ ମଜୁମଦାର)

୪) ମୁଁ ତ ଶଶୁର ଘରକୁ ଜୋଇଁ
ଯାଇଥିଲି ଦିନେ ପୁନେଇ ଖାଇ
(ଗାୟକ ସିକନ୍ଦର ଆଲାମ୍, ଆକାଶବାଣୀରୁ ପ୍ରସାରିତ ଏବଂ ଗ୍ରାମୋଫୋନ୍‌ରେ ଏଚ୍‌ଏମ୍‌ଭି କ୍ୟାସେଟ୍ କମ୍ପାନୀ ଦ୍ୱାରା ରେକର୍ଡ଼ କରାଯାଇଛି ।)

୫) ତୋ ଭାଇ ମୋ ଭାଇ ସଙ୍ଗାତ ବସିଲେ ପଣା ସଂକ୍ରାନ୍ତି ଦିନ
ଜଣେ ଆଣିଦେଲା ଜାଇଫଳ ଗୁଆ, ଆଉ ଜଣେ ଛାଚି ପାନ
(ଗାୟିକା ସୁଧା ମିଶ୍ର, ଆକାଶବାଣୀରୁ ପ୍ରସାରିତ ଏବଂ ଗ୍ରାମୋଫୋନ୍‌ରେ ରେକର୍ଡ଼ କରାଯାଇଛି ।)

## ଭଜନ

୧) ସପନେ ଦେଖେ ମୁଁ ତବ ଶାନ୍ତ ମଧୁର ରୂପ
ଚେତନେ କିମ୍ପାଇ ଦେଖା ଦିଅନା
ଭାବନାରେ ତବ ଛବି ଆଙ୍କିଯାଏ ବୁକୁ ତଳେ
ଭାଷାରେ ପ୍ରଭୁ ହେ ରୂପ ପାଏନା
(ଆକାଶବାଣୀ ତରଫରୁ ବିଷ୍ଣୁପ୍ରିୟା ମହାନ୍ତି ଓ ନିରୋଜ ନଳିନୀ କୁଅଁରଙ୍କ କଣ୍ଠରେ ପ୍ରସାରିତ ।)

୨) ଏଇ ଦେହ କାଶୀ ତୋର ମନ ବୃନ୍ଦାବନ
ହୃଦୟରେ ବିଜେ ତୋର ଲକ୍ଷ୍ମୀ ନାରାୟଣ
(ଗାୟକ ବିଶ୍ୱାନାଥ ରାଓ)

୩) ଭକ୍ତର ଯଦି ଭକତି ନଥେନ ଭକତର ଭଗବାନ
ସୃଷ୍ଟିର ତେବେ ସ୍ରଷ୍ଟା କିପରି ହେବ କୁହ ମହୀୟାନ
(ଗାୟିକା ମିନାକ୍ଷୀ ନନ୍ଦ)

୪) ବଡ଼ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ
ମନ ବଡ଼ ଦାଣ୍ଡେ ବାରେ ଆସ ଜଗନ୍ନାଥ
(ଗାୟକ ଦିବାକର ମହାନ୍ତି ଓ ସୁରେନ୍ଦ୍ର ନାଥ ସାହୁ)

## ଗଜଲ

ଓଡ଼ିଆ ଭାଷାରେ ଅକ୍ଷୟ ମହାନ୍ତି ଗଜଲ ଧାରା ପ୍ରବର୍ତ୍ତନ କରିଛନ୍ତି । ନନ୍ଦକିଶୋର ସିଂହ ଏ ଦିଗରେ ମଧ୍ୟ ଯଥେଷ୍ଟ ଧ୍ୟାନ ଦେଇଛନ୍ତି ।

**ପ୍ରମୁଖ ଗଜଲଗୁଡ଼ିକ ମଧ୍ୟରୁ କେତୋଟିର ଝଲକ :–**

୧) ଖୋଲନା ଖୋଲନା ସାଥି ସେ ପାଖ ଝରକା
ଫଗୁଣଟା ଖୋଲି ଦେବ ମନର ଝରକା ।
୨) ଚିଠି କଣ ଲେଖା ହୁଏ ମନ ଭୋକ ମାରିବାକୁ
ଚିଠି କଣ ଲେଖା ହୁଏ ଦିବା ସ୍ୱପ୍ନ ଦେଖିବାକୁ
ଚିଠି ବି ତ ଲେଖା ହୁଏ ତେଲ ଲୁଣ ଦୁନିଆକୁ ବୁଝିବାକୁ ।
୩) ଯଉବନ ମୋର ବାଦ୍‌ସାହୀ ମନେ ରଙ୍ଗ ରସର ଜଲସା
ଯଉବନ ମୋର ତାପସୀର ମନେ କାମନାହୀନ ତପସ୍ୟା
(ଗାୟକ ମିହିର କୁମାର ଦାସ)
୪) ସବୁ ଭୁଲ ପାଇଁ ମିଳିଗଲା ମୋତେ କ୍ଷମା
ପ୍ରେମ ପାଇଁ ମୋତେ ପ୍ରେମିକା ଦେଲାନି କ୍ଷମା
ପାପ ପାଇଁ ମୋତେ ଧରମ ଦେଇଛି କ୍ଷମା
ଭଲ ପାଇବାକୁ ଘୃଣା ବି କରିଛି କ୍ଷମା
ଜରା ମୋତେ ଦେଲା ଯଉବନ ପାଇଁ କ୍ଷମା
ପ୍ରେମ ପାଇଁ ନନ୍ଦ କିଶୋର ପାଏନି କ୍ଷମା । (ଗାୟକ ଅରବିନ୍ଦ ଦତ୍ତ)

## ପୁସ୍ତକ : ଇଛାବତୀ ନଦୀ

ରଚନା– ନନ୍ଦକିଶୋର ସିଂହ, ପ୍ରକାଶିକା ସୁରବାଳା ସିଂହ, ପରିବେଷଣ ଗ୍ରନ୍ଥମନ୍ଦିର, କଟକ । ପ୍ରକାଶକାଳ ୧୯୯୭ । ଏଥିରେ ସ୍ଥାନିତ ଆଧୁନିକ ଗୀତଗୁଡ଼ିକ ସଂଖ୍ୟା ୮୦ । ଏହାର ପ୍ରଚ୍ଛଦ ଅଙ୍କନ କରିଛନ୍ତି ଇନ୍ଦ୍ରମଣୀ ସାମଲ ।

## ପ୍ରକାଶକୀୟ ମୁଖବନ୍ଧ

ଓଡ଼ିଆ ଗୀତିକବିତା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ରହିଛି ଆକାଶବାଣୀ, ଦୂରଦର୍ଶନ, ଚଳଚ୍ଚିତ୍ର ତଥା ମଞ୍ଚ ପାଇଁ ଗୀତ ଲେଖକ– ନନ୍ଦକିଶୋର ସିଂହଙ୍କର । ସେ ତାଙ୍କ ଗୀତିକବିତାରେ କେବଳ ଯେ ରମ୍ୟଧର୍ମୀ ଓ ପ୍ରଣୟଧର୍ମୀ ବାର୍ତ୍ତା ପ୍ରଚାର କରିଛନ୍ତି ତାହା ନୁହେଁ, ସେ ଆଧୁନିକ କବିତାରେ ରୂପକ ପ୍ରତୀକ, ବିମ୍ବ, ମିଥ୍ ଆଦିର ପରୀକ୍ଷା ନିରୀକ୍ଷା କରି ଆସୁଛନ୍ତି । ଗୀତିକାର ସିଂହଙ୍କର ଗୀତି କେବଳ ବେତାରର ଇଥରରେ ଉଡ଼ିଯାଇନି ସେ୍ ଧରି ରଖିଛନ୍ତି, ଝଙ୍କାର, ସୌରଭ, ସହକାର ଜୀବନରଙ୍ଗ, ମରୁତୀର୍ଥ, ବୋଲେ ହୁଁ ଟି ସମେତ ଓଡ଼ିଶାର ପ୍ରାୟ ଅନେକ ପତ୍ରପତ୍ରିକାରେ । ଏପରିକି ସୁଦୂର ଆସାମ ଓ ମେଘାଳୟରୁ ପ୍ରକାଶିତ ପତ୍ରପତ୍ରିକାରେ ମଧ୍ୟ ଅସମୀୟା ଭାଷାରେ ଗୀତିକବିତା ପ୍ରକାଶିତ ।

**ଏଥିରେ ସନ୍ନିବିଷ୍ଟ କେତୋଟି ପ୍ରମୁଖ ଗୀତର ଝଲକ –**

୧) ଇଚ୍ଛାବତୀ ନଦୀ ମୋର ମନର ମରୁରେ
ବହିଯାଏ ଝର ଝର କଳ କଳ ସୁରେ
(ଗାୟିକା ଅନିମା କର, ସଜଫୁଲ– ଜୁନ୍ ୧୯୮୮)

୨) ସ୍ୱପ୍ନା ଗୋ ଏଇ ଚନ୍ଦ୍ରିକା ଝରା ରାତେ
ତୁମ କଥା ମୋର ଭାରି ମନେ ପଡ଼େ ସତେ
(ଗାୟକ ପ୍ରଣବ ପଟ୍ଟନାୟକ, ସଜଫୁଲ– ମଇ, ୧୯୮୬)

୩) ଦେହ ଭିଜେ ବରଷାରେ ମନ ଭିଜେ ନାହିଁ
ଫୁଲ ଶେଯେ ଦେହ ଲୋଟେ ମନ ଶୁଏ ନାହିଁ
(ଗାୟିକା ଇନ୍ଦ୍ରାଣି ମିଶ୍ର, ରାଗମଞ୍ଜରୀ କାର୍ଯ୍ୟକ୍ରମ)

୪) ମହାଶୂନ୍ୟର ଏ ମଉନ ଇସାରା
ଅହରହ ମୋତେ କରେ ଆତ୍ମହରା ।
(ଗାୟକ ବାଳକୃଷ୍ଣ ଦାଶ, ରୂପରଙ୍ଗ, ସେପ୍ଟେମ୍ବର ୧୯୮୦)

୫) ତୁମେ ଗଲା ପରଠାରୁ ସବୁ ଏଠି ହେଲା ମୋତେ ମନା
ଛାତିକୁ ପଥର କରି ଲୁହ ଟୋପେ ଢ଼ାଳିବାକୁ ମନା
(ଗାୟିକା ଆରତୀ ମିଶ, ଭି.ସି.ଡି.ରେ ସ୍ଥାନିତ)

୬) ବିରହ ମୋର ମାନସୀ ନାଭିରେ ଟୋପାଏ ଗୋଲାପୀ ଝାଳ
ବିରହ ମୋର ମାନସୀ ଓଠରେ ଲୁହଭିଜା ପଦ୍ମଫୁଲ ।
(ଗଜଲଧର୍ମୀ ଆଧୁନିକ ଗୀତ)

(ଅବଶିଷ୍ଟାଂଶ ଆରଥରକୁ । ତହିଁରେ ନନ୍ଦକିଶୋର ଗୀତିବିଚିତ୍ରା) ପୁସ୍ତକରେ ସନ୍ନିବିଷ୍ଟ ବିଭିନ୍ନ ସ୍ୱାଦର ଗୀତର ଝଲକ ଦିଆଯିବ । ଚଳଚିତ୍ର ଧରିତ୍ରୀ ଓ ଅକ୍ଷି ତୃତୀୟାରେ ସ୍ଥାନିତ ଗୀତର ଝଲକ ଦିଆଯିବ ।)

**ସ୍ମୃତିଚାରଣ**

# ମୁଁ ଓ ମୋର ଗୀତିକବିତା

(ଅବଶିଷ୍ଟାଂଶ)

(ସୂଚନା ଗତଥର ମୋ ରଚିତ ଗୀତି ପୁସ୍ତକ ଗୀତି ଗୁଚ୍ଛ, ଗୀତି ଓ ଗଜଲ ଏବଂ ଇଚ୍ଛାବତୀ ନଦୀରେ ସ୍ଥାନିତ ପ୍ରମୁଖ ଗୀତଗୁଡ଼ିକର ଝଲକ ଏବଂ ସେ ଗୀତଗୁଡ଼ିକର ଗାୟକ ଗାୟିକାଙ୍କ ନାମ ଉଲ୍ଲେଖ କରିଥିଲି । ଆଜି ନନ୍ଦକିଶୋର ଗୀତି ବିଚିତ୍ରା ପୁସ୍ତକ ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ଏହି ପୁସ୍ତକ ଗୁଡ଼ିକରେ ସ୍ଥାନିତ କେତୋଟି ଗୀତ ପଛରେ ଥିବା ସ୍ମୃତି ଚାରଣ ମଧ୍ୟ କରିବି ।)

**ପୁସ୍ତକ ନନ୍ଦକିଶୋର ଗୀତି ବିଚିତ୍ରା,**

ରଚନା  ନନ୍ଦକିଶୋର ସିଂହ, ପ୍ରକାଶକ  ଅକ୍ଷର, କଲ୍ୟାଣୀନଗର, କଟକ-୧୩, ପ୍ରକାଶକାଳ  ୧୯୯୯, ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ୨୦୦୧ ମସିହା ପାଇଁ ପୁରସ୍କୃତ ।

### ଗୀତି ସଂକଳନ ସଂପର୍କରେ :

ଏହା ମୋର ଚତୁର୍ଥ ଗୀତିକବିତା ସଂକଳନ । ଏଥିପୂର୍ବରୁ ଗୀତିଗୁଚ୍ଛ ଗୀତି ଓ ଗଜଲ ଏବଂ ଇଚ୍ଛାବତୀ ନଦୀ ପ୍ରକାଶିତ ହୋଇସାରିଛି । ଏହି ସଂକଳନଟିର ସ୍ୱାତନ୍ତ୍ର୍ୟ ଏହି ଯେ ଏଥିରେ ଗୀତି କବିତାର ପ୍ରାୟ ପ୍ରତ୍ୟେକଟି ବିଭାଗ ଯଥା ଆଧୁନିକ ପଲ୍ଲୀ ଭଜନ ଦେଶବନ୍ଦନା ଶିଶୁ ଗୀତି, ବ୍ୟଙ୍ଗଗୀତି ଏବଂ ଗଜଲ୍ ସ୍ଥାନିତ ହୋଇଛି । ଏସମସ୍ତ କ୍ଷେତ୍ରରୁ ବାଛି ବାଛି ପ୍ରାୟ ଏକଶତରୁ ଊର୍ଦ୍ଧ୍ୱ ରଚନାକୁ ନେଇ ଏହି ପୁସ୍ତକର ଜନ୍ମ । ସ୍ଥାନିତ ଗୀତର ସଂଖ୍ୟା ଆଧୁନିକ, ଭଜନ, ପଲ୍ଲୀ, ଦେଶବନ୍ଦନା, ଓଡ଼ିଶୀ, ଶିଶୁଗୀତି ପ୍ରତ୍ୟେକରୁ ୧୫ଟି ଏହାଛଡ଼ା ଗଜଲ୍ ୧୦ଟି ଏବଂ ବ୍ୟଙ୍ଗ ଗୀତି ୫ଟି । ଏପରି ମୋଟ ଗୀତ ସଂଖ୍ୟା ୧୦୫ ।

### ପ୍ରମୁଖ ଗୀତଗୁଡ଼ିକର ଝଲକ :

**ଭଜନ :**

(କ) ମୋତେ ଯେତେ ଦୁଃଖ ଦିଅ ନାହିଁ ମୋ ସୂଚନା
ଆଉ କାର ଦୁଃଖ ମୋତେ ଦେଖିବାକୁ ଦିଅନା
ରଚନା– ୨୧।୧।୬୯ ଗାୟିକା  ରାଧାମଣି ମହାପାତ୍ର

(ଖ) ରାଧା ଚଲାପଥ ଘାସ କର ମୋତେ କର ଗୋପଦାଣ୍ଡ ଧୂଳି
ଯମୁନା ତୁଠରେ ପଥର ହୋଇ ମୁଁ ପଡ଼ି କରୁଥିବି ଅଳି
ପ୍ରଭୁ ଏତିକି ମୋର ଗୁହାରି
ଗାୟକ  ଅର୍ଜୁନ ଚରଣ ସାମଲ, ଗାୟିକା  ମିତାଲି ଚିନ୍ମାରା
ଉଭୟଙ୍କ ଦ୍ୱାରା ଆକାଶବାଣୀ କଟକରୁ ପ୍ରଚାରିତ ।

(ଗ) ଆହେ ପ୍ରଭୁ ଆଖଣ୍ଡଳେଶ୍ୱର
ତୁମରି ମହିମା ତୁମରି କରୁଣା
ଦିଅ ପ୍ରଭୁ ନିରନ୍ତର
ଗାୟକ  ନୀଳମାଧବ ଦାସଙ୍କ ଦ୍ୱାରା ଆକାଶବାଣୀ କଟକରୁ ପ୍ରଚାରିତ ।

### ପଲ୍ଲୀ ଗୀତର କେତୋଟି ଝଲକ

(କ) ମହୁଆ ଭାବି ମୋତେ ମହୁ ଲୋଭ ଦେଖାଉ ଲୋ
ମୁଁ ତ କଣ୍ଟାରେ ରହିବା ବାଲା
ଶୋଷିଲା ଭାବି ମୋତେ ପାଣି ଲୋଭ ଦେଖାଉ ଲୋ
ମୁଁ ତ ଧୂଳିରେ ଉଡ଼ିବା ବାଲା

ରଚନା ୧୨।୨।୬୯ ଧନଞ୍ଜୟ ଶତପଥିଙ୍କ ଦ୍ୱାରା ଗ୍ରାମଫୋନ୍ ରେକର୍ଡ଼ କରାଯାଇଛି ।

(ଖ) ଲଇଖଣ ପରି ଭାଇ ପାଇଚିରେ ଭାରିଯା ସତେକି ସୀତା
ଗାଆଁ ମୋର ଯଦି ଅଯୋଧ୍ୟା ନଗର ଆଉ କି ମୋ ଅଛି ଚିନ୍ତା

ରଚନା ୨।୪।୭୨ ଗାୟକ ଶେଖର ଚନ୍ଦ୍ର ଘୋଷ ।

(ଗ) ଆଗେ ପଢୁଥିଲୁ ଉପନ୍ୟାସ ଗୋରୀ ଏବେ ଖୋଜିଲୁଣି ଭାଗବତ
ଆଗେ ନାଉଥିଲୁ ଖୋସାରେ ବଉଳ ଏବେ ହେଉ ତାକୁ ଦଣ୍ଡବତ

ରଚନା ୯।୪।୭୨, ଗାୟକ ସିକନ୍ଦର ଆଲାମ
(ଶିଳ୍ପୀଙ୍କ ଦ୍ୱାରା ଗ୍ରାମୋଫୋନ୍ ରେକର୍ଡ଼ ଓ କ୍ୟାସେଟ୍ ପ୍ରସ୍ତୁତ)

(ଘ) ଚିଠି ଚିଠି ବୋଲି ଡାକେବାଲା ଡାକ ଚିଠି ତ ପାଇଲି ବେରିଙ୍ଗି
ଦିନଗଣି ଗଣି ଆଖି ପାଣି ମଲା ତାଙ୍କର ମାତିଲା ଚେରିଙ୍ଗି

ରଚନାକାଳ ୧୯୬୫ ଗାୟିକା ବିଷ୍ଣୁପ୍ରିୟା ମହାନ୍ତି ।

**ଦେଶ ବନ୍ଦନା ଗୀତର ଝଲକ :**

(କ) କୋଟି ଚାରୁକଳା ଧରିଛି ଯା ଶିଳା ସେଇ ମୋ ତୀର୍ଥଭୂମି
ଶାନ୍ତି ମୈତ୍ରୀ ପ୍ରୀତି ମମତାର ଜନନୀ ଜନ୍ମଭୂମି

ରଚନା ୨୫।୧୦।୧୯୬୯ ଗାୟକ ବାଳକୃଷ୍ଣ ଦାଶ

(ଖ) ବିଶ୍ୱ ବୁକୁରେ ଲେଖିଯିବୁ ଆମେ ଚିର ଗଉରବ ଲିପିକା
ଗାଇଯିବୁ ଆମେ ବିଶ୍ୱ ଦରବାରେ ଉଚ୍ଚକଣ୍ଠେ ଜୟ ଗୀତିକା

ରଚନା ୯।୯।୬୫ ଗାୟକ ପ୍ରଣବ ପଟ୍ଟନାୟକ

(ଗ) ବୁଦ୍ଧ ଗାନ୍ଧି ଅଶୋକର ଦେଶେ ଶାନ୍ତି କପୋତ ଉଡ଼େ
ଏ ଦେଶ ଧୂଳିର ପ୍ରତିଟି କଣାରେ ଅଶେଷ ମମତା ଭରେ

ରଚନା ୧୩।୧୧।୬୫ ଗାୟକ ଶୁକଦେବ ପତ୍ରୀ

(ଘ) ଧନ୍ୟ ଉତ୍କଳ ଜନନୀ
ମଙ୍ଗଳମୟୀ କଲ୍ୟାଣମୟୀ କରୁଣାମୟୀ ଜନନୀ
ଧନ୍ୟ ଉତ୍କଳ ଜନନୀ

ରଚନା ୧୯୯୩ ସମବେତ କଣ୍ଠରେ ଆକାଶବାଣୀରୁ ପ୍ରଚାରିତ

**ଆଧୁନିକ ଗୀତର ଝଲକ :**

(କ) ବରଷା କି ଆସ ବିରହୀ ପରାଣେ ଭରିଦେବା ପାଇଁ ବିରହ
ବୁକୁତଳେ ଜାଳ ପ୍ରଣୟର ନିଆଁ ଦାହତାର ବଡ଼ ଅସହ

ରଚନା ୧୯୭୨ ଗାୟକ ନବକିଶୋର ମିଶ୍ର

(ଖ) ଫଗୁଣ ହେ ରଙ୍ଗ ଆଉ ଢାଳନା ଢାଳନା

କୁଂଜ କାନନ ଅବା ଯମୁନା ପୁଳିନ
ରଂଗେ ଜାଣି ହୁଏନା ।
ରଚନା ୧୧।୧।୬୭ ଗାୟକ ବାଳକୃଷ୍ଣ ଦାସ

(ଗ) ରାତିର ସାଗର ଡେଇଁ ଆସଇ ଯେ ଆଲୋକ ବୋଇତ
ସପନ ସଉଦା ସାରି ଫେରିଯାଏ ନିଦର ବଣିକ
ରଚନା ୨।୨।୬୭ ଗାୟକ ବିଭାରୀ ଚରଣ ବଳ

(ଘ) ହେ ମୋର ଛନ୍ଦର ଉର୍ବଶୀ
ହେ ମୋର ରୂପର ରୂପସୀ
ଆସନା-ଆସନା ଆସନା ହାଏ୍ ତୁମକୁ ମୁଁ ପାଏନା ପାଏନା
ରଚନା ୧୪।୪।୬୯ ଗାୟକ ରାଖାଲ ଚନ୍ଦ୍ର ମହାନ୍ତି

**ଶିଶୁ ଗୀତିର ଝଲକ :**

(କ) ନଡ଼ିଆ ଗଛରେ ନଡ଼ିଆ ଗଛ
ହୋଇଲୁ କେମିତି ଏତିକି ଉଚ୍ଚ
କୋଳରେ ଧରିଚୁ କଷି ପଇଡ଼
ଆଉ କେତେଟା ବି ତହିଁ ଖୁରୁଡ଼
ବାଇଆ ଚଢ଼େଇ ବସା ଦୋହଲାଇ
ତୋର ବାହୁଙ୍ଗାରେ କରୁଚି ନାଟ
ରଚନା ୧୭।୧।୬୬ ଗାୟିକା ତୃପ୍ତି ଦାସ (ଶିଶୁସଂସାର କାର୍ଯ୍ୟକ୍ରମ)

(ଖ) ଦାଲୁ ଦାଲୁ ନାଚେ କାଳିଆ ଭାଲୁ
କଳା ମଚ ମଚ ରୁମ ତାହାର ହୋଇଚିରେ ସାଲୁବାଲୁ
ରଚନା ୭।୧୨।୬୫ ଗାୟିକା ମମତା ନନ୍ଦ (ଶିଶୁ ସଂସାର କାର୍ଯ୍ୟକ୍ରମ)

(ଗ) ଆରେ ମୋ ଛବି ବହି
ଚେହେରା ତୋ ବଡ଼ ସୁନ୍ଦର, ଦେଖି ଆଖି ଲାଖେ ତହିଁ
ରଚନା ୫।୭।୭୬, ଗାୟିକା ମମତା ନନ୍ଦ (ଶିଶୁସଂସାର କାର୍ଯ୍ୟକ୍ରମ)

**ପ୍ରମୁଖ ଗଜଲ୍‌ର ଝଲକ :**

(କ) ସବୁ ନ ହାରିଲେ ଜିଣିବକି ପ୍ରିୟା ହୃଦୟ
ଅସରା ଲୁହରେ ନ ଭିଜିଲେ ସେ କି ହୃଦୟ
ରଚନା ୧୮।୮।୭୪

(ଖ) ଫୁଲେ କଣ୍ଟା ଥିଲେ ବି ଗୋ ଅଛିବିତ ମଧୁ
କଳଙ୍କିନୀ ହେଲେବିତ ତୁମେ କୂଳବଧୂ
ପୀରତି ବିଷ ନପିଇ ଚାଖେ କେ ତା ମଧୁ

କଳଙ୍କିନୀ ନ ହୋଇଲେ ତୁମେ କି ଗୋ ବଧୂ

ରଚନା ୯।୮।୭୪, ଗାୟକ ବିଶ୍ୱନାଥ ରାଓ

(ଗ) ମୋତେ ପଛେ ଭୁଲ ବୁଝ ବୁଝନା ମୋ ପ୍ରେମକୁ
ମୋତେ ଭୁଲିଯାଅ ପଛେ ଭୁଲନା.ମୋ ପ୍ରେମକୁ

ରଚନା ୨୨।୫।୭୪, ଗାୟକ ମହମ୍ମଦ ସିକନ୍ଦର ଆଲାମ

**ଓଡ଼ିଶୀର ଝଲକ :**

(କ) ଘନକାଳେ ଘନଶ୍ୟାମ କୁଂଜେ ନଇଲା
ଘନ ଜଘନା ନୟନୁ ନୀର ଝରିଲା (ଘୋଷା)
ଘନ ଘନ ଘନ କୋଳେ ଚପଳା ନାଚେ
ଘଡ଼ ଘଡ଼ି ଘୋର ରବେ ଧରା ଦୁଲୁକେ
ଘନ କେଶୀ ଘଡ଼ି ଘଡ଼ି ଚେତା ହାରିଲା

ରଚନା ୩।୭।୬୬ ଗାୟକ ଶୁକଦେବ ପତ୍ରୀ

(ଖ) ମୀନେ ମନେ ମନେ ଗୁଣେ ମୀନ ନୟନା
ମନ ନେଇ କାହିଁଗଲା ମନମୋହନା । ଘୋଷା ।
ସେ କୁମାରୀ ସୁକୁମାରୀ ଶିରିଷ ଦେହା
ତା ଶିରେ କୁଳିଶ କାହ୍ନା ପକାଏ ଆହା
ଅପବାଦ କେତେନେବ ଯାଇ ଯମୁନା ।

ରଚନା ୧୯।୨।୬୯, ଗାୟକ ରାଧାମଣି ମହାପାତ୍ର

(ଗ) ଘନ କାଳେ ଘନ ଶ୍ୟାମ କୁଂଜେ ନଇଲା
ଘନ ଜଘନା ନୟନୁ ନୀର ଝରିଲା

ରଚନା ୨୯।୬।୬୭, ଗାୟିକା ସୁମତି ଦେବୀ

**ବ୍ୟଙ୍ଗ ଗୀତିର ଝଲକ :**

(କ) ତୁଲୋ ମୋର ଏ ଯୁଗର ମେକ୍ସି ପିନ୍ଧା ସୀତା
ଆଖିରେ ତୋର କଳା ଚଷମା
କଥା ତୋ ଅଟେ ମହୁର ଫେଣା
କୁଦି କୁଦିଆ ପାଦରେ ତୋର ହାଇ ହିଲ୍‌ର ଯୋତା

ରଚନା ୧୭।୧୧।୭୬

(ସିକନ୍ଦର ଆଲାମଙ୍କ ଦ୍ୱାରା ଗ୍ରାମ୍‌ଫୋନ୍ ରେକର୍ଡ଼)

(ଖ) ଯଦି ଆଖିର ଚାହାଣି ହେଲା ଅଟକା
ଆଉ ଅଣ୍ଟା ବଂକା ଚାଲି ହେଲା ମଟକା

ତହିଁ

ମାମଲାରେ ଅଛି କିଛି ଝଟକା
ରଚନା ୨୭।୧୧।୯୦ ଗାୟକ ପ୍ରସେନ୍‌ଜିତ୍ ମହାନ୍ତି

(ଗ) ମୁଁ ତ ଘର ମେମ୍‌ଙ୍କର ଦପ୍ତରୀ
ତୁମ ପ୍ରେମ ଦେଉଳର ଦୁଆରୀ ।
ଆଖିରେ ତୁମର ଚଷମା ମର୍କରୀ
କାନରେ ତୁମର କଳିଙ୍ଗ ଫିଲ୍‌ଗିରି
ପ୍ରେମ ରୋଗରେ ତ କରୁଛ ଡାକ୍ତରୀ
ପଛରେ ଲାଗିଛି ବିଲାତ ଫେରନ୍ତା ଡିଗିରୀ
ରଚନା ୧।୨।୭୫ ବ୍ୟଙ୍ଗ ପତ୍ରିକାରେ ପ୍ରକାଶିତ

**ଚଳଚ୍ଚିତ୍ର ଗୀତିର ଝଲକ :**

(କ) ନନ୍ଦକିଶୋର ଗୀତି ବିଚିତ୍ରା ପୁସ୍ତକରେ
ଚଳଚିତ୍ର ବିଭାଗଟି ସ୍ଥାନିତ ହୋଇପାରିନି
ତଥାପି ପାଠକଙ୍କ ଗୋଚରାର୍ଥେ ସେ ଗୀତ
ଦୁଇଟିର ପୂର୍ଣ୍ଣ ଚିତ୍ର ଏଥିରେ ପ୍ରଦତ୍ତ ।
କଥା ଚିତ୍ର ଧରିତ୍ରୀ– କଣ୍ଠ ଶିପ୍ରା ବୋଷ ଓ ସିକନ୍ଦର ଆଲାମ
ସଙ୍ଗୀତ– ଉପେନ୍ଦ୍ର କୁମାର

ମହମ୍ମଦ ସିକନ୍ଦର ଆଲାମ୍–
ବାରଂବାର ଦେଲେ ପରିଚୟ
ଦୁଷ୍ମନ୍ତଙ୍କ ମନେ ସ୍ମୃତି ନହୁଏ ଉଦୟ
ନିରୁପାୟ ହୋଇ ଶକୁନ୍ତଳା
ପ୍ରୀତି ସ୍ମୃତି ଅଂଗୁରୀୟ ଖୋଜିଲା ଅବଳା
ଦୁର୍ବାଶାଙ୍କ ଅଭିଶାପ ଫଳେ
ଅଂଗୁରୀୟ ହଜିଥିଲା ଅଜାଣତେ ଜଳେ ।

ଶିପ୍ରା ବୋଷ–
ତୁମେ କି ଜାଣନା ପ୍ରିୟ ମୁଁ ତୁମ ନାୟିକା
ମୁଁ ଯେ ସେଇ ଶକୁନ୍ତଳା କାନନ କଳିକା ।ଘୋଷା ।
ମୋ ଓଠ ହସରେ ଲେଖି ଗୀତି ତୁମେ ପ୍ରୀତିର
ଆଖିରେ ଆଖିରେ ଚାହିଁ କଲ ମୋତେ ଅଧୀର
ମୋ ମନ ବାସନ୍ତୀ କୁଂଜେ କୁହୁ ତୁମେ ଥିଲ ବୋଲି
କେଉଁ ଅପରାଧେ ଏବେ ଦୂରେ ମୋତେ ଦିଅ ଠେଲି
କୂଳଛଡ଼ା ହୋଇ ଭାସେ ପରାଣ ନଉକା

ମୋ କରମେ ଖାଲି ହାଏ ଏଇ ଅଶ୍ରୁଲେଖା । ୧ ।
ଭଲ ଥିଲା ଆଶ୍ରମରେ ଥିଲି ସନ୍ନ୍ୟାସିନୀ
କି ଲାଭ ପାଇଲି ସାଜି ତୁମ ପ୍ରଣୟିନୀ
ତୁମ ରକ୍ତ ଧରି ଗର୍ଭେ ନୋହିଲି ଗରବିଣୀ
ଦୁନିଆର ରାଜ ଦାଣ୍ଡେ ହେଲି ମୁଁ କଳଙ୍କିନୀ । ୨ ।

**କଥାଚିତ୍ର ଅକ୍ଷି ତୃତୀୟା :**

(କ) କଣ୍ଠ– ଭିକାରୀ ବଳ ଓ ସାଥି, ସଙ୍ଗୀତ– ରାଖାଲ ଚନ୍ଦ୍ର ମହାନ୍ତି
କୋଟି ଚାରୁକଳା କଳାରେ କୁଶଳା ଏଇ ମୋ ଜନ୍ମ ଭୂଇଁ
ପଲ୍ଲୀ ମାଳିନୀ ଶସ୍ୟଶାଳିନୀ ଧନ୍ୟ ଉତ୍କଳ ଭୂଇଁ ।।
ଘନ ବନ ଘେରା ତଟିନୀ ଶୋଭିତା
କାକଳି କଳାପ କୁହୁ କୂଜିତା
ଚିର ଛଳ ଛଳ ସାଗର କଲ୍ଲୋଳ
ଚରଣ ଦେଉଛି ଧୋଇ । ୧ ।
ମରାଳ ମାଳିନୀ ରୂପସୀ ଚିଲିକା
ଶୁଣାଏ ଅତୀତ ଗଉରବ ଗାଥା
ଭାଲେରି ସୁଲେରି ପାହାଡ଼ ବୁକୁରେ
କାନ୍ଦି ବୁଲେ କାଳିଜାଈ । ୨ ।
ଏଇ କୋଣାରକ ଝାଉଁବଣ ଘେରା
ପାଷାଣ ବୁକୁରେ କୋଟି ଫୁଲ ଝରା
ହସି ହସି ଦେଖ ଚନ୍ଦ୍ରଭାଗା ତୀରେ
ସ୍ୱରୂପ ଆସନ୍ତି ଉଇଁ । ୩ ।
ଏଇ ସେ ଧଉଳି ଶାନ୍ତିର ସ୍ତୂପ
ଚଣ୍ଡାଶୋକ ଦିନେ ହେଲେ ଧର୍ମାଶୋକ
ଆଜି ବି ଦୟା ସେଦିନ ସେକଥା
କାନେ କାନେ ଯାଏ କହି । ୪ ।
ଏଇ ନୀଳାଚଳ ବିଜେ ଚକାଡୋଳା
ଚଉବାହାଟେକି ଲଗାଇଛି ଲୀଳା
ପତିତ ପାବନ ବାନା ଉଡ଼େ ଦେଖ
ଭକତ ଜନକୁ ଚାହିଁ । ୫ ।

ଉପରୋକ୍ତ ଯେଉଁ କେତୋଟି ଗୀତର ଝଲକ ମୁଁ ଉପସ୍ଥାପନ କରିଛି– ସେଗୁଡ଼ିକ ମଧ୍ୟରେ ଅଛେ ବହୁତେ ପ୍ରତ୍ୟେକ ଗୀତ ପଛରେ କିଛି ନା କିଛି ସ୍ମୃତି ଛପି ରହିଛି ।

ତେବେ ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁଆଢ଼େ ଗୀତଟି ଶୁଣିବା ମାତ୍ରେ ମନେପଡ଼ିଯାଏ ରାଜକନିକାର ରାଜେନ୍ଦ୍ର ନାରାୟଣ ହାଇସ୍କୁଲ । ଏଠାରେ ଚାକିରୀ କରୁଥିବାବେଳେ ମୁଁ ଏକ ଭଙ୍ଗା କାନ୍ଥ ଆଉ ଭଙ୍ଗା ଝରକାଥିବା ଘରେ ରହୁଥାଏ । ଦିନେ ନିଦ ଭାଙ୍ଗିଲା ବେଳକୁ ଦେଖିଲି ସକାଳର ସୂର୍ଯ୍ୟ କିରଣ ମୋ ବିଛଣା ସାରା ଖେଳେଇ ହୋଇପଡ଼ିଛି । ତତ୍‌କ୍ଷଣାତ୍ ଯେଉଁ ଭାବନା ଆସିଥିଲା ସେଥିରୁ ଜନ୍ମ ନେଲା ଏଇ ଗୀତଟି । ଏଇ ଗୀତଟିର ବର୍ଣ୍ଣନା ପ୍ରିୟାକୁ ନେଇ ପ୍ରକୃତି ସହ ସମ୍ବନ୍ଧ ନିବିଡ଼ କରାଯାଇଛି । ଏଣୁ ଅନେକ ସ୍ଥାନରେ ମୋ ସ୍ତ୍ରୀକୁ ଥଟ୍ଟାରେ କହନ୍ତି ତୁମ ସ୍ୱାମୀ ଆଖିରେ ତୁମେ ଏତେ ସୁନ୍ଦର ଯେ ବସନ୍ତ । ନଦୀ ଝରଣା, ସାଗର ସବୁ ତୁମର ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ତୁମ ପାଖକୁ ଧାଇଁ ଆସୁଛନ୍ତି ।

ସେହିପରି ସୁଷମା ଗୋ ତୁମେ ଅଂଗେ ଭରା ମଧୁ ଜୋଛନା ଗୀତଟି ଶୁଣିଲା ବେଳେ ଛାଆଁକୁ ଛାଆଁ ମନକୁ ଆସିଯାଏ ରାଧାନାଥ ଟ୍ରେନିଂ କଲେଜ କଥା । ଏଠାରେ ବି.ଇଡ଼ି. ପଢୁଥିବା ବେଳେ ମୁଁ ହଷ୍ଟେଲର ୧୪ ନମ୍ବର ରୁମ୍‌ରେ ରହୁଥାଏ । ଏହି ଘରର ଝରକା ସାମ୍‌ନାରେ ଗୋଟେ କାଞ୍ଚନ ଗଛଥାଏ । ବସନ୍ତ ଋତୁରେ ନାଲି ଗୋଲାପ ରଂଗ ମିଶା ଫୁଲ ଭରା ଏଇ ଗଛଟିକୁ ଦେଖି ମୁଁ ଲେଖିଥିଲି ସେ ଗୀତଟି । ଅନେକ ସୁଷମା ନାମଧାରୀ ଛାତ୍ରୀ ଅବା ପରିଚିତା ବାନ୍ଧବୀ ଭାବୁଥିଲେ ଏ ଗୀତଟି ମୁଁ ସେମାନଙ୍କୁ ଲକ୍ଷ୍ୟ କରି ଲେଖିଛି । ଅଥଚ ଏ ଗୀତଟି ରଚନା ପଛରେ ପ୍ରକୃତି ରାଣୀର ଅପୂର୍ବ ସୁଷମା ମୋତେ ପ୍ରେରଣା ଯୋଗାଇଥିଲା ।

ଠିକ୍ ସେହିପରି 'ଯଉବନ ଏକ୍କଲତା ଲାଜ ତାର ଏକ କଳି' ଗୀତଟି ପଛରେ ସିକନ୍ଦର ଆଲାମ୍‌ଙ୍କ ସ୍ୱରଯୋଜନା ସାଙ୍ଗକୁ ଗାୟିକା ଶକ୍ନ୍ତଳା ମହାପାତ୍ରଙ୍କୁ ମନେପଡ଼େ ।

ବସନ୍ତ ଲେଖିଚି ଚିଠି ଗୋଲାପୀ ଗୋଲାପୀ ଲେଖିବା ବେଳେ ବମ୍ବେରୁ ପ୍ରକାଶିତ ଚିତ୍ରପୁରୀ ଓ ବୁଲୁ ଭାଇଙ୍କ କଥା ମନେପଡ଼େ । ଏ ଗୀତଟି ଚିତ୍ରପୁରୀ ପୃଷ୍ଠା ମଧ୍ୟ ମଣ୍ଡିତ କରାହୋଇଥିଲା । ଭିକାରୀ ବଳଙ୍କ କଣ୍ଠରୁ ଏ ଗୀତଟି ଶୁଣି କବି ଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କୁ କାଳେ କହିଥିଲେ କିହୋ ତୁମେ ଆଜିକାଲି ଗୋଲାପୀ ଗୋଲାପୀ ଚିଠି ଲେଖିଲଣି କି ?

ଏମିତି ଅନେକ ସ୍ମୃତି ମନରେ ଜାଗି ଉଠୁଛି ।

ତେବେ ସବୁଠୁ ଦରଦୀ ସ୍ମୃତିଟି ହେଲା ଜଗନ୍ନାଥଙ୍କ

ଅପାର କରୁଣାରୁ ଶ୍ରୀଗୁଣ୍ଡିଚା ଦିନ

ଲେଖି ହୋଇଥିବା ଭଜନ । ବଡ଼ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ ।

ମନ ବଡ଼ ଦାଣ୍ଡେ ବାରେ ଆସ ଜଗନ୍ନାଥ ।

ବଡ଼ ଦାଣ୍ଡରେ ରଥ ଗଡୁଥିବା ବେଳେ

ମୁଁ ପୁରୀ ଯାଇ ନପାରି ଘରେ ରେଡ଼ିଓରୁ ଧାରାବିବରଣୀ

ଶୁଣି ଶୁଣି ଏ ଗୀତଟି ଲେଖିଥିଲି ଏବଂ ମୋ ଆଖିରୁ ଧାର ଧାର ଲୁହ ବହିଯାଇଥିଲା ।

ଏହିଭଳି ଅନେକ ଛୋଟବଡ଼ ସ୍ମୃତି ଆଜି ମନ ତଳେ ଉଙ୍କି ମାରୁଛି ଏଇ ଗୀତ ଲେଖାକୁ ନେଇ । ତେବେ ଉପରୋକ୍ତ ପୁସ୍ତକ ତଥା ଚଳଚିତ୍ର ପାଇଁ ମୋ ଗୀତ ଲେଖା ସୀମିତ ରହିନାହିଁ । ଆକାଶବାଣୀ, ମଂଚ ·ଚଳଚିତ୍ର ମାଧ୍ୟମ ଛଡ଼ା ଓଡ଼ିଶାର ପ୍ରାୟ ପ୍ରତ୍ୟେକଟି ପତ୍ରିପତ୍ରିକାରେ ମୋର ଗୀତି କବିତା ସ୍ଥାନ ପାଇ ଆସିଛି । ଏଇ ପତ୍ରପତ୍ରିକାଗୁଡ଼ିକ ଭିତରେ ଝଙ୍କାର, ସୌରଭ, ଜୀବନ ରଙ୍ଗ ମରୁତୀର୍ଥ, ଅମୃତାୟନ, ସମାରୋହ, ସହକାର, ଅର୍ପିତା, କାଦମ୍ବିନୀ, କାବ୍ୟାଲୋକ ସାବିତ୍ରୀ, ସ୍ମୃତିଲିପି, ଗୋ କର୍ଣ୍ଣିକା, ସୁଲେଖା, ବୋଲେ ହୁଁଟି, ସୁଚରିତା ଆଦିର ନାମ ନିଆଯାଇପାରେ ।

ଏହାଛଡ଼ା ସମ୍ବାଦପତ୍ର, ସମାଜ, ସମ୍ବାଦ, ପ୍ରଗତିବାଦୀ, ପ୍ରଜାତନ୍ତ୍ର, କାଳାନ୍ତର, ସାହାଣ ମେଳା, ନିତ୍ୟନୂତନ, ଦୈନିକ ଖବର ଆଦିର· ସାହିତ୍ୟ ପୃଷ୍ଠାରେ ମଧ୍ୟ ମୋ ଗୀତି କବିତା ସ୍ଥାନ ପାଇବା ଆନନ୍ଦ କଥା ।

ସୁଦୂର ଆସାମ, ମେଘାଳୟର ପତ୍ରିକାରେ ମୋର ଅସମୀୟା ଭାଷାରେ ଲିଖିତ ଗୀତି କବିତା ପ୍ରକାଶ ପାଇଛି । ଏଇ ପ୍ରକାଶନ ପଛରେ ସୁନ୍ଦରମ୍ ପତ୍ରିକାର ସଂପାଦକ ତଥା ଗୌହାଟୀ ମେଡ଼ିକାଲ କଲେଜ ଛାତ୍ରୀ ଗୀତା ଚୌଧୁରୀଙ୍କ ପ୍ରେରଣା ଛାଆଁକୁ ଛାଆଁ ମନକୁ ଆସେ । ମନେ ପଡ଼ିଯାଏ ବିଶିଷ୍ଟ ଅସମୀୟା ଗାୟିକା ଲକ୍ଷହୀରା ଦାସ ଓ ଅର୍ଚ୍ଚନା ଦାସଙ୍କ ମୋ ଗୀତ ପ୍ରତି ଥିବା ଶ୍ରଦ୍ଧାକଥା ।

ଆଜି ବି ଗୀତିକବିତା ଲେଖାର ଝୁଙ୍କ୍ ତିଷ୍ଠି ରହିଛି, ମୃତ୍ୟୁ ଶଯ୍ୟାରେ ମୋ ତୁଣ୍ଡରୁ ଗୀତିକବିତା ଝରୁଥାଉ । ମୃତ୍ୟୁ ଶଯ୍ୟାରେ ମୋ କାନକୁ ଶୁଭୁ ଥାଉ ମୋର ସବୁଠୁ ପ୍ରିୟ ଗୀତ—

ବଡ଼ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ
ମନ ବଡ଼ ଦାଣ୍ଡେ ବାରେ ଆସ ଜଗନ୍ନାଥ ।
କୋଟି ଦୀନ ଜନେ ତୁମେ ଚାହଁ ଚକାଆଖି
ଅଭୟ କରୁଛ ଦାନ ଚଉବାହା ଟେକି
ମୋର ଏଇ ନତଶିରେ ଟେକ ବାରେ ହାତ ।
ପତିତପାବନ ବାନା ଉଡ଼େ ଫର ଫର
କାଳେ କାଳେ ଭଗବାନ ତୁମେ ଭକତର
ଦିଅ ଦେଖା ବାରେ ମୋର ପୁରୁ ମନୋରଥ
ସତେ କ'ଣ ମୋର ଭାଗ୍ୟ ହେବ,
　　　　　　　　ମୃତ୍ୟୁର ଶେଷ ମୁହୂର୍ତ୍ତରେ ଚକାଡୋଳାଙ୍କ
ଦିବ୍ୟ ଦର୍ଶନ ଲାଭ କରିବ ।



# ମୁଁ ଓ ମୋର ଶିଶୁ ସାହିତ୍ୟ

ମୋ ପିଲା ଦିନୁ ପିଲାଙ୍କ ମେଳରେ ଖେଳିକୁଦି ହସଖୁସିରେ ସମୟ କାଟିଛି । ପ୍ରାଇମେରି ସ୍କୁଲ ଏବଂ ମାଇନର ସ୍କୁଲରେ ପଢ଼ିବା ବେଳେ ମଧ ମୋ ବୟସର ଏବଂ ମୋଠୁ ସାନ କୁନି କୁନି ପିଲାଙ୍କ ମେଳରେ ହସିଖେଳି ସମୟ କାଟିବାରେ ମୋର ଖୁବ ଆନନ୍ଦ । ଆଜି ଏ ପରିଣତ ବୟସରେ ମଧ ଛୋଟଛୋଟ ପିଲାଙ୍କ ମେଳରେ ସମୟ କାଟିବାକୁ ମୋତେ ଖୁବ୍ ଭଲ ଲାଗେ । ଏପରିକି ସାଇ ଭିତରେ ପଶିଲେ ଛୋଟ ଛୋଟ ପିଲାଏ ମୋତେ 'ଚକୋଲେଟ ଅଜା' କହି ମୋ ପଛେ ପଛେ ଗୋଡ଼େଇ ଚକୋଲେଟ ପାଇଁ ଅଳି କରନ୍ତି । ତାର କାରଣ ହେଲା କୌଣସି ପର୍ବପର୍ବାଣି ଥାଉ ନ ଥାଉ ମାସରେ ୪/୫ ଥର ମୁଁ ପିଲାମାନଙ୍କୁ ଚକୋଲେଟ ବାଣ୍ଟିଥାଏ । ଏହି କାରଣରୁ ପିଲାଙ୍କ ଶ୍ରଦ୍ଧା ମୋ ଉପରେ ଖବ୍ ବେଶୀ । ଦୁର୍ଘଟଣାରେ ପଡ଼ି ବିଛଣାରେ ଶୋଇ ରହିଥିବା ବେଳେ ପିଲାଏ ମୋତେ ଦେଖିବାକୁ ଆସୁଥିଲେ । ବାପାମାଆଙ୍କ ପାଖେ ଜିଦ୍‌କରି ସେମାନଙ୍କ ଚକୋଲେଟ ଅଜାଙ୍କୁ ଦେଖିବାକୁ ଆସୁଥିଲେ ।

ଚାକିରୀ କାଳରେ ପ୍ରାୟ ୨୨/୨୩ ବର୍ଷ ମୋର ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ କଟିଲା । ସେଠାରେ ଗୁରୁ ଛାତ୍ରଛାତ୍ରୀ ପ୍ରାଇମେରୀ ଓ ଅପର ପ୍ରାଇମେରି ସ୍କୁଲକୁ ଶିକ୍ଷାଦାନ ଦେବାପାଇଁ ଯାଇଥାନ୍ତି । ମୁଁ ମଧ ଏଥି ସହ ସଂପୃକ୍ତ ଥିବାରୁ ଛୋଟ ଛୋଟ ପିଲାଙ୍କ ସଂଶ୍ପର୍ଶରେ ଆସିଥାଏ । ଏଣୁ ସବୁଦିଗରୁ ପିଲାଙ୍କ ମେଳରେ ରହିବାର ସୁଯୋଗ ମୋତେ ମିଳିଥିବାରୁ ଶିଶୁମାନଙ୍କ ପାଇଁ କିଛି ଲେଖା ଲେଖି କରିବାର ପ୍ରେରଣା ମୋତେ ମିଳିଥିଲା । ମୁଁ ମଧ ଷଷ୍ଠଶ୍ରେଣୀରେ ପଢୁଥିବା ବେଳେ ମୋର ଲେଖାଲେଖି କାମ ଆରମ୍ଭ ହୋଇଥିଲା । ଆମ କୋରେଇ ମାଇନର ସ୍କୁଲର ଜଣେ ଶିକ୍ଷକ ଶ୍ୟାମ ସୁନ୍ଦର ପାତ୍ର ଥିଲେ । ତାଙ୍କରି ଉତ୍ସାହ ପ୍ରଦାନ ଯୋଗୁ ମୁଁ ଲେଖାଲେଖି କରିବାକୁ ଆଗ୍ରହୀ ହେଲି । ପ୍ରଥମେ ପ୍ରଥମେ ଛୋଟ ଛୋଟ କବିତା ଲେଖୁଥିଲି, ବାପା, ମାଆ, ବାଡ଼ି ବଗିଚା, ସକାଳ ସଂଜ ଉପରେ ଏ କବିତା ଗୁଡ଼ିକ ପର୍ଯ୍ୟବେସିତ । ତେବେ ମୋର ପ୍ରଥମ ପ୍ରକାଶିତ ରଚନାଟି ହେଉଛି ଗପ, ଏହାର ନାମ 'ନେଉଳ ଭାଇର ରାଇଜ ଫେରି', ଏହା ସମ୍ଭବତଃ ୧୯୫୩-୫୪ ମସିହାରେ ପ୍ରଜାତନ୍ତ୍ରର ମୀନାବଜାର ପୃଷ୍ଠାରେ ପ୍ରକାଶିତ ହୋଇଥିଲା । ଗପଟି ଜହ୍ନୁରୀ ଭାଇ (ରାମ ପ୍ରସାଦ ମହାନ୍ତି)ଙ୍କ ମୋ ଦେଶରେ ପ୍ରକାଶିତ ଏକ ଗପ ଛାୟାରେ ରଚିତ ହୋଇଥିଲେବି ଏ ରଚନାରେ କିଛି ମୌଳିକତା ଥିବାରୁ ସେର ଜହ୍ନୁରୀ ଭାଇହିଁ ଏସବୁ ମୀନା ବଜାରରେ ସ୍ଥାପିତ କରିଥିଲେ । ପରେ ପରେ ମୀନାବଜାରରେ ମୋର କବିତା ଗଳ୍ପ ପ୍ରାୟତଃ ପ୍ରକାଶ ପାଉଥିଲା । ଏଗୁଡ଼ିକ ମଧରେ କେତେକ ସାପ୍ତାହିକ ମୀନାବଜାର ଏବଂ କେତେକ ମାସିକ ମୀନାବଜାରରେ ସ୍ଥାନିତ ହୋଇଥିଲା, ସାପ୍ତାହିକ ମୀନାବାଜାରରେ ଆଦିବାସୀ ପିଲାଙ୍କ ଉପରେ ଏକ ଗପ 'ଆରାଃ ଲୁଗା' (ନାଲି ଶାଢ଼ି) ଏବଂ ମାସିକ

ମୀନାବଜାରରେ ଏକ କୁକୁର ଉପରେ ଗପ ଭାଲୁଆ ଏବଂ କୁକୁଡ଼ା ଉପରେ ରଚିତ ଗପ 'ଗଂଜା' ବେଶ ପାଠକୀୟ ଶ୍ରଦ୍ଧାଲାଭ କରିଛି । ଏତଦ୍‌ବ୍ୟତୀତ କବିତା ମୋହନୀ ଦୋକାନ, "ଏଇ ମୋ ଛୋଟ ଗାଆଁ" ଗପ ମୂଷାଭାଇର ପ୍ରାରିଧି ଅପସରା ଓ ଦୁଇ ଭଉଣୀ, ନଣ୍ଡାମଉସାଙ୍କ ପଣ୍ଡା, କାଳିଆଷଣ୍ଢ ଆଦି ଗପ ପଢ଼ି କୁନି କୁନି ପିଲା ବେଶ୍ ଆନନ୍ଦ ପାଇଛନ୍ତି ।

ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଶିଶୁ ସାହିତ୍ୟ ପତ୍ରିକା ଯଥା ମୀନାବଜାର, ମନପବନ, ବାରମଜା, ଶିଶୁଲେଖା, ଟୁଉକୁମୁଷି, ନନ୍ଦନକାନନ, ସଂସାର, କିଶୋର ସୌରଭ ଚକୋଲେଟ, ଆମେ ଶିଶୁ ଆଦି ପ୍ରାୟ ୫୦ ରୁ ଉର୍ଦ୍ଧ୍ୱ ଶିଶୁ ସାହିତ୍ୟ ପତ୍ରିକାରେ ଗପ, କବିତା, ଜୀବନୀ, ଜ୍ଞାନ ବିଜ୍ଞାନ, ହସକଥା ଆଦି ପ୍ରକାଶ ପାଇ ଶିଶୁ ମହଲରେ ହସ ଖୁସି ସାଙ୍ଗକୁ ଜ୍ଞାନ ବୃଦ୍ଧି ବିତରଣରେ ସାହାଯ୍ୟ କାରୀ ହୋଇଛି । ଏତଦବ୍ୟତୀତ ଓଡ଼ିଶାର ବିଭିନ୍ନ ସମ୍ବାଦ ପତ୍ରର ଶିଶୁ ସାହିତ୍ୟ ପୃଷ୍ଠାରେ ମଧ୍ୟ ମୋର ଲେଖା ସ୍ଥାନ ପାଇଛି । ବିଶେଷତଃ ପ୍ରଜାତନ୍ତ୍ର, ସମାଜ, ସମ୍ବାଦ, କାଳାନ୍ତର, ଦୈନିକ ଆଜିକାଲି, ଧରିତ୍ରୀ ଆଦିର ସାହିତ୍ୟ ଓ ଶିଶୁ ସାହିତ୍ୟ ପୃଷ୍ଠାରେ ଗପ କବିତା ପ୍ରବନ୍ଧ ସ୍ଥାନ ପାଇଛି ।

ଆକାଶବାଣୀରେ ଶିଶୁ ସଂସାର, କାକଳି, କିଶୋର ଚକ୍ର ଓ ବିଦ୍ୟାଳୟ କାର୍ଯ୍ୟକ୍ରମରେ ଶିଶୁ ଉପଯୋଗୀ, ଗପ, କବିତା, ନାଟିକା, ରୂପକ ଆଦି କାର୍ଯ୍ୟକ୍ରମ ପ୍ରଚାରିତ ହୋଇଛି । ଆକାଶବାଣୀର ପ୍ରଚାରିତ କାର୍ଯ୍ୟକ୍ରମରେ ନାଟିକା ସୁନା ଚଷମା ପ୍ରକୃତ ବଂଧୁ, ଛ'ବୋକା, ମୋଗଲାଇ ମହାଭାରତ ରୂପକ ଛଅରତୁରର ଝଗଡ଼ା ଅଖିଳ ଭାରତୀୟ ରୋଗ ସମ୍ମେଳନ, ଆମ ଗାଆଁହାଟ ଆଦି ବେଶ୍ ଆଦୃତ ହୋଇପାରିଛି ।

ଶିଶୁ ସାହିତ୍ୟ ଉପରେ ପ୍ରଥମ ପ୍ରକାଶିତ ପୁସ୍ତକ ରଂଗବେରଂଗ ଏହାକୁ ଛାତ୍ରସାଥି ପୁସ୍ତକାଳୟ ପ୍ରକାଶ କରିଥିଲେ । ଏଥିରେ ଗପ, କବିତା, ସାଂଗକୁ ଜୀବନୀ ମଧ୍ୟ ରହିଛି । ଗାନ୍ଧିଜୀଙ୍କ ହତ୍ୟାକାରୀ ନାଥୁରାମ ଗଡ଼ସେଙ୍କୁ ଧରି ପୋଲିସକୁ ସହାୟତା କରିଥିବା ବିରଳା ହାଉସର ମାଳି ରଘୁନାଏକ, ଜଣେ ଓଡ଼ିଆ, ସେ ମୁଁ ଚାକିରୀ କରିଥିବା ରାଜ କନିକାର ରାଜେନ୍ଦ୍ର ନାରାୟଣ ହାଇସ୍କୁଲ ପାଖରେ ଥିବା ପ୍ରାୟ ଜାଗୁଳେଇପଡ଼ା ଗାଆଁରା ତାଙ୍କ ସହ ମୋର ଦେଖା ସାକ୍ଷାତ ଓ ଆଳାପ ମଧ୍ୟ ହେବାର ସୌଭାଗ୍ୟ ମିଳିଥିଲା । ଇଂରେଜୀ ପତ୍ରିକା ବ୍ଲିଜ୍‌ରେ ରଘୁନାୟକ ବିଷୟରେ ଲେଖା ପଢ଼ିଥିଲି, ତାଙ୍କୁ ଦେଖିବାର ସୁଯୋଗ ପରେ ତାଙ୍କ ବିଷୟରେ ଲେଖାଟି ଏଇ ରଂଗ ବେରଂଗ ପୁସ୍ତକର ସ୍ଥାନିତ କରି ମୁଁ ନିଜକୁ ଗୌରାବନ୍ୱିତ ମନେକରେ, ମୋ ପ୍ରଚେଷ୍ଟାରେ ତାଙ୍କର ସାକ୍ଷାତକାର ଆକାଶବାଣୀ କଟକରେ ପଚାରିତ ହୋଇଥିଲା । ସେ ମଧ୍ୟ ଶିଶୁ ସଂସାରରେ ଏକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ । ତତ୍‌କାଳୀନ ଆକଶବାଣୀର କର୍ତ୍ତୃପକ୍ଷ ତାଙ୍କୁ କଟକ ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଭ୍ରମଣର ବ୍ୟବସ୍ଥା ମଧ୍ୟ କରାଇଥିବା ଜାଣି ମୁଁ ଖୁବ୍ ଆନନ୍ଦିତ ହୋଇଥିଲି । ସେହିପରି ଶିଶୁଙ୍କରଯୋଗ୍ୟ କବିତା

ପୁସ୍ତକ 'ଏକ ଦୁଇ ତିନି'ଟି ଚଣ୍ଡୀଖୋଲର ଶିଶୁ ମେଳା ସମିତି ଦ୍ୱାରା ପ୍ରକାଶିତ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ପ୍ରାୟ ପୂର୍ବରୁ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଏହି କବିତା ଗୁଡ଼ିକ ମଧ୍ୟରୁ ଏକ ଦୁଇ ତିନି, ନାଆଁଟି ତାର ମଶା, ସୂରୁଯ ନନା ଜୁବୁଲିର ଜନ୍ମଦିନ, ଲଢ଼େଇ, ମିଠା, ତୁମ ଖେଳ ସାଥି, ମନକର ନରମ, ଧାରାଶିରାବଣ ଆସେ, ଆଦି କବିତାଗୁଡ଼ିକ ପିଲାମାନଙ୍କ ଦ୍ୱାରା ଆଦୃତ ହୋଇଛି । ଏଥିରେ ସର୍ବମୋଟ ୩୦ଟି କବିତା ରହିଛି, ଏହାବ୍ୟତୀତ ଆଉ ମୋର କେତେଖଣ୍ଡି ଶିଶୁ ଉପଯୋଗୀ ଗଳ୍ପପୁସ୍ତକ ପ୍ରକାଶିତ । ସେଗୁଡ଼ିକ ହେଲା ସାବାସ୍ ଟୁଟୁ, ଟୁଟର ରାଇଜଫେରି, ଶିଆଳ ଝିଅର ବାହାଘର, ମଜା କାହାଣୀ ପିଲାଙ୍କ, ପୁରାଣ ଗପ, ଶ୍ରବଣ କୁମାର ଆଦି ପ୍ରଧାନ ।

ଟୁଟୁର ରାଇଜ ଫେରି ପୁସ୍ତକଟି ଅପରେସନ୍ ବ୍ଲାକ୍‌ବୋର୍ଡ଼ ଦ୍ୱାରା ନିର୍ବାଚିତ ହେବା ଖୁସିର କଥା । ଏଥିରେ ସନ୍ନିବିଷ୍ଟ ଗଳ୍ପଗୁଡ଼ିକ ମୁଖ୍ୟତଃ ବିଜ୍ଞାନ ତଥ୍ୟ ଉପରେ ଆଧାରିତ । ଏଗପ ଗୁଡ଼ିକ ହେଲା ପକ୍ଷୀ ରାଜ୍ୟରେ ଟୁଟୁ, ଆକାଶ ରାଜ୍ୟରେ ଟୁଟୁ, ହାତୀ ରାଜ୍ୟରେ ଟୁଟୁ, ବାଘ ରାଜ୍ୟରେ ଟୁଟୁ, ମାଛ ରାଜ୍ୟରେ ଟୁଟୁ, ପାତାଳ ରାଜ୍ୟରେ ଟୁଟୁ, ଖାଦ୍ୟ ରାଜ୍ୟରେ ଟୁଟୁ । ଗପଗୁଡ଼ିକ ମାଧ୍ୟମରେ ପିଲାମାନଙ୍କୁ ସୌରଜଗତ, ଭୂଗହ୍ୱର, ମତ୍ସ୍ୟ, ପଶୁପକ୍ଷୀ ଆଦି ସମ୍ବନ୍ଧରେ ତଥ୍ୟଭିତ୍ତିକ ଧାରଣା ଦିଆଯିବାର ପ୍ରଚେଷ୍ଟା କରାଯାଇଛି ।

ଶିଆଳ ଝିଅର ବାହାଘର ପୁସ୍ତକଟି ବହିର ପ୍ରଥମ ଗଳ୍ପ ଶିଆଳ ଝିଅର ବାହାଘର ନାମରେ ନାମିତ । ଏହାଛଡ଼ା ଏଥିରେ ଅନ୍ୟାନ୍ୟ ଦଶଟି ଗପ ଅଛି । ସେଥିମଧ୍ୟରୁ କେତୋଟି ମୌଳିକ, କେତୋଟି ଅନ୍ୟାନ୍ୟ ଭାଷାର ଛାୟାରେ ଲିଖିତ । ଟୁଟୁର ପ୍ରଶ୍ନ, ମାମଲା ତୁଟିଲା, ହୁଣ୍ଡା ମଧୁଆ ଆଦି ଗପଗୁଡ଼ିକ ମୌଳିକ ହୋଇଥିବାବେଳେ, ଟୋକେଇରେ ଟିକିପିଲା, ଚତୁର ମାଙ୍କଡ଼, 'ଟୋକା ବୁଦ୍ଧି ଟୋକେଇରେ' ଆଦି ଗଳ୍ପଗୁଡ଼ିକ ଇତିହାସ କିମ୍ବା କିମ୍ବଦନ୍ତୀ ଉପରେ ଆଧାରିତ । ଏହି ବହିଟି ଜେ. ମହାପାତ୍ର ଏଣ୍ଡ କୋ ଦ୍ୱାରା ୧୯୯୬ରେ ପ୍ରକାଶିତ ।

'ସାବାସ୍ ଟୁଟୁ' ବହିଟିରେ ମଧ୍ୟ ୧୧ଟି ଗପ ରହିଛି । ଶେଷଗପ 'ସାବାସ୍ ଟୁଟୁ' ନାମ ଅନୁସାରେ ବହିଟିର ନାମକରଣ କରାଯାଇଛି । ଏହା ମଧ୍ୟ ଜେ.ମହାପାତ୍ର ଏଣ୍ଡ କୋ. କଟକ ଦ୍ୱାରା ପ୍ରକାଶିତ । ଏଥିରେ ସନ୍ନିବିଷ୍ଟ ମୌଳିକ ଗଳ୍ପଗୁଡ଼ିକ ହେଲା ନଣ୍ଡାମଉସାଙ୍କ ପଣ୍ଡା, କାଳିଆ ଷଣ୍ଢ ପାଇଲା ଦଣ୍ଡ, ଓଲାକୁ ଓଲୀ, ଭରତ ଅଜାଙ୍କ ବିଚାର, ତିନିବାହାପିଆ ହେଲେ ଜବତ ଆଦି ପ୍ରଧାନ । ଏ ଗପଗୁଡ଼ିକ ମୁଖ୍ୟତଃ ହାସ୍ୟରସାତ୍ମକ ଏବଂ ଉପଦେଶାତ୍ମକ ।

'ମଜା କାହାଣୀ' ପୁସ୍ତକଟି ୧୯୮୦ ମସିହାରେ ଜେ.ମହାପାତ୍ର ଏଣ୍ଡ କୋ. ଦ୍ୱାରା ପ୍ରକାଶିତ । ଏଥିରେ ୨୧ଟି ଗପ ସ୍ଥାନିତ ଗପଗୁଡ଼ିକ ମଧ୍ୟରେ ସୁନାମେଣ୍ଢା, ଲୁହଝରଣା, ଫେରାଇ ଦେଉମୋ ମେଢ ଓ ଗଧ ଆଦି ବେଶ୍ ପାଠକାରଶ୍ରଦ୍ଧାଲାଭ କରିଛି । ଏଥିରେ ଅନ୍ୟାନ୍ୟଗୁଡ଼ିକ ପ୍ରାୟ ଐତିହାସିକ କିମ୍ବା କିମ୍ବଦନ୍ତୀ ଆଧାରିତ ।

ଏହା ବ୍ୟତୀତ ଗ୍ରନ୍ଥ ମନ୍ଦିର କଟକ ଦ୍ୱାରା ଶ୍ରୀ ରାମକୃଷ୍ଣଙ୍କ ଉପଦେଶ ୧ମ ଓ ୨ୟ ଭାଗ ତଥା 'କିଶୋର କଥା ଚରିତ ସାଗର' ନାମରେ ଦୁଇଟି ଶିଶୁ ସାହିତ୍ୟ (ଉପଦେଶାତ୍ମକ ଗଳ୍ପ) ପ୍ରକାଶିତ । ସେହିପରି ବିଦ୍ୟାପୁରୀ କଟକ ଦ୍ୱାରା 'ଶ୍ରବଣ କୁମାର' ଏବଂ ପୁରାଣ କଥା ନାମରେ ଶିଶୁଗପ ପୁସ୍ତକ ପ୍ରକାଶ ପରେ ଶିଶୁ ଓ କିଶୋର ମହଲରେ ଆଦୃତ ହୋଇଛି । ପୁରାଣ କଥାରେ ସନ୍ନିବିଷ୍ଟ ଗଳ୍ପଗୁଡ଼ିକ ମଧ୍ୟରେ ଅଧିକାଂଶ ପୂର୍ବରୁ ସଂସାର ପତ୍ରିକାରେ ପ୍ରକାଶିତ । ଏଥିରେ ଏଗାରଗୋଟି ପୁରାଣକଥା ସ୍ଥାନିତ । ତହିଁମଧ୍ୟରୁ କମଣ୍ଡଳୁ ଗର୍ବ ଭାଙ୍ଗିଲା, ମିଛ ଅବତାର, ଅମରସଂଗୀତ, ଦୁର୍ବାସା ଭୁଲ ବୁଝିପାରିଲେ ଆଦି ବେଶ୍ ଆଦର ଲାଭ କରିଛି ।

ଗୁରୁଜୀ ବୁକ୍ ଷ୍ଟୋର, କଟକ ଦ୍ୱାରା ପ୍ରକାଶିତ କଥାଟିଏ କହୁଁ (ପରୀକଥା) କଥାଟିଏ କହୁଁ (ପୁରାଣକଥା) ଆଦିରେ ମଧ୍ୟ ସୁନ୍ଦର ସୁନ୍ଦର ଗପ ସ୍ଥାନ ପାଇଛି । ପରୀ କଥାରେ ମୌଳିକ ଗପ ଛଅଟି ସ୍ଥାନିତ । ସେଗୁଡ଼ିକ ହେଲା ମୂଷାଭାଇର ପାରିଧି, ଭାଲୁ ଓ ଗୁଣ୍ଡୁଚିମୂଷା, ପ୍ରକୃତ ବନ୍ଧୁ, ହାତୀ ଓ ପିମ୍ପୁଡ଼ି, ଏକତା ହିଁ ବଳ ଏବଂ କୋକିଶିଆଳିର ବୁଦ୍ଧି, ଗପଗୁଡ଼ିକରେ ହାସ୍ୟରସ ମାଧ୍ୟମରେ ପିଲାଙ୍କୁ କିଛି ପ୍ରଚ୍ଛନ୍ନ ନୀତିଶିକ୍ଷା ଦିଆଯାଇଛି । ଗପଗୁଡ଼ିକ ଶିଶୁ ମନସ୍ତତ୍ୱ ଉପରେ ଆଧାରିତ ।

ସେହିପରି କଥାଟିଏ କହୁଁ ପୁରାଣ କଥାରେ ମଧ୍ୟ ପାଞ୍ଚଟି ପୌରାଣିକ ତଥ୍ୟ ଆଧାରିତ କାହାଣୀ ରହିଛି । ସେଗୁଡ଼ିକ ହେଲା ଉକ୍ତ ନୀଳାମ୍ବର ଗଙ୍ଗା, ଗୟା, ବିଷ୍ଣୁଙ୍କ ଅବତାର ଗ୍ରହଣ ଓ ମିଛ ଅବତାର ।

ଗ୍ରନ୍ଥ ମନ୍ଦିର ଦ୍ୱାରା ଶିଶୁ ଓ କିଶୋର ଉପଯୋଗୀ ଦୁଇଟିନୋଟି ଛୋଟ ନାଟିକା ମଧ୍ୟ ପ୍ରକାଶ ପାଇଛି । ଗୁରୁଦକ୍ଷିଣା, ସମାଜସୁଧାର କାମ ଏବଂ ସୁନାଚଷମା ଏହି ନାଟିକା ଦୁଇଟିରେ ଶିଶୁ ଓ କିଶୋର ମନରେ ସମାଜକୁ ସାମନା କରିବା ପାଇଁ ପ୍ରେରଣା ଯୋଗାଯାଇଛି । ଏହି ଗ୍ରନ୍ଥମନ୍ଦିର ମଧ୍ୟ ଶିଶୁ ଓ କିଶୋର ଉପଯୋଗୀ ଇଂରାଜୀ ଭାଷାରୁ ମୋ ଦ୍ୱାରା ଅନୁଦିତ ଅରଣ୍ୟର ଆହ୍ୱାନ (Call of the wild) ଏବଂ ସୁଇସ୍‌ରବିନ ସନ ଆଦି ପୁସ୍ତକ ପ୍ରକାଶ କରି ଧନ୍ୟ କରିଛି ।

ମୋଟ ଉପରେ ଶିଶୁମାନଙ୍କ ମନକୁ ଛୁଇଁଲାଭଳି ଗପ, କବିତା, ନାଟିକା ଆଦି ଲେଖି ଏବଂ ସେଗୁଡ଼ିକର ପୁସ୍ତକ ରୂପ ଦେଖି ମୁଁ ଖୁବ୍ ଆତ୍ମସନ୍ତୋଷ ଲାଭ କରିଛି । ଏପରିକି ରାଜ୍ୟ S.C.E.R.T. ସଂସ୍ଥା ମଧ୍ୟ ମୋ ଲେଖନୀରୁ ମୋ ଗାଆଁ ହାଟ, 'ଫେରିବାଲା' ପ୍ରାକ୍ ବିଦ୍ୟାଳୟ ଶିକ୍ଷା ପାଇଁ ପୁସ୍ତକ ଲେଖାଇ ମୋତେ ସନ୍ତୋଷ ଦେଇଛନ୍ତି ।

ମୋଟ ଉପରେ ମୋ ଶିଶୁ ସାହିତ୍ୟ ଜୀବନର ଏହାହିଁ ଏକ ସ୍ଥୂଳଚିତ୍ର ।



# ଅନ୍ତିମ କଥୋପକଥନ

ଯମରାଜ– ମୁଁ ତୁମର ସମସ୍ତ ବକ୍ତବ୍ୟ ଶୁଣିଲି । ସ୍ମୃତିଚାରଣରୁ ଗୋଟି ଗୋଟି କରି ତୁମର ସାରସ୍ୱତ ଜୀବନର ଚିତ୍ର ତୁମେ ନିଖୁଣ ଭାବେ ପ୍ରତିପାଦନ କରିଛ । ତୁମେ ତୁମର ପାରିବାରିକ ଜୀବନ ସମ୍ବନ୍ଧରେ ଆଉ ଅଧିକ କିଛି କହିବା ଦରକାର ନାହିଁ । କାରଣ ସେ ସମସ୍ତ ତଥ୍ୟ ଆମ ପାଖରେ ମହଜୁଦ ଅଛି ।

ବିଗତ ପନ୍ଦର ବର୍ଷ ଧରି ତୁମେ ତୁମ ସ୍ତ୍ରୀଠାରୁ ଏକ ପ୍ରକାର ଦୂରେଇ ରହିଛ । ତାର କାରଣ ତୁମର ପୁଅ, ବୋହୂ ଉଭୟେ କର୍ମଜୀବି । ପିଲାମାନଙ୍କ ଦେଖାଶୁଣା ପାଇଁ ତୁମ ସ୍ତ୍ରୀ ସେଠାରେ ଏକ ପ୍ରକାର ବନ୍ଧା ପଡ଼ିଛନ୍ତି । ତେବେ ତୁମ ସ୍ତ୍ରୀ ତୁମ ଅପେକ୍ଷା ତୁମ ପୁଅକୁ ଅଧିକ ଭଲପାଆନ୍ତି । ଏଣୁ ସ୍ତ୍ରୀ କର୍ତ୍ତବ୍ୟ ଅପେକ୍ଷା ସେ ମାଆର କର୍ତ୍ତବ୍ୟ ପ୍ରତି ଅଧିକ ଯତ୍ନଶୀଳ । ତୁମେ ବେଳେବେଳେ ଅସହିଷ୍ଣୁ ହୋଇପଡୁଛ ସତ । କିନ୍ତୁ ନିଜର ନାତିନାତୁଣିଙ୍କ ପ୍ରତି ତୁମର ଶ୍ରଦ୍ଧା ଯୋଗୁ ତୁମେ ମଧ୍ୟ ନୀରବ ରହୁଛ । ତେବେ ଭଗବାନଙ୍କ କରୁଣା ଅପାର, ତୁମେ ତୁମର ପୁତ୍ରବଧୂ ଓ ସ୍ତ୍ରୀଠାରୁ ଏଇ ବୃଦ୍ଧ କାଳରେ ସେବାଯତ୍ନରୁ ବଞ୍ଚିତ ହେଲେ ବି ତୁମର ଭଣଜା ଭାଣିଜୀଙ୍କୁ ଏବଂ ବଡ଼ନାତୁଣୀଙ୍କ ପ୍ରତି ଶ୍ରଦ୍ଧା ସ୍ନେହ ପାଖରେ ବନ୍ଧା ହୋଇ ଆନନ୍ଦରେ ଅଛ ।

ଆଗନ୍ତୁକ– ହଁ, ଛାମୁ ମୋର ସ୍ତ୍ରୀ, ପୁଅ, ବୋହୂ ନାତିନାତୁଣୀ ସହ ଜୀବନ କାଟୁଛନ୍ତି । ରାଜଧାନୀର ଆପାର୍ଟମେଣ୍ଟରେ ଜୀବନଧାରା ମୋତେ ଭଲ ଲାଗେନା । ଏଣୁ ମୁଁ ମୋ ଗାଆଁରେ ମୋ ଛୋଟ ଘରଟିରେ ଥାଇ ବେଶ୍ ଖୁସିରେ ସମୟ କାଟେ । ମୋ ସାରସ୍ୱତ ଜୀବନ ନେଇ ମୁଁ ବଞ୍ଚିଛି । ମୋ ମାନସସନ୍ତାନ 'ବୋଲେ ହୁଁଟି'ର ସୁଖଦୁଃଖରେ ମୁଁ ଛନ୍ଦି ହୋଇପଡ଼ିଛି । ସେଇଥି ପାଇଁ ମୁଁ ମୋ ଗାଆଁକୁ ପୁଣି ଫେରିଯିବାକୁ ଚାହେଁ !

ଯମରାଜ– ସୃଷ୍ଟିର ନିୟମକୁ ତ ଆମେ ଭାଙ୍ଗିପାରିବାନି । ତୁମର ପୃଥିବୀପୃଷ୍ଠରେ ଯେତେଦିନ ରହିବାର ଥିବ ନିଶ୍ଚୟ ରହିବ । ମୁଁ ଚିତ୍ରଗୁପ୍ତଙ୍କୁ କହିଛି ତୁମର ସରକାରୀ ଦପ୍ତରର କାଗଜପତ୍ର ତନଖି କରିବା ପାଇଁ, କିନ୍ତୁ ଆମର ଏଇ ଯମପୁରୀରେ ଜନ୍ମତିଥି ଜାତକ ବିଚାରରୁ ଜଣାଯାଇଥାଏ । ତେବେ ମୁଁ ପ୍ରତିଶ୍ରୁତି ଦେଉଛି ତୁମ ଅଭିଯୋଗର ସତ୍ୟାସତ୍ୟ ନିଶ୍ଚୟ ପରୀକ୍ଷା କରାଯିବ ।

ମୁଁ ମଧ୍ୟ ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଓ ପାଳନକର୍ତ୍ତା ବିଷ୍ଣୁଙ୍କୁ ଆପଣଙ୍କ ପୃଥିବୀ ପ୍ରତି ମୋହ ନିଶ୍ଚୟ ଅବଗତ କରାଇବି । ସେ ନିଶ୍ଚିତ ଭାବେ ପୁନର୍ବାର ସେଇ ପୃଥିବୀକୁ ତୁମକୁ ଫେରାଇ ଦେବେ, ସେଠାରେ ତୁମେ ଏ ପୃଥିବୀକୁ ଧ୍ୱଂସମୁଖରୁ ଉଦ୍ଧାର କରିବ ପାଇଁ ଜନସମାଜକୁ ଯଥାଶକ୍ତି ସତ୍ ପଥରେ ଆଗେଇ ଯିବାକୁ ପ୍ରେରଣା ଯୋଗାଇ ଚାଲିବ ।

ଆଗନ୍ତୁକ– ମୁଁ ଆପଣଙ୍କ ପ୍ରତି କୃତଜ୍ଞ ଯମରାଜ !





ଯାଜପୁର ଜିଲ୍ଲାର କୋରେଇ ଥାନାର ସାଧକପୁର (ଶଂଶପାରା) ଗ୍ରାମରେ ୧୯୪୨ ମସିହା ମଇ ୧୫ ତାରିଖରେ ଜନ୍ମିତ ଗୀତିକବି, ଶିଶୁ ସାହିତ୍ୟିକ, ନାଟ୍ୟକାର, ନାଟ୍ୟଶିଳ୍ପୀ, ପ୍ରାବନ୍ଧିକ, ସ୍ତମ୍ଭକାର ତଥା ବ୍ୟଙ୍ଗକାର ନନ୍ଦକିଶୋର ସିଂହ ପାଠକ ମହଲରେ ବହୁ ଆଗରୁ ପରିଚିତ । ଶିଶୁ ସାହିତ୍ୟ, ଗୀତିକବିତା, କବିତା, ନାଟକ, ଉପନ୍ୟାସ, ଅନୁବାଦ, ପ୍ରୌଢ଼ (ନବସାକ୍ଷର) ସାହିତ୍ୟ ଆଦି ବିଭିନ୍ନ ବିଭାଗରେ ବିଭିନ୍ନ ସ୍ୱାଦର ପ୍ରାୟ ପଚାଶରୁ ଉର୍ଦ୍ଧ୍ୱ ପୁସ୍ତକର ସେ ସ୍ରଷ୍ଟା ।

ସେ ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନିତ । ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ମଧ୍ୟ ପୁରସ୍କାରପ୍ରାପ୍ତ ।

ତାଙ୍କର ସୃଜନ ଓ ଜୀବନ ଉପରେ ଆଧାରିତ ପୂର୍ବରୁ ପ୍ରକାଶିତ ହୋଇଥିବା ଝଲକ : 'ଜୀବନର ସୃଜନ' ଓ 'ନନ୍ଦକିଶୋର ପରିକ୍ରମା' ପରେ ରମ୍ୟଧାରାରେ ସ୍ମୃତିଚାରଣର ଫଳ ଏଇ 'ଯମପୁରୀରେ ଜମାନବନ୍ଦି' । ଏବେବି ତାଙ୍କର ଲେଖନୀ ଚଳଚଞ୍ଚଳ ।